
୧୯୫୮ର
ଉତ୍କଳ ସାହିତ୍ୟ ସମାଜରୁ
ପୁରସ୍କାରପ୍ରାପ୍ତ ପ୍ରବନ୍ଧ
ଉତ୍କଳର
ଶିଳ୍ପ ଚାତୁରୀ
"ଭାରତର ତୀର୍ଥ ମୁକୁଟମଣି
ସୌନ୍ଦର୍ଯ୍ୟ ସଦନ ସଂପଦଖଣି
ହଜିଥିଲି ଭୁଜ ବିଭୂତି ପଦ
ସରିଲି ସକଳ ଶିରୀ ସଂପଦ
ଦେଖି ଏ ଦୁର୍ଗତି
କେତେଦିନ ଆଉ ସହିବ ଛାତି"
ଉତ୍କଳ-ମଣି ଗୋପବନ୍ଧୁ
ଶ୍ରୀ ସୁଧାରଞ୍ଜନ ପଣ୍ଡା

୧୯୩୩

ଉତ୍କଳ ସାହିତ୍ୟ ସମାଜର

"ହିନ୍ଦୋଳ ପୁରସ୍କାର" ପ୍ରାପ୍ତ ପ୍ରବନ୍ଧ

# ଉତ୍କଳର ଶିଳ୍ପ-ସମ୍ପଦ

ଲେଖକ ଓ ପ୍ରକାଶକ } ଶ୍ରୀ ରାଧାଚରଣ ପଣ୍ଡା

ପ୍ରଥମ ସଂସ୍କରଣ

୧୯୩୭

ମୂଲ୍ୟ—ଏକଟଙ୍କା

# ଭୂମିକା

ମି. ହଣ୍ଟର୍ ସାହେବ ତାହାଙ୍କ ପ୍ରଣୀତ ଇଂରଜୀ "ଓଡ଼ିଶା ଇତିହାସ"ର ଭୂମିକାରେ ଲେଖିଥିଲେ—

"To the world's roll call of heroes it (Orissa) will add not one more.'

ଏହାର ସରଳ ଅର୍ଥ—"ପୃଥିବୀର ବୀରମାନଙ୍କ ପାଙ୍କ୍ତିରେ ଓଡ଼ିଶା ନାମରେ ଖଣ୍ଡଗାର ସୂଚୀ ପଡ଼ିବ ନାହିଁ ।"

ଇଂରଜମାନେ ଓଡ଼ିଶା ଅଧିକାର କରିବାର ୬୪।୬୫ ବର୍ଷ ପରେ ହଣ୍ଟର ସାହେବ ଖଣ୍ଡିଏ ପାଲ୍‌କୀରେ ଚଢ଼ି ଗଞ୍ଜାମ ଦିଗରୁ ଓଡ଼ିଶା ରାଜଧାନୀ କଟକକୁ ଆସି-ଥିଲେ । ମାର୍ଚ୍ଚରେ ସେ ଚିଲିକା, ପାରିକୁଦ, ପୁରୀ, କୋଣାର୍କ ଓ ଭୁବନେଶ୍ବର ପ୍ରଭୃତି ଦେଖିଥିଲେ । କଟକରେ ଅଳ୍ପ କେତେକ ମାସ ରହି ସେଠାର ସରକାରୀ କାଗଜ-ପତ୍ରରୁ ପ୍ରାଚୀନ ଉତ୍କଳ ସମ୍ବନ୍ଧରେ ଯାହା କିଛି ବିଷୟ ସଂଗ୍ରହ କରିଥିଲେ, ତାହାକୁ ହିଁ ସେ ନିଜର "ଓଡ଼ିଶା ଇତିହାସ' ରେ ଲେଖିଯାଇଛନ୍ତି ।

ଉତ୍କଳର ଗୋଟିଏ ପୂର୍ଣ୍ଣାଙ୍ଗ ଇତିହାସ ଏ ପର୍ଯ୍ୟନ୍ତ ଲେଖାଯାଇ ନାହିଁ ସତ୍ୟ, କିନ୍ତୁ ଏଥିପାଇଁ ଯେ ଉତ୍କଳରେ କୌଣସି ଉପାଦାନର ଅଭାବ ରହିଛି, କହିବା ଉଚିତ ହେବ ନାହିଁ । "ଇତିହାସ" କହିଲେ କେବଳ "ରାଜବଂଶାବଳୀ" ବା କୌଣସି ଯୁଦ୍ଧ ବର୍ଣ୍ଣନା ନୁହେଁ । ଏ ଦୁଇ ବିଭାଗ ସଙ୍ଗେ ସଙ୍ଗେ ଦେଶର ପ୍ରାଚୀନ ଶିଳ୍ପ ସ୍ଥାପତ୍ୟ, ବ୍ୟବସାୟ ବାଣିଜ୍ୟ, ଶାସନପ୍ରଣାଳୀ ଏବଂ ଲୋକମାନଙ୍କର ଆର୍ଥିକ, ନୈତିକ ଓ ସାମାଜିକ ଜୀବନର ବିସ୍ତୃତ ବର୍ଣ୍ଣନା ପ୍ରଭୃତି ସଂଗ୍ରହ କରିବାକୁ ହେବ । ତା ନ ହେଲେ କୌଣସି ଦେଶର ଇତିହାସକୁ "ପୂର୍ଣ୍ଣାଙ୍ଗ" କୁହାଯିବ ନାହିଁ । ହଣ୍ଟର୍ ସାହେବ ଏ ସମସ୍ତ ଦିଗରେ ଆଦୌ ଦୃଷ୍ଟି ଦେଇ ନ ଥିଲେ । ତାହାଙ୍କର ଇତିହାସ ପାଠ କଲେ ସ୍ପଷ୍ଟ ଜଣାଯିବ ଯେ, ଗୋଟିଏ ଦେଶର ଏବଂ ଗୋଟିଏ ପ୍ରାଚୀନ ଜାତିର ପୂର୍ଣ୍ଣାଙ୍ଗ ଇତିହାସ ଲେଖିବା ପାଇଁ ଯେତେ ସମୟ, ପରିଶ୍ରମ ଓ ଗବେଷଣା ବା ଅନୁସନ୍ଧାନ କରିବାକୁ ହେବ, ହଣ୍ଟର୍ ସାହେବ ତାହା କରି ନ ଥିଲେ । ସେତିକି କରିବାପାଇଁ ହୁଏ ତ ତାହାଙ୍କର ଧୈର୍ଯ୍ୟ ନ ଥିଲା କିମ୍ବା ସମୟ ନ ଥିଲା ।

ହଣ୍ଟର୍ ସାହେବଙ୍କର ଇତିହାସ ଅଜକୁ ପ୍ରାୟ ୬୭।୬୮ ବର୍ଷ ତଳେ ଲେଖା ହୋଇଥିଲା । ଇତିମଧ୍ୟରେ ଦେଶର ପ୍ରାଚୀନ ଇତିହାସ ସଙ୍କଳନ ଦିଗରେ ଅନେକ ଗବେଷଣା କରାଯାଇଛି । ଅନେକ ନୂତନ ତଥ୍ୟ ମଧ୍ୟ ଆବିଷ୍କୃତ ହୋଇଛି । ୧୦।୧୫ ବର୍ଷ ପୂର୍ବେ ଯାହାକୁ ଖାଣ୍ଟି ସତ୍ୟ ବୋଲି ଧରାଯାଇଥିଲା, ଅଧିକ ବିଶ୍ୱାସଯୋଗ୍ୟ ପ୍ରମାଣ ମିଳିବାରୁ ଅଜ ତାହାକୁ ନୂତନ ଆକାରରେ ପ୍ରକାଶ କରିବାକୁ ହୋଇଛି ।

ଦେଶରେ ଶିକ୍ଷା ଓ ସଭ୍ୟତାର ଆଲୋକ ଯେତେଦୂର ବିସ୍ତୃତ ହୋଇଛି ଏବଂ ପ୍ରତ୍ୟେକ ପୁରପଲ୍ଲୀ ଦେଇ ଯା ଆସ କରିବା ପାଇଁ ସଡ଼କ ଓ ରାସ୍ତାଘାଟର ଯେପରି ସୁବିଧା ହୋଇଛି, ସେହି ତୁଳନାରେ ଏ ଦେଶର ପ୍ରାଚୀନ ଇତିହାସ ସଙ୍କଳନ କରିବା କାର୍ଯ୍ୟଟା ମଧ୍ୟ ସେପରି ସହଜ ହୋଇଛି । ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରେ ଥିବା ଭଙ୍ଗା ମନ୍ଦିର, ପୋତା ନଦୀ, ମାଟିସ୍ତୂପ ଏବଂ ପ୍ରତ୍ୟେକ ଦେବମନ୍ଦିରରେ ଥିବା ପ୍ରାଚୀନ ଗ୍ରନ୍ଥାଗୃହଗୁଡ଼ିକରେ ପ୍ରାଚୀନ ଉତ୍କଳର ଇତିହାସ ପଡ଼ି ରହିଛି । ଏଗୁଡ଼ିକୁ ସଂଗ୍ରହ କରିବା ପାଇଁ ଅସୀମ ଧୈର୍ଯ୍ୟ, ଅଟଳ ପ୍ରତିଜ୍ଞା ଓ ଜୀବନବ୍ୟାପୀ ସାଧନା ଦରକାର ।

ପ୍ରାଚୀନ ଉତ୍କଳରେ ନ ଥିଲା କଣ ? ଉତ୍କଳର ବିଭିନ୍ନ ପୁରପଲ୍ଲୀରେ ଥିବା ଦେବ-ମନ୍ଦିର, ତୀର୍ଥଘାଟ, ନଦନଦୀ, ପ୍ରାଚୀନ ତାଳପତ୍ର ପୋଥି, ଶିଳା ଓ ତାମ୍ରଶାସନ ଏବଂ ଖୋଦିତ ଗୁମ୍ଫା ଓ ବିଭିନ୍ନ ଧର୍ମର ଦେବଦେବୀଙ୍କ ପ୍ରତିମୂର୍ତ୍ତିଗୁଡ଼ିକୁ ଦେଖିଲେ କିଏ କହିବ, ଏ ଦେଶରେ ପୂର୍ବେ କିଛି ନ ଥିଲା ? ଉତ୍କଳର ଏହି ପ୍ରାଚୀନ କୀର୍ତ୍ତି-ଗୁଡ଼ିକୁ ଦେଖି କେତେ ଦେଶୀ ଓ ପାଶ୍ଚାତ୍ୟ ପଣ୍ଡିତ ମୁଗ୍‌ଧ ହୋଇ ନାହାନ୍ତି ? ହୁଏନ୍‌ସାଁ, ଆବୁଲ ଫଜଲ୍, କୀଟୋ, ପ୍ରିନ୍‌ସେପ୍ସ, ଷ୍ଟର୍‌ଲିଂ, ରାଜେନ୍ଦ୍ରଲାଲ ଓ ଗାଙ୍ଗୁଲିଙ୍କଠାରୁ ଆରମ୍ଭ କରି ନଗେନ୍ଦ୍ର ବସୁ, ନିର୍ମଳ ବସୁ ଓ ରାଖାଲ ଦାସ ବାନର୍ଜି ପ୍ରଭୃତି ଐତିହାସିକ ପଣ୍ଡିତମାନେ 'ଓଡ଼ିଶା' ସମ୍ବନ୍ଧରେ ଯେଉଁ ପ୍ରକାଣ୍ଡ ଗ୍ରନ୍ଥମାନ ଲେଖିଯାଇଛନ୍ତି, ସେ ସମସ୍ତେ କି ଏହି ଉତ୍କଳର ପୁରପଲ୍ଲୀରୁ ଉପାଦାନ ସଂଗ୍ରହ କରିଥିଲେ ? ବଙ୍ଗଳାର 'ଏସିଆଟିକ୍ ସୋସାଇଟି', ପାଟଣାର 'ବିହାର ଓଡ଼ିଶା ଅନୁସନ୍ଧାନ ସଙ୍ଘ', ରାଜାମହେନ୍ଦ୍ରୀର 'ଅନ୍ଧ୍ର ଇତିହାସ ସଙ୍ଘ' ଏବଂ ଲଣ୍ଡନର 'ରୟଲ୍ ଏସିଆଟିକ୍ ସୋସାଇଟୀ' ଓ ରୟଲ୍ ସୋସାଇଟୀ ଅଫ୍ ଆର୍ଟ୍ସ ପ୍ରଭୃତି ସଙ୍ଘଗୁଡ଼ିକର ମୁଖପତ୍ରରେ ଯେଉଁ ଧାରାବାହିକ ପ୍ରବନ୍ଧ ପ୍ରକାଶିତ ହୁଏ, ସେ ସବୁ ପ୍ରବନ୍ଧ ପାଇଁ ଉପାଦାନ ଏହି ଉତ୍କଳରୁ ସଂଗ୍ରହ କରାଯାଇଥାଏ । ସୁଦୂର କ୍ରୀସ୍‌ଦେଶ ବିଂ ଏନ୍‌ ଗ୍ରୀସ୍, କଟକ ରେଭେନ୍ସା କଲେଜର ନାନ୍ ପଣ୍ଡି, ପାଟଣା ଓ ମଯୂରଭଞ୍ଜରୁ ଯାଦୁଘର ନାନା ପର୍ଷ ସଂଗ୍ରହ କରିଥିବା ପ୍ରାଚୀନ ପ୍ରସ୍ତରମୂର୍ତ୍ତି

ପ୍ରଭୃତି କଲିକତାର 'ଭାରତୀୟ ଯାଦୁଘରେ' ଏବଂ ଇଂଲଣ୍ଡର "ବ୍ରିଟିଶ ଯାଦୁଘରେ" ଥିବା ଅଧିକାଂଶ ପ୍ରସ୍ତରମୂର୍ତ୍ତି, ପ୍ରାଚୀନ ପୋଥି, ଶିଳା ଓ ତାମ୍ରଶାସନ ଏହି ଉତ୍କଳରୁ ସଂଗୃହ କରାଯାଇଥିଲା । ଉତ୍କଳରୁ ସଂଗୃହ କରାଯାଇଥିବା ଏହି ଉପାଦାନକୁ ନେଇ ଅଧିକାଂଶ ବିଦେଶୀ ଓ ପାଶ୍ଚାତ୍ୟ ପଣ୍ଡିତ ପୁସ୍ତକ ଓ ପ୍ରବନ୍ଧ ଲେଖି ନିଜର ଐତିହାସିକ ତୃଷା ମେଣ୍ଟାଇଛନ୍ତି !

ପ୍ରାଚୀନ ଉତ୍କଳର ଜଣେ ପ୍ରବଳ ପ୍ରତାପୀ ସ୍ୱଜଚକ୍ରବର୍ତ୍ତୀ ଖାରବେଳ ଭାରତର ଅଧିକାଂଶ ପ୍ରଦେଶ ଜୟ କରି ସେଠାରେ ତାଙ୍କ ଏକଚ୍ଛତ୍ରାଧିପତ୍ୟ ସ୍ଥାପନ କରିଥିବାର ବର୍ଣ୍ଣିତ ଅଛି । ସ୍ୱାଧୀନ ଉତ୍କଳୀୟ ରାଜାମାନଙ୍କ ସମୟରେ ଏ ଦେଶର ସୀମା "ଗଙ୍ଗାନଦୀଠାରୁ ଗୋଦାବରୀ ଯାଏ" ବ୍ୟାପିଥିବାର କିମ୍ବଦନ୍ତୀ ଅଛି । ଏହି ରାଜାମାନଙ୍କ ସମୟରେ କୋଟି କୋଟି ସ୍ୱର୍ଣ୍ଣମୁଦ୍ରା ଖର୍ଚ୍ଚ କରି ନିର୍ମିତ ହୋଇଥିବା ଭାରତର ଅଦ୍ୱିତୀୟ ଓ ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ଦେବମନ୍ଦିରଗୁଡ଼ିକୁ ଦେଖି ଆଜି ଜଗତବାସୀ ମୁଗ୍ଧ ହୁଅନ୍ତି ! ପ୍ରାଚୀନ ଯୁଗର ଏତେ ବଡ଼ ବିଭବରେ ହଣ୍ଟର ସାହେବ କହନ୍ତି, ଏ ଦେଶରେ କିଛି ନ ଥିଲା ! ଗୋଟିଏ ପ୍ରାଚୀନ ଜାତି ପ୍ରତି ତାହାଙ୍କର ଏହି ତାଚ୍ଛଲ୍ୟ ଭାବ କେତେଦୂର ଶୋଚନୀୟ, ତାହା ପାଠକମାନେ ସ୍ଥିର କରନ୍ତୁ ।

ସତ କଥା, ଏକ୍ଷଣି ଉତ୍କଳର ସେ ବିଭବ ନାହିଁ, ସେପରି ପ୍ରାଚୀନ କବି, ପଣ୍ଡିତ ବା ରାଜା ଓ ସୈନ୍ୟ ସାମନ୍ତ ନାହାନ୍ତି । ଉତ୍କଳର 'କଟୁରୁ ଉଡ଼ ବନା ପଡ଼ିଛି ।' ତାହାର ସୀମା ସଙ୍କୁଚିତ ହୋଇଛି । ଦେଶବିଦେଶରେ ଉତ୍କଳର ଚିହ୍ନ ରଖିବା ଭଳି କେଶନାୟକ ନାହାନ୍ତି । ତଥାପି ପ୍ରାଚୀନ ଶିଳ୍ପଗୌରବକୁ ନେଇ ଉତ୍କଳର ଚିହ୍ନ ସମସ୍ତ ଭାରତ କାହିଁକି, ଅନେକ ପାଶ୍ଚାତ୍ୟ ଦେଶରେ ମଧ୍ୟ ରହିଛି । ଉତ୍କଳର ଗିରିକନ୍ଦରରେ ଥିବା ଗୁମ୍ଫା ଓ ସ୍ତୂପ ଏବଂ ଭୁବନେଶ୍ୱର, ପୁରୀ ଓ କୋଣାର୍କର ଭାସ୍କର କାର୍ଯ୍ୟ ଦେଖିବା ପାଇଁ ପ୍ରତିଦିନ ଅନେକ ବିଦେଶୀ ପଣ୍ଡିତ ଉତ୍କଳକୁ ଆସନ୍ତି । ଏଠାର ପ୍ରାଚୀନ ଶିଳ୍ପ ବିଭବ ଦେଖି ସେମାନେ ମୁଗ୍ଧ ହୁଅନ୍ତି—ସେ ସମ୍ବନ୍ଧରେ ଏକାଧିକ ଗ୍ରନ୍ଥ ଲେଖିବାକୁ ଇଚ୍ଛା କରନ୍ତି ।

ଏକ୍ଷଣି ଉତ୍କଳୀୟମାନଙ୍କଠାରେ ସଂଘବଦ୍ଧ ଉଦ୍ୟମ ନାହିଁ । ପ୍ରାଚୀନ ଶିଳ୍ପ ସ୍ଥାପତ୍ୟ, ପ୍ରାଚୀନ ଶିକ୍ଷା ସଭ୍ୟତା, ପ୍ରାଚୀନ ନୌବାଣିଜ୍ୟ ଓ ପ୍ରାଚୀନ ଯୁଦ୍ଧତତ୍ତ୍ୱ ସମ୍ବନ୍ଧରେ ଗଭୀର ଆଲୋଚନା କରିବା ପାଇଁ କୌଣସି ଉଚ୍ଚ ଶିକ୍ଷିତ ଓଡ଼ିଆ ଚେଷ୍ଟା କରୁ ନାହାନ୍ତି । ଯାହା କିଛି କରାଯାଇଛି, ସେ ସବୁ କେବଳ ଦୁଇ ଲେଖକମାନଙ୍କର

ହଣ୍ଟର୍ ସାହେବଙ୍କର ଇତିହାସ ଆଜକୁ ପ୍ରାୟ ୬୨୮ ବର୍ଷ ତଳେ ଲେଖା ଯାଇଥିଲା । ଇତିମଧ୍ୟରେ ଦେଶର ପ୍ରାଚୀନ ଇତିହାସ ସଙ୍କଳନ ଦିଗରେ ଅନେକ ଗବେଷଣା କରାଯାଇଛି । ଅନେକ ନୂତନ ତଥ୍ୟ ମଧ୍ୟ ଆବିଷ୍କୃତ ହୋଇଛି । ୧୦।୧୫ ବର୍ଷ ପୂର୍ବେ ଯାହାକୁ ଖାଣ୍ଟି ସତ୍ୟ ବୋଲି ଧରାଯାଇଥିଲା, ଅଧିକ ବିଶ୍ୱାସଯୋଗ୍ୟ ପ୍ରମାଣ ମିଳିବାରୁ ଆଜି ତାହାକୁ ନୂତନ ଆକାରରେ ପ୍ରକାଶ କରିବାକୁ ହୋଇଛି ।

ଦେଶରେ ଶିକ୍ଷା ଓ ସଭ୍ୟତାର ଆଲୋକ ଯେତେଦୂର ବିସ୍ତୃତ ହୋଇଛି ଏବଂ ପ୍ରତ୍ୟେକ ପୁରପଲ୍ଲୀ ଦେଇ ଯା ଆସ କରିବା ପାଇଁ ସଡ଼କ ଓ ଗମନାଗମନର ଯେପରି ସୁବିଧା ହୋଇଛି, ସେହି ତୁଳନାରେ ଏ ଦେଶର ପ୍ରାଚୀନ ଇତିହାସ ସଙ୍କଳନ କରିବା କାର୍ଯ୍ୟଟା ମଧ୍ୟ ସେପରି ସହଜ ହୋଇଛି । ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରେ ଥିବା ଭଙ୍ଗା ମନ୍ଦିର, ପୋତା ନଦୀ, ମାଟିସ୍ତୂପ ଏବଂ ପ୍ରତ୍ୟେକ ଦେବମନ୍ଦିରରେ ଥିବା ପ୍ରାଚୀନ ଗ୍ରନ୍ଥାଗାରମାନଙ୍କରେ ପ୍ରାଚୀନ ଉତ୍କଳର ଇତିହାସ ପଡ଼ି ରହିଛି । ଏଗୁଡିକୁ ସଂଗ୍ରହ କରିବା ପାଇଁ ଅସୀମ ଧୈର୍ଯ୍ୟ, ଅଟଳ ପ୍ରତିଜ୍ଞା ଓ ଜୀବନବ୍ୟାପୀ ସାଧନା ଦରକାର ।

ପ୍ରାଚୀନ ଉତ୍କଳରେ କ'ଣ ଥିଲା କଣ ? ଉତ୍କଳର ବିଭିନ୍ନ ପୁରପଲ୍ଲୀରେ ଥିବା ଦେବ-ମନ୍ଦିର, ତୀର୍ଥଘାଟ, ନଦନଦୀ, ପ୍ରାଚୀନ ତାଳପତ୍ର ପୋଥି, ଶିଳା ଓ ତାମ୍ରଶାସନ ଏବଂ ରାଶୀକୃତ ଗ୍ରନ୍ଥ ଓ ବିଭିନ୍ନ ଧର୍ମର ଦେବଦେବୀଙ୍କ ପ୍ରତିମୂର୍ତ୍ତିଗୁଡ଼ିକୁ ଦେଖିଲେ କିଏ କହିବ, ଏ ଦେଶରେ ପୂର୍ବେ କିଛି ନ ଥିଲା ? ଉତ୍କଳର ଏହି ପ୍ରାଚୀନ କୀର୍ତ୍ତି-ଗୁଡ଼ିକୁ ଦେଖି କେତେ ଦେଶୀ ଓ ପାଶ୍ଚାତ୍ୟ ପଣ୍ଡିତ ମୁଗ୍ଧ ହୋଇ ନାହାନ୍ତି ? ହୁଏନ୍‌ସାଂ, ଆବୁଲ୍ ଫଜଲ୍, କୀଟୋ, ପ୍ରିନ୍‌ସେପ୍, ଷ୍ଟର୍ଲିଂ, ରାଜେନ୍ଦ୍ରଲାଲ୍ ଓ ଗାଙ୍ଗୁଲିଙ୍କ ଠାରୁ ଆରମ୍ଭ କରି ନଗେନ୍ଦ୍ର ବସୁ, ନିର୍ମଳ ବସୁ ଓ ରାଖାଲ୍ ଦାସ ବାନର୍ଜି ପ୍ରଭୃତି ଐତିହାସିକ ପଣ୍ଡିତମାନେ 'ଓଡ଼ିଶା' ସମ୍ବନ୍ଧରେ ଯେଉଁ ପ୍ରକାଣ୍ଡ ଗ୍ରନ୍ଥମାନ ଲେଖିଯାଇଛନ୍ତି, ସେ ସମସ୍ତେ ତ ଏହି ଉତ୍କଳର ପୁରପଲ୍ଲୀରୁ ଉପାଦାନ ସଂଗ୍ରହ କରିଥିଲେ ? ବଙ୍ଗଳାର 'ଏସିଆଟିକ୍ ସୋସାଇଟି', ପାଟଣାର 'ବିହାର-ଓଡ଼ିଶା ଅନୁସନ୍ଧାନ ସଙ୍ଘ', ରାଜାମହେନ୍ଦ୍ରୀର 'ଅନ୍ଧ୍ର ଇତିହାସ ସଙ୍ଘ' ଏବଂ ଲଣ୍ଡନର 'ରଏଲ୍ ଏସିଆଟିକ୍ ସୋସାଇଟୀ' ଓ ରଏଲ୍ ସୋସାଇଟୀ ଅଫ୍ ଆର୍ଟ୍ସ ପ୍ରଭୃତି ସଙ୍ଘଗୁଡ଼ିକର ମୁଖପତ୍ରରେ ଯେଉଁ ଧାରାବାହିକ ପ୍ରବନ୍ଧ ପ୍ରକାଶିତ ହୁଏ, ସେ ସବୁ ପ୍ରବନ୍ଧ ପାଇଁ ଉପାଦାନ ଏହି ଉତ୍କଳରୁ ସଂଗ୍ରହ କରାଯାଇଥାଏ । ଲଣ୍ଡନର ବ୍ରିଟିଶ୍ ମ୍ୟୁଜିୟମ୍, କଲିକତା ମ୍ୟୁଜିୟମ୍, କଟକ ରେଭେନ୍ସା କଲେଜର କଳା ପକ୍ଷ, ପାଟଣା ଓ ମୟୂରଭଞ୍ଜର ଯାଦୁଘରର କଳା ପକ୍ଷ ସଂଗ୍ରହ କରିଥିବା ପ୍ରାଚୀନ ମୂର୍ତ୍ତିଗୁଡ଼ିକ

ପ୍ରଭୃତି କଲିକତାର 'ଭାରତୀୟ ଯାଦୁଘରେ' ଏବଂ ଇଂଲଣ୍ଡର "ବ୍ରିଟିଶ ଯାଦୁଘରେ" ଥିବା ଅଧିକାଂଶ ପ୍ରସ୍ତରମୂର୍ତ୍ତି, ପ୍ରାଚୀନ ପୋଥି, ଶିଳା ଓ ତାମ୍ରଶାସନ ଏହି ଉତ୍କଳରୁ ସଂଗୃହୀତ ହୋଇଥିଲା । ଉତ୍କଳରୁ ସଂଗୃହୀତ ହୋଇଥିବା ଏହି ଉପାଦାନକୁ ନେଇ ଅଧିକାଂଶ ବିଦେଶୀ ଓ ପାଶ୍ଚାତ୍ୟ ପଣ୍ଡିତ ପୁସ୍ତକ ଓ ପ୍ରବନ୍ଧ ଲେଖି ନିଜର ଐତିହାସିକ ତୃଷା ମେଣ୍ଟାଇଛନ୍ତି !

ପ୍ରାଚୀନ ଉତ୍କଳର ଜଣେ ପ୍ରବଳ ପ୍ରତାପୀ ସମ୍ରାଟ ଚକ୍ରବର୍ତ୍ତୀ ଖାରବେଳ ଭାରତର ଅଧିକାଂଶ ପ୍ରଦେଶ ଜୟ କରି ସେଠାରେ ତାଙ୍କ ଏକଚ୍ଛତ୍ରାଧିପତ୍ୟ ସ୍ଥାପନ କରିଥିବାର ବର୍ଣ୍ଣିତ ଅଛି । ସ୍ୱାଧୀନ ଉତ୍କଳୀୟ ରାଜାମାନଙ୍କ ସମୟରେ ଏ ଦେଶର ସୀମା "ଗଙ୍ଗାନଦୀଠାରୁ ଗୋଦାବରୀ ଯାଏ" ବ୍ୟାପିଥିବାର କିମ୍ବଦନ୍ତୀ ଅଛି । ଏହି ରାଜାମାନଙ୍କ ସମୟରେ କୋଟି କୋଟି ସ୍ୱର୍ଣ୍ଣମୁଦ୍ରା ଖର୍ଚ୍ଚ କରି ନିର୍ମିତ ହୋଇଥିବା ଭାରତର ଅଦ୍ୱିତୀୟ ଓ ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ଦେବମନ୍ଦିରଗୁଡ଼ିକୁ ଦେଖି ଆଜି ଜଗତବାସୀ ମୁଗ୍ଧ ହୁଅନ୍ତି ! ପ୍ରାଚୀନ ଯୁଗର ଏତେ ବଡ଼ ବୈଭବରେ, କାହାର ସନ୍ଦେହ ନ ହେବ, ଏ ଦେଶରେ କଣ ନ ଥିଲା ! ଗୋଟିଏ ପ୍ରାଚୀନ ଜାତି ପ୍ରତି ତାହାଙ୍କର ଏହି ତାତ୍ପର୍ଯ୍ୟ ଭାବ କେତେଦୂର ଶୋଚନୀୟ, ତାହା ପାଠକମାନେ ସ୍ଥିର କରନ୍ତୁ ।

ସତ କଥା, ଏବେଣି ଉତ୍କଳର ସେ ବୈଭବ ନାହିଁ, ସେପରି ପ୍ରାଚୀନ କବି, ପଣ୍ଡିତ ବା ରାଜା ଓ ସୈନ୍ୟ ସାମନ୍ତ ନାହାନ୍ତି । ଉତ୍କଳର 'କଳୁରୁ ଉଣ୍ଡ ବନା ପଣ୍ଡର ?' ତାହାର ସୀମା ସଙ୍କୁଚିତ ହୋଇଛି । ଦେଶବିଦେଶରେ ଉତ୍କଳର ଚେତ ରଖିବା ଭଳି ଦେଶନାୟକ ନାହାନ୍ତି । ତଥାପି ପ୍ରାଚୀନ ଶିଳ୍ପଗୌରବକୁ ନେଇ ଉତ୍କଳର ଚେତ ସମସ୍ତ ଭାରତ କାହିଁକି, ଅନେକ ପାଶ୍ଚାତ୍ୟ ଦେଶରେ ମଧ୍ୟ ରହିଛି । ଉତ୍କଳର ଗିରିକନ୍ଦରରେ ଥିବା ଗୁମ୍ଫା ଓ ସ୍ତୂପ ଏବଂ ଭୁବନେଶ୍ୱର, ପୁରୀ ଓ କୋଣାର୍କର ଭାସ୍କର କାର୍ଯ୍ୟ ଦେଖିବା ପାଇଁ ପ୍ରତିଦିନ ଅନେକ ବିଦେଶୀ ପଣ୍ଡିତ ଉତ୍କଳକୁ ଆସନ୍ତି । ଏଠାର ପ୍ରାଚୀନ ଶିଳ୍ପ ବୈଭବ ଦେଖି ସେମାନେ ମୁଗ୍ଧ ହୁଅନ୍ତି—ସେ ସମ୍ବନ୍ଧରେ ଏକାଧିକ ଗ୍ରନ୍ଥ ଲେଖିବାକୁ ଇଚ୍ଛା କରନ୍ତି ।

ଏବେଣି ଉତ୍କଳୀୟମାନଙ୍କଠାରେ ସଂଘବଦ୍ଧ ଉଦ୍ୟମ ନାହିଁ । ପ୍ରାଚୀନ ଶିଳ୍ପ ସ୍ଥାପତ୍ୟ, ପ୍ରାଚୀନ ଶିକ୍ଷା ସଭ୍ୟତା, ପ୍ରାଚୀନ ନୌବାଣିଜ୍ୟ ଓ ପ୍ରାଚୀନ ସ୍ୱାଧୀନତତ୍ତ୍ୱ ସମ୍ବନ୍ଧରେ ଗଭୀର ଆଲୋଚନା କରିବା ପାଇଁ କୌଣସି ଉଚ୍ଚ ଶିକ୍ଷିତ ଓଡ଼ିଆ ଚେଷ୍ଟା କରୁ ନାହାନ୍ତି । ଯାହା କିଛି କରାଯାଇଛି, ସେ ସବୁ କେବଳ କେତେକ ଲେଖକମାନଙ୍କର

ଅବିକଳ ଅନୁକରଣ ବା ନକଲ ମାତ୍ର । ଏ ପର୍ଯ୍ୟନ୍ତ 'ଉତ୍କଳ' ସମ୍ବନ୍ଧରେ ଓଡ଼ିଆ ଭାଷାରେ ଯେଉଁ କେତେ ଖଣ୍ଡ ଗ୍ରନ୍ଥ ଲେଖା ଯାଇଛି, ତନ୍ମଧ୍ୟରୁ ୰ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ 'କୋଣାର୍କ' ଗ୍ରନ୍ଥ ହିଁ ପ୍ରକୃତ ଗବେଷଣାମୂଳକ ଐତିହାସିକ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍କଳର ପ୍ରତ୍ୟେକ ପ୍ରାଚୀନ କୀର୍ତ୍ତି ସମ୍ବନ୍ଧରେ ଏହିପରି ଖଣ୍ଡିଏ ଖଣ୍ଡିଏ ଗ୍ରନ୍ଥ ଲେଖା ନ ହେବା ଯାଏଁ ଏ ଦେଶର ପୂର୍ଣ୍ଣାଙ୍ଗ ଇତିହାସ ଲେଖା ହୋଇଛି ବୋଲି ଆଦୌ କୁହାଯାଇ ନ ପାରେ ।

ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ପ୍ରତ୍ୟେକ କାର୍ଯ୍ୟରେ ନିଜର ସ୍ୱାତନ୍ତ୍ର୍ୟ ବା ନିଜତ୍ୱ ରକ୍ଷା କରି କାର୍ଯ୍ୟ କରିଥିଲେ । କିନ୍ତୁ ଅତି ଦୁଃଖର କଥା ସେମାନଙ୍କର ସେହି ଯୁଗର ଖଣ୍ଡିଏ ସୁଦ୍ଧା ଶିଳ୍ପଶାସ୍ତ୍ର କିମ୍ବା ଅସ୍ତ୍ର ଆମ୍ଭେମାନେ ପାଇ ନାହୁଁ । ଏ ପର୍ଯ୍ୟନ୍ତ କୌଣସି ଐତିହାସିକ ବୈଜ୍ଞାନିକ ପ୍ରଣାଳୀରେ ଏ ଦେଶର ପ୍ରାଚୀନ ଶିଳ୍ପ ସ୍ଥାପତ୍ୟ-ଗୁଡ଼ିକୁ ପରୀକ୍ଷା କରି ନାହାନ୍ତି । ଅଧିକାଂଶ ଲେଖକ ଅନ୍ୟ ଦେଶର ଶିଳ୍ପ ସ୍ଥାପତ୍ୟ ସଙ୍ଗେ, ଏ ଦେଶର ପ୍ରାଚୀନ କୀର୍ତ୍ତିଗୁଡ଼ିକୁ ତୁଳନା କରି ନିଜର ଲେଖାମାନ ପ୍ରକାଶ କରିଛନ୍ତି । ତଦ୍ୱାରା ଏ ଦେଶର ସ୍ୱାତନ୍ତ୍ର୍ୟ ନଷ୍ଟ ହୋଇଛି । ଉତ୍କଳୀୟ ମନ୍ଦିର ଓ ପ୍ରସ୍ତରମୂର୍ତ୍ତିଗୁଡ଼ିକୁ ଦେଖିଲେ କେହି କହି ପାରିବେ ନାହିଁ ଯେ, ଏଗୁଡ଼ିକ ବୈଦେଶିକ ଶୈଳୀର ଅନୁକରଣରେ ନିର୍ମିତ ହୋଇଥିଲା । ସମ୍ପୂର୍ଣ୍ଣ ନିରପେକ୍ଷ ଭାବରେ ଏବଂ ବୈଜ୍ଞାନିକ ପ୍ରଣାଳୀରେ ଏ ଦେଶର ପ୍ରତ୍ୟେକ ଦେବ ମନ୍ଦିର, ଗୁମ୍ଫା ଓ ପ୍ରସ୍ତରମୂର୍ତ୍ତିଗୁଡ଼ିକୁ ପରୀକ୍ଷା କରି ତହିଁର ବିବରଣୀ ପ୍ରକାଶ କଲେ ଉତ୍କଳର ଶିଳ୍ପବୈଭବ ବିଷୟରେ ଆହୁରି ଅନେକ ନୂତନ ତଥ୍ୟ ଜାଣି ହେବ । ଏ ଦିଗରେ ଶିକ୍ଷିତ ଓଡ଼ିଆ ଯୁବକମାନଙ୍କର ଦୃଷ୍ଟି ପଡ଼ିବାର ଆଶା କରାଯାଏ । ଆଜକୁ ପ୍ରାୟ ଚାରି ବର୍ଷ ତଳେ ଏହି ପୁସ୍ତକର ପାଣ୍ଡୁଲିପି ଲେଖିଥିଲି । ଇତିମଧ୍ୟରେ ଅନେକ ନୂତନ ତଥ୍ୟ ସଂଗ୍ରହ କରିଥିବାରୁ ପ୍ରଥମ ଲେଖାକୁ ସମ୍ପୂର୍ଣ୍ଣ ପରିବର୍ତ୍ତନ ଓ ପରିବର୍ଦ୍ଧନ କରିଅଛି । ଏହା କରିବା ପାଇଁ ମୁଁ ମୟୂରଭଞ୍ଜର ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତ ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟଙ୍କଠାରୁ ଯେଉଁ ଉତ୍ସାହ ପାଇଥିଲି, ସେଥିପାଇଁ ତାହାଙ୍କଠାରେ କୃତଜ୍ଞ ରହିଲି ।

ଏହି ପୁସ୍ତକରେ ଅନେକ ଗୁଡ଼ିଏ ପ୍ରାଚୀନ ମନ୍ଦିର ଓ ପ୍ରସ୍ତରମୂର୍ତ୍ତିର ଚିତ୍ର ଦିଆଯାଇଛି । ଏଥିରୁ କେତୋଟି ଚିତ୍ରର ନକଲ ମୟୂରଭଞ୍ଜର ପ୍ରତ୍ନତତ୍ତ୍ୱ-ବିଭାଗରୁ ସଂଗ୍ରହ କରିଥିଲି । ଅନ୍ୟଗୁଡ଼ିକ ଓଡ଼ିଶା ସମ୍ବନ୍ଧରେ ପ୍ରକାଶିତ ଗ୍ରନ୍ଥ ଓ ଗ୍ରନ୍ଥ-କର୍ତ୍ତାଙ୍କଠାରୁ ପାଇଛି । ଏଥି ସକାଶେ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଦିଏଁ । ପୁସ୍ତ-

ଦର ମସୃଣ ଉପରେ ଦିଆଯାଇଥିବା ଶବର ପ୍ରତିଲିପି ଚକ୍ରଟିଙ୍କୀ ଶ୍ରୀଯୁକ୍ତ ଗୋପାଳ-ଚରଣ କାନୁନଗୋଙ୍କ ହାତ ଲେଖା । ଗୋପାଳ ବାବୁ କଠିନ ସ୍ୱେଦରେ ପଣ୍ଡ ସୁଦ୍ଧା ମୋହର ଏବଂ ତବ ଶତ୍ରିକ ଛଅର ଦର ଧନ୍ୟବାଦର ପାତ୍ର ହୋଇଛନ୍ତି । ଏଥିରେ ପ୍ରାଚୀନ ଉତ୍କଳୀୟ ଶିଳ୍ପର ବିଭିନ୍ନ ସ୍ତର ସୁନ୍ଦର ଭାବରେ ଦେଖାଇ ଦିଆ ଯାଇଛି ।

ବିଶାଳ ଉତ୍କଳର ସବୁ ପ୍ରାଚୀନ କୀର୍ତ୍ତି ତନ୍ନ ତନ୍ନ କରି ଦେଖିବାର ସୁବିଧା ମୁଁ ପାଇ ନାହିଁ, ଯଥାସାଧ୍ୟ ଯାହା ସଂଗ୍ରହ କରିଥିଲି ତାହାକୁ ହିଁ ଏହି ଗ୍ରନ୍ଥରେ ପ୍ରକାଶ କରିଛି । ଆହୁରି ଅନେକ ନୂତନ ତଥ୍ୟ ଏ ଦେଶର ବିଭିନ୍ନ ସ୍ଥାନରେ ପଡ଼ି ରହିଛି । ସୁବିଧା ହେଲେ ତେବେ ସେଗୁଡ଼ିକୁ ଦେଖି ତହିଁର ବିସ୍ତୃତ ବିବରଣୀ ସଂଗ୍ରହ କଲେ ପରବର୍ତ୍ତୀ ସଂସ୍କରଣରେ ତାହାକୁ ପ୍ରକାଶ କରିବାର ବାସନା ରହିଲା ।



# ଚିତ୍ର ପରିଚୟ

୨୩—ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫା ସମୂହ
୨୪—ଖଣ୍ଡଗିରି ଉପରସ୍ଥିତ ଜୈନ ମନ୍ଦିର
୨୫—ସ୍ୱର୍ଣୀବ୍ରଂସମ୍ବର
୨୬—ଦୁଇ ଶ୍ରେଣୀର ସୂର୍ଯ୍ୟମୂର୍ତ୍ତି
୨୭—ମାନବାକୃତି ଶିବମୂର୍ତ୍ତି
୨୮—ଅଷ୍ଟଭୁଜ ଶିବ
୨୯—ପାର୍ଶ୍ୱନାଥ
୩୦—ବୁଦ୍ଧଦେବ
୩୧ ବୌଦ୍ଧଚକ୍ର—ଚନ୍ଦ୍ର ସେଣ୍ଡା
୩୨—ବ୍ରାହ୍ମଣୀ
୩୩—ଚାମୁଣ୍ଡା
୩୪ – ଗଣେଶ





୧—ବାରବାଟୀ ଦୁର୍ଗର ଦ୍ୱାର

( ରବ ବୁକ ବଃବ ଟେନ୍‌ ସୁ.ଲର [illegible] ଅନୁଗ୍ରହରୁ ପ୍ରାପ୍ତ )

# ଉତ୍କଳର ଶିଳ୍ପ-ସମ୍ପଦ

## ଶିଳ୍ପ କଣ ?

ନିଜର ମନୋଭାବ ପ୍ରକାଶ କରିବା ପାଇଁ ମନୁଷ୍ୟମାନେ ଯେଉଁ ଚିତ୍ର ଅଙ୍କନ କରନ୍ତି, ପ୍ରସ୍ତରମୂର୍ତ୍ତି ଗଢ଼ନ୍ତି ବା ଦେବମନ୍ଦିର ନିର୍ମାଣ କରନ୍ତି, ସେହି ଚିତ୍ର, ପ୍ରସ୍ତରମୂର୍ତ୍ତି ଓ ଦେବମନ୍ଦିର ପ୍ରଭୃତିକୁ "ଶିଳ୍ପ" କୁହାଯାଏ । ଆଦିମ ଯୁଗରୁ ମନୁଷ୍ୟ ମାନେ ସୌନ୍ଦର୍ଯ୍ୟର ଉପାସକ ଅଟନ୍ତି । ଏହି ସୃଷ୍ଟି ସଙ୍ଗେ ସଙ୍ଗେ ମନୁଷ୍ୟମାନଙ୍କର ସୌନ୍ଦର୍ଯ୍ୟ ଲିପ୍ସା ମଧ୍ୟ ସୃଷ୍ଟି ହୋଇଛି । ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ପାଇଁ ମନୁଷ୍ୟମାନେ ଯେଉଁ ଚାରୁକାର୍ଯ୍ୟ କରନ୍ତି, ତାହା ହିଁ "ଶିଳ୍ପ" ।

ମାନବ ସମାଜର କ୍ରମୋନ୍ନତି ସେମାନଙ୍କର ଭାବପ୍ରକାଶ-ଚାତୁରୀ ଉପରେ ନିର୍ଭର କରେ । ଯେଉଁ ଜାତି ବା ସମାଜ ଯେତେ ଉନ୍ନତ ଧରଣରେ ନିଜର ଭାବ ପ୍ରକାଶ କରିପାରେ, ସେହି ଜାତି ବା ସମାଜ ସେତେ ଉନ୍ନତ ଓ ସଭ୍ୟ ଅଟେ । ବାକ୍ୟ ପ୍ରକାଶରେ ରସିକତା ବା ଚାତୁରୀ, ଭାଷାରେ ଶବ୍ଦବିନ୍ୟାସ ବା ଅଳଙ୍କାର, ନୃତ୍ୟ କଳାରେ ଲାସ୍ୟ ବା ବୀଭତ୍ସତା, ପଦାର୍ଥ ଗଠନରେ ପ୍ରସନ୍ନତା ଓ ସ୍ନିଗ୍ଧତା, ଚିତ୍ରବିଦ୍ୟାରେ ସ୍ୱଚ୍ଛତା ଓ ଦେଶକାଳ ରୁଚିକରତ୍ୱ—ଏହି ସବୁର କ୍ରମବିକାଶ ହିଁ ସମାଜର ସ୍ଥାନକୁ ଉଚ୍ଚରୁ ଉଚ୍ଚକୁ ଉଠାଇନିଏ ।

ଶିଳ୍ପର ଅନ୍ୟ ଏକ ସ୍ୱଭାବ ସୃଷ୍ଟିକାର୍ଯ୍ୟ । ଏଥିରେ ଶିଳ୍ପୀ ତାହାର ସୌନ୍ଦର୍ଯ୍ୟ ଲିପ୍ସାକୁ ପ୍ରକାଶ କରିବା ପାଇଁ ଯତ୍ନ କରେ । ସେଥିରେ ହିଁ ସେ ଆତ୍ମପ୍ରସାଦ ଲାଭ କରେ । ଅନ୍ୟ କୌଣସି ଲୋକ ତାହାର ହସ୍ତପ୍ରସୂତ ଜିନିଷକୁ ଦେଖି ନିନ୍ଦା ବା ପ୍ରଶଂସା କରନ୍ତୁ ସେଥିରେ ସେ କ୍ଷୁବ୍ଧ ବା ପ୍ରସନ୍ନ ନୁହେଁ । ସେ ତାହାର ନିଜ କାର୍ଯ୍ୟ ଦେଖି ଆତ୍ମତୃପ୍ତ ହୁଏ ।

କୌଣସି ଗୋଟିଏ ଚିତ୍ର ବା ମୂର୍ତ୍ତି ଜଣେ ଲୋକର ମନକୁ ତୃପ୍ତ କରିପାରେ; କିନ୍ତୁ ଯେଉଁ ଚିତ୍ର ବା ମୂର୍ତ୍ତି ସବୁ ଦେଶରେ ଓ ସବୁ କାଳରେ ଲୋକମାନଙ୍କୁ ତୃପ୍ତି ଦିଏ, ଅର୍ଥାତ୍ ଯାହା ସାର୍ବଜନୀନ ପ୍ରୀତି ଉତ୍ପାଦନ କରେ, ତାହା ହିଁ ପ୍ରକୃତ ଶିଳ୍ପ ବା ବିଶିଷ୍ଟ ଶିଳ୍ପ ଅଟେ । ସେଥିପାଇଁ ଇଂରାଜୀ କବି କହିଅଛନ୍ତି—

"A thing of beauty is a Joy for ever" ( Keats ) ଏବଂ ଆମର କବିବର ରାଧାନାଥ ରାୟ ଲେଖିଛନ୍ତି—

"ସୁନ୍ଦର ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେ ହେଁ ନୂଆ ଦିଶୁଥାଇ ।" (ଚିଲିକା)

ସେପରି ସାର୍ବଜନୀନ ପ୍ରୀତିପ୍ରଦ ଚିତ୍ର ବା ଶିଳ୍ପକାର୍ଯ୍ୟରେ ଶିଳ୍ପୀର ପ୍ରକୃତ ଶିଳ୍ପଚାତୁରୀ ପ୍ରସ୍ଫୁଟିତ ହୁଏ ।

ପୃଥିବୀର ସବୁ ଶ୍ରେଣୀ ଶିଳ୍ପକୁ ବିଶେଷଜ୍ଞମାନେ ନିମ୍ନ ତିନି ଶ୍ରେଣୀରେ ବିଭକ୍ତ କରିଅଛନ୍ତି ।

୧ । ବାସ୍ତୁ ଶିଳ୍ପ—ମନ୍ଦିର ଓ ଗୃହନିର୍ମାଣ ଶିଳ୍ପ (Architecture)

୨ । ସ୍ଥାପତ୍ୟ—ମୂର୍ତ୍ତିମାଗଠନ ଶିଳ୍ପ ( Sculpture )

୩ । ଚିତ୍ରାଙ୍କନ ଓ ସୂଚୀ ଶିଳ୍ପ (Painting and Textile work)

ଏହି ତିନି ଶ୍ରେଣୀ ଶିଳ୍ପର ବିସ୍ତୃତ ବର୍ଣ୍ଣନା ପରବର୍ତ୍ତୀ ଅଧ୍ୟାୟଗୁଡ଼ିକରେ ବର୍ଣ୍ଣିତ ହେବ ।

---

## ଶିଳ୍ପକଳାର ଇତିବୃତ୍ତ

କେଉଁ ଯୁଗରେ ଓ କାହାଦ୍ୱାରା ପ୍ରଥମେ 'ଶିଳ୍ପକଳା' ସୃଷ୍ଟି ହେଲା, ଏହି ପ୍ରଶ୍ନର ପ୍ରକୃତ ଉତ୍ତର ଦେବା ପାଇଁ ଅଦ୍ୟାପି ଅନେକ ଗବେଷଣା କରିବାକୁ ହେବ । ପୃଥିବୀର ପ୍ରତ୍ୟେକ ଦେଶରେ ଥିବା ଲୋକମାନଙ୍କର ପୂର୍ଣ୍ଣାଙ୍ଗ ଇତିହାସ ଓ ସେଠାରେ ଥିବା ଶିଳ୍ପସ୍ଥାପତ୍ୟର ବିସ୍ତୃତ ବର୍ଣ୍ଣନା ପ୍ରକାଶିତ ନ ହେବା ଯାଏ ଏହି ପ୍ରଶ୍ନର ଠିକ ଉତ୍ତର ଦେବା ସହଜ ନୁହେଁ । ଆଜିଯାଏ ଯେଉଁ କେତେକ ଦେଶର ଇତିହାସ ପ୍ରକାଶିତ ହୋଇଛି, ତନ୍ମଧ୍ୟରୁ ମିସର, ବାବିଲୋନ ଓ ସିରିଆ ଦେଶର ସଭ୍ୟତା ଅତି ପ୍ରାଚୀନ ଯୁଗର ବୋଲି ସ୍ଥିର କରାଯାଇଛି । ଏହି ଦେଶଗୁଡ଼ିକରେ ଅତି ପ୍ରାଚୀନ

ଯୁଗର ଶିଳ୍ପସ୍ଥାପତ୍ୟ ମିଳେ । ଏଗୁଡ଼ିକୁ ଦେଖିଲେ ସେକାଳରେ ଏଠାର ଅଧିବାସୀ-ମାନେ କିପରି ସଭ୍ୟ ଓ ଉନ୍ନତ ଥିଲେ, ସ୍ପଷ୍ଟ ଜାଣିହୁଏ ।

ବିଶେଷଜ୍ଞମାନେ ପ୍ରାଚୀନ ସଭ୍ୟତାକୁ ନିମ୍ନ ଚାରି ଶ୍ରେଣୀରେ ବିଭକ୍ତ କରିଅଛନ୍ତି ।

୧ମ । ପ୍ରାଚୀନ ପ୍ରସ୍ତର ଯୁଗ (Palaeolithic or Old Stone Age)—ଏହି ଯୁଗର ଲୋକମାନେ ଗଛମୂଳରେ ବା ଗହ୍ୱର ମଧ୍ୟରେ ବାସ କରୁଥିଲେ, କଞ୍ଚା ମାଂସ ଖାଉଥିଲେ, ଖାଦ୍ୟ ପେୟ ରନ୍ଧନ ଜାଣି ନ ଥିଲେ; ଅତି ଅନୁନ୍ନତ ଧରଣର ପ୍ରସ୍ତର ଅସ୍ତ୍ର ବ୍ୟବହାର କରୁଥିଲେ ।

୨ୟ । ନୂତନ ପ୍ରସ୍ତରଯୁଗ (Neolithic or New Stone Age)—ଏହି ଯୁଗର ଲୋକମାନେ ପରିଷ୍କୃତ ଧରଣର ପ୍ରସ୍ତର ଶସ୍ତ୍ରାସ୍ତ୍ର ଓ ଧନୁଶର ବ୍ୟବହାର କରୁଥିଲେ । ମାଟିର ପାତ୍ର ବ୍ୟବହାର କରିବା, ପଶୁପକ୍ଷୀଙ୍କୁ ପୋଷିବା ଓ ଚାଷ କରିବା ପ୍ରଭୃତି ମଧ୍ୟ ଜାଣିଥିଲେ । ଏ ଦୁଇ ଯୁଗର ସଭ୍ୟତା ଖ୍ରୀଷ୍ଟପୂର୍ବ ୫୦୦୦ ବା ଆଜିକୁ ୭୦୦୦ ବର୍ଷ ତଳେ ଥିବା ସ୍ଥିର କରାଯାଉଛି ।

୩ୟ । ତାମ୍ରଯୁଗ (Chalico-Lithic or Copper Age)—ଏହି ଯୁଗରେ ଲୋକମାନେ ସଭ୍ୟତାର ଅତି ଉଚ୍ଚ ସୋପାନରେ ପହଞ୍ଚିଥିଲେ । ସାଧାରଣ ଗୃହୋପଯୋଗୀ ଉପକରଣ ଓ ଜନ୍ତଷଠାରୁ ଆରମ୍ଭ କରି ଅନେକ ପ୍ରକାରର ଅସ୍ତ୍ରଶସ୍ତ୍ର ତମ୍ବାରେ ତିଆରି କରି ଏମାନେ ବ୍ୟବହାର କରୁଥିଲେ । ସୁନା ଓ ମୋତି ମାଣିକ୍ୟର ବ୍ୟବହାର ମଧ୍ୟ ଜାଣିଥିଲେ । ମାଟି ପାତ୍ର, ମାଟିର ଇଟା, ମୋହର ଓ ପ୍ରସ୍ତରମୂର୍ତ୍ତିମାନ ଗଢ଼ୁଥିଲେ । ବିବିଧ ପଶୁପକ୍ଷୀର ଚିତ୍ର ଓ ମୂର୍ତ୍ତି ଗଢ଼ୁଥିଲେ । ଉଲ୍ଲାସ ଏ ଯୁଗର ଅଧିବାସୀମାନେ ପ୍ରତିମା-ପୂଜା କରୁଥିବାର ଜଣାଯାଏ । ଖ୍ରୀଷ୍ଟପୂର୍ବ ୫୦୦୦ ଠାରୁ ୩୦୦୦ ବର୍ଷ ମଧ୍ୟରେ ଏହି ଯୁଗର ଅଧିବାସୀମାନେ ମେସପୋଟାମିଆରେ ବାସ କରୁଥିଲେ । ଗତ ୧୯୨୨ ଠାରୁ ୧୯୨୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ଉତ୍ତରପଶ୍ଚିମ ଭାରତର ସିନ୍ଧୁନଦୀ ତୀରବର୍ତ୍ତୀ 'ହରପ୍ପା' ଓ ''ମହେଞ୍ଜୋଦାରୋ'' ନାମକ ଦୁଇଟି ସ୍ଥାନରେ ଏହି ଯୁଗର ଅନେକ ପ୍ରାଚୀନ କୀର୍ତ୍ତି ଭୂଗର୍ଭରୁ ଆବିଷ୍କୃତ ହୋଇଥିଲା । ଏଗୁଡ଼ିକୁ ଦେଖି ପ୍ରତ୍ନ-

ତତ୍ତ୍ୱ ଐତିହାସିକମାନେ କହନ୍ତି ଯେ, ଭାରତରେ ଆର୍ଯ୍ୟ ଆଗମନର ବହୁ ଶତବର୍ଷ ପୂର୍ବେ ଅତି ସଭ୍ୟ ଓ ଉନ୍ନତ ଶିଳ୍ପସ୍ଥାପତ୍ୟ ଜାଣିଥିବା ଲୋକ ବାସ କରୁଥିଲେ । *

୪ର୍ଥ । ଲୌହଯୁଗ ( Iron Age )—ଭୂଗର୍ଭରୁ ଲୌହ ଓ ଅନ୍ୟାନ୍ୟ ଧାତୁ ପଦାର୍ଥ ଖୋଳି ତହିଁରୁ ବିଭିନ୍ନ ଶସ୍ତ୍ରାସ୍ତ୍ର ଉପକରଣ ଓ ଅଳଙ୍କାର ପ୍ରଭୃତି ଯେଉଁ ସମୟରେ ତିଆର ହୋଇ ପାରୁଥିଲା, ସେହି ଯୁଗକୁ "ଲୌହ ଯୁଗ" କୁହାଯାଏ । ଖ୍ରୀଷ୍ଟପୂର୍ବ ୨୦୦ ବର୍ଷ ପରେ ଏହି ଯୁଗ ଆରମ୍ଭ ହୋଇଥିବା ଜଣାଯାଏ ।

**ପ୍ରାଚୀନ ଶିଳ୍ପସ୍ଥାପତ୍ୟ**—ଶିଳ୍ପକଳାର ଇତିବୃତ୍ତ ଜାଣିବା ପାଇଁ ଆମ୍ଭମାନଙ୍କୁ ପ୍ରଥମେ ଅତି ପ୍ରାଚୀନ ଯୁଗର ଶିଳ୍ପସ୍ଥାପତ୍ୟ ଖୋଜିବାକୁ ହେବ । ଏହି ଶିଳ୍ପସ୍ଥାପତ୍ୟଗୁଡ଼ିକୁ ଦେଖିଲେ ସେଗୁଡ଼ିକ କେଉଁ ଯୁଗରେ ତିଆର ହୋଇଥିଲା, ତାହା ଜାଣି ହେବ । ସଙ୍ଗେ ସଙ୍ଗେ ଶିଳ୍ପକଳା ସୃଷ୍ଟିର ପ୍ରଥମ ସମୟ ସ୍ଥିର କରି ହେବ । ସିନ୍ଧୁନଦୀ ତୀରବର୍ତ୍ତୀ ମହେଞ୍ଜୋଦାରୋ ଓ ନରଜୁଧାରୋ ପ୍ରଭୃତି ଅଞ୍ଚଳରୁ ଆବିଷ୍କୃତ ହୋଇଥିବା ତାମ୍ର ଓ ପ୍ରସ୍ତରଯୁଗର ଶିଳ୍ପସ୍ଥାପତ୍ୟଗୁଡ଼ିକ ଏବେ ଭାରତ କାହିଁକି ପୃଥିବୀର ଅତି ପ୍ରାଚୀନ କୀର୍ତ୍ତି ବୋଲି ଏକ୍ଷଣି ପଣ୍ଡିତମାନେ ସ୍ଥିର କରୁଛନ୍ତି । ଏହା ଆବିଷ୍କୃତ ହେବା ପୂର୍ବରୁ ଭାରତରେ ପ୍ରାଗ୍‌ବୈଦିକ ବା ପ୍ରାଗାର୍ଯ୍ୟ ଯୁଗର କୌଣସି ଶିଳ୍ପସ୍ଥାପତ୍ୟ ନ ଥିବା କୁହାଯାଉଥିଲା । ମଗଧ ରାଜା ଅଶୋକଙ୍କ ପୂର୍ବରୁ ଭାରତରେ କୌଣସି ପ୍ରତିମୂର୍ତ୍ତି ବା ସ୍ଥାପତ୍ୟ ନ ଥିବାର ମଧ୍ୟ କୁହାଯାଉଥିଲା; କିନ୍ତୁ ପ୍ରୋକ୍ତ ମହେଞ୍ଜୋଦାରୋ ପ୍ରଭୃତିର ପ୍ରାଚୀନ କୀର୍ତ୍ତିଗୁଡ଼ିକ ଐତିହାସିକମାନଙ୍କର ପୂର୍ବଭ୍ରମକୁ ଦୂର କରାଇ ଦେଇଛି । ବୌଦ୍ଧଯୁଗ ପରେ ଭାରତର ଶିଳ୍ପସ୍ଥାପତ୍ୟ ବା ଶିଳ୍ପକଳା ସୃଷ୍ଟି ହୋଇଥିବା ଯେଉଁମାନେ ବିଶ୍ୱାସ କରୁଥିଲେ, ସେମାନେ ଏହି ପ୍ରାଗୈତିହାସିକ ଯୁଗର ପ୍ରତିମୂର୍ତ୍ତି ଓ ଚାରୁକଳାଗୁଡ଼ିକୁ ଦେଖି ନିଜର ମତକୁ ପରିବର୍ତ୍ତନ କରିଅଛନ୍ତି । **ଅତଏବ** ଭାରତରେ ଖ୍ରୀଷ୍ଟପୂର୍ବ ୫୦୦୦ ବର୍ଷ ଆଗରୁ ଶିଳ୍ପକଳାର ସୃଷ୍ଟି ହୋଇଥିବା ନିଃସନ୍ଦେହରେ କୁହାଯାଇପାରେ ।

---

* ସିନ୍ଧୁନଦୀ ତୀରବର୍ତ୍ତୀ ଖାଇରପୁର ରାଜ୍ୟ ନିକଟରେ ଥିବା "ନାରୁ-ଯା-ଧାରୋ" ( Naru-Ja-Dharo ) ନାମକ ସ୍ଥାନରୁ ଅବିଷ୍କୃତ ପ୍ରାଚୀନ ଶିଳ୍ପସ୍ଥାପତ୍ୟଗୁଡ଼ିକ ମହେଞ୍ଜୋଦାରୋଠାରୁ ଅଧିକ ପ୍ରାଚୀନ ଥିବାର କଳ୍ପିତ ଅଛି । (A. B. Patrika, 8-8-1935)

## ଉତ୍କଳରେ ଶିଳ୍ପସ୍ଥାପତ୍ୟର ପ୍ରାଚୀନତ୍ୱ

ଉତ୍କଳର ଗୋଟିଏ ପୂର୍ଣ୍ଣାଙ୍ଗ ଇତିହାସ ଏପର୍ଯ୍ୟନ୍ତ ଲେଖା ହୋଇ ନାହିଁ । ଏଠାର ପୁରପଲ୍ଲୀରେ କେଉଁ ଯୁଗର କି ପ୍ରାଚୀନ କୀର୍ତ୍ତି ପଡ଼ି ରହିଛି, ତାହା ମଧ୍ୟ ସମ୍ପୂର୍ଣ୍ଣରୂପେ ଜଣାଯାଇ ନାହିଁ । ଏ ସମସ୍ତ ଖୋଜି ଏକତ୍ର ସଂଗ୍ରହ କରିବା ଯାଏଁ କିମ୍ବା ସେ ସମ୍ବନ୍ଧରେ ବିସ୍ତୃତ ବିବରଣୀ ପ୍ରକାଶିତ ହେବା ଯାଏଁ ଉତ୍କଳୀୟ ଶିଳ୍ପସ୍ଥାପତ୍ୟର ପ୍ରାଚୀନତ୍ୱ ବିଷୟ ଠିକ୍ କରିବା ସହଜ ନୁହେ । ତଥାପି ଆଜଯାଏ ଯେଉଁ କେତେକ ସ୍ଥାନରୁ ଅତି ପ୍ରାଚୀନ ଯୁଗର ଐତିହାସିକ ପ୍ରମାଣ ପାଇଅଛୁଁ, ସେଗୁଡ଼ିକୁ ଦେଖିଲେ ଏ ସମ୍ବନ୍ଧରେ କେତେକ ସିଦ୍ଧାନ୍ତ କରିବା ସୁବିଧା ହେବ । ପ୍ରାଚୀନ କୀର୍ତ୍ତିର ଅନୁସନ୍ଧାନ ବା ପ୍ରତ୍ନତତ୍ତ୍ୱ କାର୍ଯ୍ୟ କେବଳ ଅର୍ଥ ଓ ସମୟସାପେକ୍ଷ । ଏ ଦିଗରେ ଗଭୀର ଅନୁସନ୍ଧାନ ଓ ସହିଷ୍ଣୁତା ଦରକାର । ଉତ୍କଳରେ ଏପର୍ଯ୍ୟନ୍ତ ସ୍ୱତନ୍ତ୍ର ସରକାର ଓ ପ୍ରତ୍ନତତ୍ତ୍ୱବିଭାଗ ନ ଥିବାରୁ ଏହି କାର୍ଯ୍ୟ କରିବା ପାଇଁ କେହି ହେଲେ ଯତ୍ନ କରି ନ ଥିଲେ । ଏକ୍ଷଣି ଓଡ଼ିଶା ସରକାର ଏ ଦିଗରେ ବିଶେଷ ଦୃଷ୍ଟି ଦେବା ନିଃସନ୍ଦେହ । ସରକାରଙ୍କ ସହ ଦେଶର ଶିକ୍ଷିତ ବ୍ୟକ୍ତି ନିଜ ନିଜ ସୁବିଧାନୁସାରେ ଉତ୍କଳୀୟ ପୁରପଲ୍ଲୀର ପ୍ରତ୍ୟେକ ପ୍ରାଚୀନ ଐତିହାସିକ ସ୍ଥାନ, ସ୍ତୂପ, ପୋତା ନଦୀ ଓ ଭଗ୍ନମନ୍ଦିରର ପ୍ରାଚୀନତ୍ୱ ସମ୍ବନ୍ଧରେ ବିଶେଷ ଅନୁସନ୍ଧାନ କରି ପ୍ରକାଶ କଲେ ଏ ଦିଗରେ ଅନେକ ନୂତନ ତଥ୍ୟ ସଂଗ୍ରହ ହେବା ସମ୍ଭବ ।

ଓଡ଼ିଶାର ପ୍ରାଚୀନ ଇତିହାସ ସମ୍ବନ୍ଧରେ ଏପର୍ଯ୍ୟନ୍ତ ଯେଉଁ କେତୋଟି ଗ୍ରନ୍ଥ ଲେଖା ଯାଇଛି, ତନ୍ମଧ୍ୟରୁ ମୟୂରଭଞ୍ଜ ମହାରାଜାଙ୍କ ପ୍ରତ୍ନତତ୍ତ୍ୱବିଭାଗଦ୍ୱାରା ପ୍ରକାଶିତ ଗ୍ରନ୍ଥଗୁଡ଼ିକ ଅତି ଉପାଦେୟ ବୋଲି କୁହାଯାଇପାରେ । ପ୍ରାଚୀନ ଇତିହାସ ଅନୁସନ୍ଧାନ ଦିଗରେ ମୟୂରଭଞ୍ଜ ଦରବାର ଯେଉଁ ଆଦର୍ଶ ଦେଖାଇଛନ୍ତି, ତାହା ଉତ୍କଳର ଅନ୍ୟାନ୍ୟ ଗଡ଼ଜାତ ଓ ଓଡ଼ିଶା ସରକାର ଅନୁକରଣ କରିବାକୁ ହେବ । ବର୍ତ୍ତମାନ ଏହି ମୟୂରଭଞ୍ଜ ଦରବାରଙ୍କଦ୍ୱାରା ପ୍ରକାଶିତ କେତେ ଖଣ୍ଡ ଗ୍ରନ୍ଥରୁ ଉତ୍କଳର ପ୍ରାଚୀନ ଶିଳ୍ପସ୍ଥାପତ୍ୟ ବିଷୟରେ କେତେକ ଆଲୋଚନା ଏଠାରେ କରାଯିବ ।*

* ଯେଉଁମାନେ କେବଳ ମୟୂରଭଞ୍ଜ ରାଜ୍ୟ ବିଷୟରେ ବିସ୍ତୃତ ବିବରଣୀ ଜାଣିବାକୁ ଇଚ୍ଛା କରନ୍ତି, ସେମାନେ ନିମ୍ନ କେତେକ ଗ୍ରନ୍ଥ ପାଠ କରିବେ ।

1. Archaeological Survey of Mayurbhanja.
2. Khiching.
3. Annual administration Reports of Mayurbhanja.

ଉତ୍କଳରେ ଏ ପର୍ଯ୍ୟନ୍ତ ଯେଉଁ କେତେକ ଅତି ପ୍ରାଚୀନ କୀର୍ତ୍ତି ଆବିଷ୍କୃତ ହୋଇଅଛି, ତନ୍ମଧ୍ୟରୁ ମୟୂରଭଞ୍ଜର "ପ୍ରାଚୀନ ଓ ନୂତନ ପ୍ରସ୍ତର ଯୁଗ"ର ଶସ୍ତ୍ର-ଗୁଡ଼ିକ ପ୍ରଧାନ ଅଟେ । ଏହି ରାଜ୍ୟର ବୈଦ୍ୟପୁର ଓ ଖିଚିଙ୍ଗଠାରେ ଏ ଯୁଗର ପ୍ରସ୍ତର କୁହ୍ରାଡ଼ି ଓ ତାମ୍ରଯୁଗର ତମ୍ବା ଫାର୍ସା ମିଳିଅଛି । ଏହି ଅସ୍ତ୍ରଶସ୍ତ୍ରଗୁଡ଼ିକ ବଙ୍ଗଦେଶ ଓ ମାନ୍ଦ୍ରାଜ ଅଞ୍ଚଳରୁ ମିଳିଥିବା ପ୍ରାଚୀନକୀର୍ତ୍ତି ସଙ୍ଗେ ସମାନ ଥିବାର ଐତିହାସିକମାନେ କହନ୍ତି ।

ମୟୂରଭଞ୍ଜ ବ୍ୟତୀତ ଅନ୍ୟ ସ୍ଥାନଗୁଡ଼ିକରୁ ମଧ୍ୟ ପ୍ରାଚୀନ ପ୍ରସ୍ତରଯୁଗର ଅସ୍ତ୍ରଶସ୍ତ୍ର ଆବିଷ୍କୃତ ହୋଇଥିଲା ।

୧ । ଢେଙ୍କାନାଳ ରାଜ୍ୟର ପ୍ରସ୍ତର ଅସ୍ତ୍ରଗୁଡ଼ିକ ଅତି ଅନୁନ୍ନତ ଧରଣର ।

୨ । ଅନୁଗୁଳର 'କାଲିକାକୋଠା' ନାମକ ସ୍ଥାନରୁ ଅତି ଚଉଡ଼ା ଓ ଅଣଓସାରିଆ ଅସ୍ତ୍ର ମିଳିଛି ।

୩ । ତାଳଚେରର 'ହରିଚନ୍ଦ୍ରପୁର'ଠାରୁ ମିଳିବା ଅସ୍ତ୍ରଗୁଡ଼ିକ ଅତି ସୁନ୍ଦର ଓ ଚିକ୍କଣ ଅଟେ ଏବଂ

୪ । ସମ୍ବଲପୁରର କୁଲୁସାପଲ୍ଲୀ । ଏଠାର ଅସ୍ତ୍ରଗୁଡ଼ିକ ଅତି ଗୋଲିଆ ବା ମୁନିଆ ଅଟେ ।

ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର ବ୍ୟତୀତ ମୟୂରଭଞ୍ଜର ବସ୍ତି ଗଡ଼ରୁ ମିଳିଥିବା ତମ୍ବା ଫାର୍ସା ଓ ବାଲେଶ୍ୱରର ତମ୍ବା କୁହ୍ରାଡ଼ି ଏବଂ ମେଦନାପୁରରୁ ମିଳିଥିବା ଠେଙ୍ଗିଆ ପ୍ରଭୃତି ଦେଖିଲେ ଖ୍ରୀଷ୍ଟଜନ୍ମର ତିନି ଚାରି ହଜାର ବର୍ଷ ପୂର୍ବେ ଏହି ପ୍ରଦେଶ-ଗୁଡ଼ିକରେ ଲୋକବସତି ଥିଲା ଏବଂ ଏହି ଲୋକମାନେ ସଭ୍ୟତାର କେତେକ ସ୍ତରକୁ ଉନ୍ନତି ଲାଭ କରିଥିଲେ ବୋଲି ସ୍ପଷ୍ଟ କହିପାରୁ ।

ସିନ୍ଧୁନଦୀ ତୀରବର୍ତ୍ତୀ ପ୍ରାଚୀନ କୀର୍ତ୍ତିଗୁଡ଼ିକୁ ଦେଖି ଐତିହାସିକ ପଣ୍ଡିତ-ମାନେ ସେହି ଯୁଗବାସୀଙ୍କୁ 'ତାମ୍ରଯୁଗ'ର ଲୋକ ଥିବାର ଓ ପ୍ରାଗୈତିହାସିକ ଯୁଗରେ (ଅର୍ଥାତ୍ ଆର୍ଯ୍ୟମାନେ ଭାରତକୁ ଆସିବାର ବହୁ ସହସ୍ର ବର୍ଷ ପୂର୍ବେ) ଏହି ଅଞ୍ଚଳରେ ଅତି ସଭ୍ୟ ଲୋକ ବାସ କରୁଥିବାର ସ୍ଥିର କରନ୍ତି । ମୟୂରଭଞ୍ଜର ବସ୍ତି ଗଡ଼ ଓ ବାଲେଶ୍ୱରରୁ ମିଳିଥିବା ତାମ୍ର ଫାର୍ସା ଓ କୁହ୍ରାଡ଼ି ପ୍ରଭୃତି ଦେଖିଲେ ପ୍ରାଚୀନ ଉତ୍କଳରେ ମଧ୍ୟ ତାମ୍ର ଯୁଗର ଲୋକମାନେ ଥିଲେ ବୋଲି କହିପାରୁ । କିନ୍ତୁ ଏ ଦିଗରେ ଆହୁରି ବିଶେଷ ଅନୁସନ୍ଧାନ କରିବାକୁ ହେବ ! ଏପର୍ଯ୍ୟନ୍ତ ମିଳିଥିବା କୌଣସି ଶିଳାଲେଖରେ

ସେହି ଯୁଗର ଲିପି କମ୍ବା ସାଲ ପ୍ରଭୃତି ନ ଥିବାରୁ ସେଗୁଡ଼ିକ ପ୍ରକୃତରେ କେଉଁ ଯୁଗର, ତାହା ସ୍ଥିର କରିବା ସହଜ ନୁହେଁ । ଉତ୍କଳର ଅନ୍ୟାନ୍ୟ ପୁରପଲ୍ଲୀରେ ଆହୁରି ଏହି ଧରଣର ଶସ୍ତ୍ରାସ୍ତ୍ର ଆବିଷ୍କୃତ ହେଲେ ପ୍ରାଚୀନ ପ୍ରସ୍ତର ଓ ତାମ୍ରଯୁଗ ବିଷୟ ଦୃଢ଼-ରୂପେ ସ୍ଥିର କରାଯାଇପାରେ ।

**ମୂର୍ତ୍ତି ପୂଜା**—ଭାରତରେ ମୂର୍ତ୍ତିପୂଜା ବା "ପ୍ରତିମା-ପୂଜା" ପ୍ରଥମେ କେଉଁ ଯୁଗରୁ ଆରମ୍ଭ ହେଲା, ଏହାର ସଠିକ ବର୍ଣ୍ଣନା କୌଣସି ଗ୍ରନ୍ଥରେ ଲେଖାଯାଇ ନାହିଁ । ଆଜିସୁଦ୍ଧା ସମସ୍ତେ ବିଶ୍ୱାସ କରୁଥିଲେ ଯେ, କେବଳ ମହାଯାନ ବୌଦ୍ଧଧର୍ମର ପ୍ରଚାର ପରେ ଭାରତରେ ପ୍ରଥମେ ମୂର୍ତ୍ତି-ପୂଜା ଆରମ୍ଭ ହୋଇଥିଲା । କେତେକ ପଣ୍ଡିତ କହନ୍ତି ଯେ, ବୈଦିକ ଯୁଗରେ ଭାରତୀୟ ଆର୍ଯ୍ୟମାନେ ମୂର୍ତ୍ତି-ପୂଜା କରୁ ନ ଥିଲେ । କିନ୍ତୁ ସିନ୍ଧୁ ଉପତ୍ୟକାରୁ ଯେଉଁ ଦେବଦେବୀଙ୍କ ପ୍ରତିମୂର୍ତ୍ତି ଆବିଷ୍କୃତ ହୋଇଛି, ତହିଁରୁ ଭାରତରେ ଆର୍ଯ୍ୟ ଆଗମନର ବହୁ ଶତବର୍ଷ ପୂର୍ବେ ମୂର୍ତ୍ତିପୂଜା ଚଳୁଥିବାର ପ୍ରମାଣିତ ହୋଇଛି ।

ହିନ୍ଦୁମାନଙ୍କର ପ୍ରଧାନ ଧର୍ମଗ୍ରନ୍ଥ ବେଦ । ଆର୍ଯ୍ୟମାନେ ପ୍ରକୃତିର କେତେକ ଦେବତାଙ୍କୁ ପୂଜା କରୁଥିବାର ଏହି ଗ୍ରନ୍ଥରେ ବର୍ଣ୍ଣିତ ଅଛି । ଏପରି ଦେବତାଙ୍କ ମଧ୍ୟରୁ ସୂର୍ଯ୍ୟ, ଅଗ୍ନି, ବରୁଣ, ବାୟୁ ଓ ଅଷ୍ଟଦିଗପାଳ ପ୍ରଭୃତି ପ୍ରଧାନ ଥିଲେ । ପୌରାଣିକ ଯୁଗରେ ଏ ସମସ୍ତ ଦେବତାଙ୍କ ସହ ଆହୁରି ଶତାଧିକ ଦେବଦେବୀଙ୍କ ପୂଜା ସୃଷ୍ଟି ହୋଇଥିଲା । ସଙ୍ଗେ ସଙ୍ଗେ ସେହି ସେହି ଦେବଦେବୀଙ୍କର ପ୍ରତିମୂର୍ତ୍ତି ଗଢ଼ି ଦେଶର ପ୍ରତ୍ୟେକ ପୁରପଲ୍ଲୀବାସୀ ସେଗୁଡ଼ିକ ପୂଜା କରିବା ପାଇଁ ନିୟମ କରାଯାଇଥିଲା । ଦେଶବାସୀଙ୍କ ମନୋଭାବ ଧର୍ମପ୍ରତି ଯେତେ ଆକୃଷ୍ଟ ହୋଇଥିଲା, ଦେଶରେ ଭିନ୍ନ ଦେବଦେବୀଙ୍କ ପ୍ରତିମୂର୍ତ୍ତିର ସଂଖ୍ୟା ସେତେ ବଢ଼ିଥିଲା ଏବଂ ନୂତନ ନୂତନ ପୁରାଣ ଓ ଉପପୁରାଣ ମଧ୍ୟ ସେତେସଂଖ୍ୟକ ଲେଖା ହୋଇଥିଲା । ସିନ୍ଧୁନଦୀ ଉପତ୍ୟକାରୁ ଆବିଷ୍କୃତ ପ୍ରାଚୀନ କୀର୍ତ୍ତି ମଧ୍ୟରୁ ଶିବ, ଶକ୍ତି ଓ ସର୍ପଦେବତାଙ୍କର ପ୍ରତିମୂର୍ତ୍ତି ପ୍ରଧାନ ଅଟେ । ଏଣୁ ସେହି ତାମ୍ରଯୁଗରେ ସୁଦ୍ଧା ଭାରତର ଆଦିମ (ଆର୍ଯ୍ୟ ଆଗମନର ପୂର୍ବ ଅଧିବାସୀ) ବାସୀ ଏ ସମସ୍ତ ଦେବଦେବୀଙ୍କର ପ୍ରତିମୂର୍ତ୍ତି ନିର୍ମାଣ କରି ସେଗୁଡ଼ିକର ପୂଜା କରୁଥିଲେ ବୋଲି କହିପାରୁଁ ।

**ଉତ୍କଳରେ ପ୍ରାଚୀନ ଯୁଗର ଦେବମନ୍ଦିର ଓ ପ୍ରତିମୂର୍ତ୍ତି**—ଖ୍ରୀଷ୍ଟପୂର୍ବ ଯୁଗର ଦେବମନ୍ଦିର ଉତ୍କଳର କୌଣସି ସ୍ଥାନରେ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇଥିବାର

ଜଣାଯାଏ ନାହିଁ; କିନ୍ତୁ ସେହି ଯୁଗର ଅସଂଖ୍ୟ ଦେବଦେବୀଙ୍କ ପ୍ରତିମୂର୍ତ୍ତି ଆମ୍ଭେ-ମାନେ ଦେଖିବାକୁ ପାଉଁ । ଏ ଶ୍ରେଣୀର ପ୍ରାଚୀନ ମୂର୍ତ୍ତିଗୁଡିକ ମୟୂରଭଞ୍ଜର ଭେଟେଟିକ ଗ୍ରାମରେ ( ଯଥା, ଝାଡ଼ଖଣ୍ଡ ଜଙ୍ଗଲ ପ୍ରଦେଶ ଓ ଖିଚିଙ୍ଗ ) ଏବଂ ନୀଳଗିରି ରାଜ୍ୟ ଓ ବାଲେଶ୍ବରର ସୋରେ ପ୍ରଭୃତି ଗ୍ରାମରୁ ଆବିଷ୍କୃତ ହୋଇଥିଲା । ଏପରି ଆବିଷ୍କୃତ ହୋଇଥିବା ସମସ୍ତ ପ୍ରତିମୂର୍ତ୍ତିର ବିସ୍ତୃତ ପରିଚୟ ମୟୂରଭଞ୍ଜର ପ୍ରତ୍ନତତ୍ତ୍ବ-ବିଭାଗଦ୍ବାରା ପ୍ରକାଶିତ ପୁସ୍ତକରେ ଲିପିବଦ୍ଧ ହୋଇଛି । ଏହି ପ୍ରାଚୀନ ଦେବଦେବୀଙ୍କ ମୂର୍ତ୍ତି ମଧ୍ୟରୁ କେତେ ଗୁଡ଼ିକର ସମୟ ଠିକ୍‌ରୂପେ ଜଣା ନ ଗଲେ ସୁଦ୍ଧା ଖୀଷ୍ଟ ଜନ୍ମର ବହୁଶତ ବର୍ଷ ପୂର୍ବେ ଏଗୁଡିକ ନିର୍ମିତ ହୋଇଥିବା ନିଃସନ୍ଦେହ ।

ସୂର୍ଯ୍ୟଦେବ, ଅଗ୍ନି, ବ୍ରହ୍ମା, ଶିବ, ସ୍କନ୍ଦ (କାର୍ତ୍ତିକେୟ), ଗଣେଶ, କ୍ଷେତ୍ର-ପାଳ, ନାଗମାତା, ପାର୍ଶ୍ବନାଥ (ଜୈନ) ଓ ବୁଦ୍ଧଦେବ ପ୍ରଭୃତି ପ୍ରଧାନ ଅଟନ୍ତି । ଏହି ମୂର୍ତ୍ତିଗୁଡିକ ପ୍ରସ୍ତରରେ ଖୋଳା ଯାଇଛି ଏବଂ ଆଜକାଲିର ମୂର୍ତ୍ତିଗୁଡିକ ସଙ୍ଗେ ତୁଳନା କଲେ ଏ ଗୁଡ଼ିକର ଗଠନପ୍ରଣାଳୀ ଖ୍ରୀଷ୍ଟପୂର୍ବ ପ୍ରାୟ ଏକ ହଜାର ବର୍ଷର ବୋଲି କୁହାଯାଇପାରେ । ପ୍ରତ୍ୟେକ ମୂର୍ତ୍ତିରେ ଆଧୁନିକ ଯୁଗର ସୂକ୍ଷ୍ମ ଶିଳ୍ପକାର୍ଯ୍ୟ ଦେଖା ନ ଗଲେ ସୁଦ୍ଧା ଏ ଗୁଡିକୁ ଦେଖିଲେ ପ୍ରତିମା-ଗଠନ ଦିଗରେ ସେ ଯୁଗର ଶିଳ୍ପୀମାନେ ବେଶ୍ ଦକ୍ଷତା ଲଭ କରିଥିଲେ ବୋଲି କହିପାରୁ ।



## ଉତ୍କଳର ଶିଳ୍ପଯୁଗ

ପ୍ରାକୃତିକ ଉତ୍କଳର ବିଭିନ୍ନ ପୁରପଲ୍ଲୀରୁ ଏ ପର୍ଯ୍ୟନ୍ତ ଯେଉଁ କେତେକ ଶିଳ୍ପସ୍ଥାପତ୍ୟ ଆବିଷ୍କୃତ ହୋଇଛି, ସେହିଗୁଡିକୁ ଦେଖି ଉତ୍କଳର ଶିଳ୍ପଯୁଗକୁ ନିମ୍ନ ସ୍ତରରେ ବିଭାଗ କରାଯାଇପାରେ । ଅଧିକ ବିଶ୍ବାସଯୋଗ୍ୟ ପ୍ରମାଣ ପାଇଲେ ଏହି ବିଭାଗଗୁଡିକର ପରିବର୍ତ୍ତନ ମଧ୍ୟ କରିବାକୁ ହେବ । ଯେତେଦିନଯାଏଁ ସମଗ୍ର ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରେ ଥିବା ପ୍ରାଚୀନ କୀର୍ତ୍ତିଗୁଡିକୁ ତନ୍ନ ତନ୍ନ ରୂପେ ଅନୁସନ୍ଧାନ କରି ତହିଁର ସଠିକ ସମୟ ସ୍ଥିର କରାଯାଇ ନାହିଁ, ସେ ସମୟଯାଏଁ ଉତ୍କଳର ଶିଳ୍ପଯୁଗକୁ ନିମ୍ନଭାଗରେ ବିଭକ୍ତ କଲେ ଅଯୁକ୍ତି ହେବ ନାହିଁ ।

# ଉତ୍କଳର ଶିଳ୍ପ ଯୁଗ

| ଶିଳ୍ପର ନାମ | ସମୟ | ଶିଳ୍ପସ୍ଥାପତ୍ୟର ସ୍ଥାନ | କେଉଁ ଶିଳ୍ପସଙ୍ଘ ଦ୍ୱାରା ନିର୍ମିତ | ପୂଜିତ ପ୍ରତିମା | ପ୍ରତିଷ୍ଠିତ ରାଜବଂଶ | ଅବଶିଷ୍ଟ ଶିଳ୍ପସ୍ଥାପତ୍ୟର ଉପାଦାନ |
|---|---|---|---|---|---|---|
| ୧। ପ୍ରାଗ୍‌ବୈଦିକ ଶିଳ୍ପ (ପ୍ରାଗୈତିହାସିକ ଯୁଗ) | ଖ୍ରୀଷ୍ଟପୂର୍ବ ୫୦୦୦-୩୦୦୦ | ଶିଶୁପାଳଗଡ ( ପୁରୀ ), ବୈଦ୍ୟପୁର, ଝିଟଙ୍ଗ ଓ ବାଘଡା (ମୟୂରଭଞ୍ଜ) | ? | ? | ? | ମାଟିର ମୋହର, ପ୍ରସ୍ତର ଶିଳ୍ପ ତାମ୍ର ଶିଳ୍ପ |
| ୨। ବୈଦିକ ଶିଳ୍ପ ଆର୍ଯ୍ୟଭାରତୀୟ ଯୁଗ ) | ଖ୍ରୀ. ପୂ. ୨୫୦୦-୫୦୦ | ମୟୂରଭଞ୍ଜ, ନୀଳଗିରି ଓ ବାଲେଶ୍ୱର | ଆର୍ଯ୍ୟଭାରତୀୟ ଶିଳ୍ପସଙ୍ଘ | ସୂର୍ଯ୍ୟ, ନାଗମାତା ଅଗ୍ନି, ଶିବ ପ୍ରଭୃତି | ସୌର ବ୍ରାହ୍ମଣ [ ମାଗ = Scythian ] | ପ୍ରସ୍ତର |
| ୩। ଜୈନଶିଳ୍ପ | ଖ୍ରୀ. ପୂ ୮୦୦ ୧୫୦ | ବାଲେଶ୍ୱର, ମୟୂରଭଞ୍ଜ, ଖଣ୍ଡଗିରି, ଉଦୟଗିରି— (ପୁରୀ) ଜୟପୁର | „ | ଜୈନ ତୀର୍ଥଙ୍କର ମୂର୍ତ୍ତି [ ପର୍ବତ ଦେହରେ ଗୁମ୍ଫା ଓ ପ୍ରତିମୂର୍ତ୍ତି ଗଠନ ] | ଚୈତ ବଂଶ | ପ୍ରସ୍ତର |
| ୪। ବୌଦ୍ଧ ଶିଳ୍ପ | ଖ୍ରୀ. ପୂ ୪୦୦-୧୫୦ | ମୟୂରଭଞ୍ଜ, ଜଉଗଡ (ଗଞ୍ଜାମ), ଧଉଳି (ପୁରୀ) | ଆର୍ଯ୍ୟ ଭାରତୀୟ ଏବଂ ମୌର୍ଯ୍ୟ ଶିଳ୍ପସଙ୍ଘ | ଗୌତମ ଓ ଶାକ୍ୟସିଂହ ଅଶୋକ ପ୍ରଶସ୍ତି | ଅଶୋକ | ପ୍ରସ୍ତର |
| ୫। ପୌରାଣିକ ଶିଳ୍ପ | ଖ୍ରୀ. ପୂ ୨୦୦ ଠାରୁ ୧୦ମ ଖ୍ରୀଷ୍ଟାବ୍ଦ | ପ୍ରାଚୀନଦୀ ଓ ବୈତରଣୀ ନଦୀ ତୀର | ଆର୍ଯ୍ୟ ଭାରତୀୟ ଶିଳ୍ପସଙ୍ଘ | ସାର୍ବଜନୀନ ସାକାରପୂଜା, ଶିବ ଓ ବିଷ୍ଣୁଙ୍କ ଦଶାବତାର | ଐର, ଚୈତ, ଭରବଂଶ | ପ୍ରାଚୀନ ଇଟାର ମନ୍ଦିର ଓ ପ୍ରସ୍ତର ପ୍ରତିମୂର୍ତ୍ତି |
| ୬। ଜୈନଶିଳ୍ପ | ୧ମ ଠାରୁ ୧୦ ଖ୍ରୀଷ୍ଟାବ୍ଦ ଏବଂ ୧୧।୨୦ଶ ଖ୍ରୀଷ୍ଟାବ୍ଦ | ଦକ୍ଷିଣରେ ଜମ୍ବୁଧରଠାରୁ ଉତ୍ତରରେ ମୟୂରଭଞ୍ଜ ଓ ନୀଳଗିରି ରାଜ୍ୟ ମଧ୍ୟରେ ପ୍ରତ୍ୟେକ ପୁରପଲ୍ଲୀରେ | ଉତ୍କଳୀୟ ଜୈନ ଶିଳ୍ପସଙ୍ଘ | ସାକାର ତୀର୍ଥଙ୍କର ମୂର୍ତ୍ତି | ଚୈତ, ଗୁପ୍ତ ଓ କେଶରୀ ବଂଶ | ପ୍ରସ୍ତର ଓ ଧାତୁ ମୂର୍ତ୍ତି, ଇଟାର ମନ୍ଦିର [ କଟକ ଓ ଖଣ୍ଡଗିରି ] |
| ୭। ବୌଦ୍ଧ ଶିଳ୍ପ | ୫ମ—୧୧ଶ ଖ୍ରୀଷ୍ଟାବ୍ଦ | କଟକ ଜିଲାର ଅସିଆ ପାହାଡ, ନୀଳଗିରି, ରତ୍ନଗିରି ଓ ଉଦୟଗିରି [ ପ୍ରାଚୀନ ପୁଷ୍ପଗିରି ] | ଉତ୍କଳୀୟ ମହାଯାନ ବୌଦ୍ଧ ସଙ୍ଘ | ସାକାର ବୁଦ୍ଧ ଓ ତାରା | କର, ଭୌମ, ଭଞ୍ଜ ଓ ଶୈଳୋଦ୍ଭବ ବଂଶ | ଇଟା, ପ୍ରସ୍ତର, ଧାତୁ |
| ୮। ଶୈବ ଶିଳ୍ପ | ଖ୍ରୀ. ୨ୟ—୧୩ଶ ଅବ୍ଦ | ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରେ | ଉତ୍କଳୀୟ [ କଳିଙ୍ଗ ] ଶିଳ୍ପସଙ୍ଘ | ସାକାର ଶିବ ମୂର୍ତ୍ତି ଓ ଲିଙ୍ଗ | ଭଞ୍ଜ ଓ କେଶରୀ ବଂଶ | ପ୍ରସ୍ତର ଓ ଧାତୁ |
| ୯। ଶାକ୍ତ ଶିଳ୍ପ [ ତାନ୍ତ୍ରିକ ] | ଖ୍ରୀ. ୫ମ—୮ମ ଅବ୍ଦ | ଏକନ | ଏକନ | ସାକାର ଶକ୍ତି ମୂର୍ତ୍ତି, ସପ୍ତମାତୃକା, କାଳୀ, ମହିଷାସୁରମର୍ଦ୍ଦିନୀ ପ୍ରଭୃତି | ଗଙ୍ଗବଂଶ, ସୋମବଂଶ ଓ ଭଞ୍ଜବଂଶ | ପ୍ରସ୍ତର, ଓ ଧାତୁ |
| ୧୦। ବୈଷ୍ଣବ ଶିଳ୍ପ | ଖ୍ରୀ. ୧୨ଶ—୧୬ଶ ଅବ୍ଦ | ଏକନ | ଏକନ | ଶିବ, ବିଷ୍ଣୁ, ସୂର୍ଯ୍ୟ, ଶ୍ରୀକୃଷ୍ଣ ଓ ଚୈତନ୍ୟ | କେଶରୀ, ଗଙ୍ଗ, ଭଞ୍ଜ ଓ ସୂର୍ଯ୍ୟବଂଶ | ପ୍ରସ୍ତର, ଧାତୁ, କାଠ ଓ ମାଟି |
| ୧୧। ଆଧୁନିକ ଶିଳ୍ପ | ଖ୍ରୀ. ୧୬ଶ ଠାରୁ ଅଦ୍ୟାବଧି | ଏକନ | କୌଣସି ନିର୍ଦ୍ଦିଷ୍ଟ ଶିଳ୍ପସଙ୍ଘ ନାହିଁ | ଶିବ, ବିଷ୍ଣୁ, ଶକ୍ତି, ଓ ଜୈନ ତୀର୍ଥଙ୍କର [ କଟକ ଓ ଖଣ୍ଡଗିରି ] | ଦେଶର ଧନୀ ଓ ମଧ୍ୟବିତ୍ତ ବ୍ୟକ୍ତି | ବିଭିନ୍ନ ଧାତୁ, ମାଟି, କାଠ, ଇଟା ଓ ପ୍ରସ୍ତର ପ୍ରଭୃତି |

# ଉତ୍କଳର ଶିଳ୍ପ ଯୁଗ

| ଶିଳ୍ପର ନାମ | ସମୟ | ଶିଳ୍ପାଦର୍ଶର ସ୍ଥାନ | କେଉଁ ଶିଳ୍ପସଙ୍ଘ ଦ୍ୱାରା ନିର୍ମିତ | ପୂଜିତ ପ୍ରତିମା | ପୃଷ୍ଠପୋଷକ ରାଜବଂଶ | ଅବଶିଷ୍ଟ ଶିଳ୍ପାଦର୍ଶର ଉପାଦାନ |
|---|---|---|---|---|---|---|
| ୧। ପ୍ରାକ୍‌ବୈଦିକ ଶିଳ୍ପ (ପ୍ରାଗୈତିହାସିକ ଯୁଗ) | ଖ୍ରୀଷ୍ଟପୂର୍ବ ୬୦୦୦-୩୦୦୦ | ଶିଶୁପାଳଗଡ଼ ( ପୁରୀ ), ବୈଦ୍ୟପୁର, କିଚିଙ୍ଗ ଓ ବାଘଡା (ମୟୂରଭଞ୍ଜ) | ? | ? | ? | ମାଟିର ମୋହର, ପ୍ରସ୍ତର ଶିଳ୍ପ ତାମ୍ର ଶିଳ୍ପ |
| ୨। ବୈଦିକ ଶିଳ୍ପ (ଆର୍ଯ୍ୟଭାରତୀୟ ଯୁଗ ) | ଖ୍ରୀ. ପୂ. ୨୦୦୦-୬୦୦ | ମୟୂରଭଞ୍ଜ, ନୀଳଗିରି ଓ ବାଲେଶ୍ୱର | ଆର୍ଯ୍ୟଭାରତୀୟ ଶିଳ୍ପସଙ୍ଘ | ସୂର୍ଯ୍ୟ, ନାଗମାତା ଅଗ୍ନି, ଶିବ ପ୍ରଭୃତି | ସୌର ବ୍ରାହ୍ମଣ [ ମଗ = Scythian ] | ପ୍ରସ୍ତର |
| ୩। ଜୈନଶିଳ୍ପ | ଖ୍ରୀ. ପୂ. ୮୦୦ ୧୫୦ | ବାଲେଶ୍ୱର, ମୟୂରଭଞ୍ଜ, ଖଣ୍ଡଗିରି, ଉଦୟଗିରି— (ପୁରୀ) ଜୟପୁର | ,, | ଜୈନ ତୀର୍ଥଙ୍କର ମୂର୍ତ୍ତି [ ପର୍ବତ ଦେହରେ ଗୁମ୍ଫା ଓ ପ୍ରତିମୂର୍ତ୍ତି ଗଠନ ] | ଚେଦି ବଂଶ | ପ୍ରସ୍ତର |
| ୪। ବୌଦ୍ଧ ଶିଳ୍ପ | ଖ୍ରୀ. ପୂ. ୪୦୦-୧୫୦ | ମୟୂରଭଞ୍ଜ, ଜଉଗଡ଼ (ଗଞ୍ଜାମ), ଧଉଳି (ପୁରୀ) | ଆର୍ଯ୍ୟ ଭାରତୀୟ ଏବଂ ମୌର୍ଯ୍ୟ ଶିଳ୍ପସଙ୍ଘ | ଗୌତମ ଓ ଶାକ୍ୟସିଂହ ଅଶୋକ ପ୍ରଶସ୍ତି | ଅଶୋକ | ପ୍ରସ୍ତର |
| ୫। ପୌରାଣିକ ଶିଳ୍ପ | ଖ୍ରୀ. ପୂ. ୨୦୦ ଠାରୁ ୧୦ମ ଖ୍ରୀଷ୍ଟାବ୍ଦ | ପ୍ରାଚୀନଦୀ ଓ ବୈତରଣୀ ନଦୀ ତୀର | ଆର୍ଯ୍ୟ ଭାରତୀୟ ଶିଳ୍ପସଙ୍ଘ | ସାର୍ବଜନୀନ ସାକାରପୂଜା, ଶିବ ଓ ବିଷ୍ଣୁଙ୍କ ଦଶାବତାର | ନାଗ, ଚେଦି, ଭରବଂଶ | ପ୍ରାଚୀନ ଇଟାର ମନ୍ଦିର ଓ ପ୍ରସ୍ତର ପ୍ରତିମୂର୍ତ୍ତି |
| ୬। ଜୈନଶିଳ୍ପ | ୧ମ ଠାରୁ ୧୦ ଖ୍ରୀଷ୍ଟାବ୍ଦ ଏବଂ ୧୧୨୦୦ ଖ୍ରୀଷ୍ଟାବ୍ଦ | ଦକ୍ଷିଣରେ ଜୟପୁରଠାରୁ ଉତ୍ତରରେ ମୟୂରଭଞ୍ଜ ଓ ନୀଳଗିରି ରାଜ୍ୟ ମଧ୍ୟରେ ପ୍ରତ୍ୟେକ ପୁରପଲ୍ଲୀରେ | ଉତ୍କଳୀୟ ଜୈନ ଶିଳ୍ପସଙ୍ଘ | ସାକାର ତୀର୍ଥଙ୍କର ମୂର୍ତ୍ତି | ଚେଦି, ଗୁପ୍ତ ଓ କେଶରୀ ବଂଶ | ପ୍ରସ୍ତର ଓ ଧାତୁ ମୂର୍ତ୍ତି, ଇଟାର ମନ୍ଦିର [ କଟକ ଓ ଖଣ୍ଡଗିରି ] |
| ୭। ବୌଦ୍ଧ ଶିଳ୍ପ | ୫ମ—୧୧ଶ ଖ୍ରୀଷ୍ଟାବ୍ଦ | କଟକ ଜିଲ୍ଲାର ଅସିଆ ପାହାଡ଼, ନୀଳଗଡ଼, ରତ୍ନଗିରି ଓ ଉଦୟଗିରି [ ପ୍ରାଚୀନ ପୁଷ୍ପଗିରି ] | ଉତ୍କଳୀୟ ମହାଯାନ ବୌଦ୍ଧ ସଙ୍ଘ | ସାକାର ବୁଦ୍ଧ ଓ ତାରା | ନାଗ, ଭୌମ, ଭଞ୍ଜ ଓ ଶୈଳୋଦ୍ଭବ ବଂଶ | ଇଟା, ପ୍ରସ୍ତର, ଧାତୁ |
| ୮। ଶୈବ ଶିଳ୍ପ | ଖ୍ରୀ. ୬ଷ୍ଠ—୧୩ଶ ଅବ୍ଦ | ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରେ | ଉତ୍କଳୀୟ [ କଳିଙ୍ଗ ] ଶିଳ୍ପସଙ୍ଘ | ସାକାର ଶିବ ମୂର୍ତ୍ତି ଓ ଲିଙ୍ଗ | ଭଞ୍ଜ ଓ କେଶରୀ ବଂଶ | ପ୍ରସ୍ତର ଓ ଧାତୁ |
| ୯। ଶାକ୍ତ ଶିଳ୍ପ [ ତାନ୍ତ୍ରିକ ] | ଖ୍ରୀ. ୫ମ—୮ମ ଅବ୍ଦ | ଏକନ | ଏକନ | ସାକାର ଶକ୍ତି ମୂର୍ତ୍ତି, ସପ୍ତମାତୃକା, କାଳୀ, ମହିଷାସୁର ମର୍ଦ୍ଦିନୀ ପ୍ରଭୃତି | ଗଙ୍ଗବଂଶ, ସୋମବଂଶ ଓ ଭଞ୍ଜବଂଶ | ପ୍ରସ୍ତର, ଓ ଧାତୁ |
| ୧୦। ବୈଷ୍ଣବ ଶିଳ୍ପ | ଖ୍ରୀ. ୧୨ଶ—୧୬ଶ ଅବ୍ଦ | ଏକନ | ଏକନ | ଶିବ, ବିଷ୍ଣୁ, ସୂର୍ଯ୍ୟ, ଶ୍ରୀକୃଷ୍ଣ ଓ ଚୈତନ୍ୟ | କେଶରୀ, ଗଙ୍ଗ, ଭଞ୍ଜ ଓ ସୂର୍ଯ୍ୟବଂଶ | ପ୍ରସ୍ତର, ଧାତୁ, କାଠ ଓ ମାଟି |
| ୧୧। ଆଧୁନିକ ଶିଳ୍ପ | ଖ୍ରୀ. ୧୭ଶ ଠାରୁ ଅଦ୍ୟାବଧି | ଏକନ | କୌଣସି ନିର୍ଦ୍ଦିଷ୍ଟ ଶିଳ୍ପସଙ୍ଘ ନାହିଁ | ଶିବ, ବିଷ୍ଣୁ, ଶକ୍ତି, ଓ ଜୈନ ତୀର୍ଥଙ୍କର [ କଟକ ଓ ଖଣ୍ଡଗିରି ] | ଦେଶର ଧନୀ ଓ ମଧ୍ୟବିତ୍ତ ବ୍ୟକ୍ତି | ଭରଣ ଧାତୁ, ମାଟି, କାଠ, ଇଟା ଓ ପ୍ରସ୍ତର ପ୍ରଭୃତି |

୨—ପୁରୀ ନବଠବର୍ତ୍ତୀ 'ଅଠରନଳା' ପୋଲ



୩—ଯାଜପୁର୍‌ର୍ ବାଇଶ ପାବଛ ଓ ବସ୍ତ୍ର ମନ୍ଦିର୍
( ଛବି ବ୍ଲକ ଯାଜପୁରର ହାଇସ୍କୁଲ କର୍ତ୍ତୃପକ୍ଷଙ୍କ ଅନୁଗ୍ରହରୁ ପ୍ରାପ୍ତ )

## ଉତ୍କଳର ପ୍ରାଚୀନ ଶିଳ୍ପସଙ୍ଘ

ଉତ୍କଳର ପ୍ରାଚୀନ ଶିଳ୍ପୀମାନେ ନିଜ ମଧ୍ୟରେ ଦଳବଦ୍ଧ ହୋଇ ବା ସଙ୍ଘ ଗଠନ କରି ଏ ଦେଶର ପ୍ରତ୍ୟେକ ମନ୍ଦିର ନିର୍ମାଣ ଓ ପ୍ରତିମା ଗଠନ କାର୍ଯ୍ୟ କରୁଥିଲେ। ଏହି ଉଦ୍ଦେଶ୍ୟରେ ଦେଶର ସ୍ଥାନେ ସ୍ଥାନେ ଶିଳ୍ପସଙ୍ଘମାନ ( School of Arts ) ସ୍ଥାପିତ ହୋଇଥିଲା। ସ୍ୱର୍ଗୀୟ ବାହାଦୁର ରମାପ୍ରସାଦ ଚନ୍ଦ ତାହାଙ୍କର "ଉତ୍କଳର ଶିଳ୍ପ" (Art in Orissa) ନାମକ ଗୋଟିଏ ପ୍ରବନ୍ଧରେ ପ୍ରାଚୀନ ଉତ୍କଳରେ ନିମ୍ନ ଚାରିଗୋଟି ଶିଳ୍ପସଂଘ ଥିବାର ଲେଖିଛନ୍ତି।

୧—'ଯାଜପୁର ଶିଳ୍ପସଂଘ' ଯାଜପୁରର ମାତୃକା ମୂର୍ତ୍ତି ନିର୍ମାଣ କରୁଥିଲେ।

୨—'ମହାଯାନ (ବୌଦ୍ଧ) ଶିଳ୍ପସଙ୍ଘ' କଟକ ଅସିଆ ପାହାଡ଼ର ବୌଦ୍ଧମୂର୍ତ୍ତି ନିର୍ମାଣ କରୁଥିଲେ।

୩—'ଦକ୍ଷିଣ ଓଡ଼ିଶା ( କଳିଙ୍ଗ ) ଶିଳ୍ପସଂଘ' ଭୁବନେଶ୍ୱର, ପୁରୀ ଓ କୋଣାର୍କର ମନ୍ଦିର ଓ ପ୍ରତିମୂର୍ତ୍ତି ନିର୍ମାଣ କରୁଥିଲେ।

୪—'ମୟୂରଭଞ୍ଜ ଶିଳ୍ପସଂଘ' ଖିଚଙ୍ଗ ପ୍ରଭୃତି ଅଞ୍ଚଳର ମନ୍ଦିର ଓ ପ୍ରତି-ମୂର୍ତ୍ତି ନିର୍ମାଣ କରୁଥିଲେ।

ଚନ୍ଦଙ୍କ ମତରେ ପ୍ରୋକ୍ତ ଚାରୋଟି ଶିଳ୍ପସଂଘ ୭ମଠାରୁ ୧୨ଶ ଶତାବ୍ଦୀ ମଧ୍ୟରେ ଉତ୍କଳର ସେହି ସେହି ସ୍ଥାନରେ ସ୍ଥାପିତ ହୋଇଥିଲା ଓ ପ୍ରତ୍ୟେକ ସଙ୍ଘ ନିଜ ନିଜର ବ୍ୟକ୍ତିତ୍ୱ ରକ୍ଷା କରି ସ୍ଥାନୀୟ ଦେବମନ୍ଦିର ଓ ପ୍ରତିମୂର୍ତ୍ତିଗୁଡ଼ିକୁ ନିର୍ମାଣ କରୁଥିଲେ। ପ୍ରକୃତରେ ଅଦ୍ୟାବଧି ସେହି ସେହି ସ୍ଥାନରୁ ଯେଉଁ ସବୁ ପ୍ରାଚୀନ କୀର୍ତ୍ତି ଆବିଷ୍କୃତ ହୋଇଅଛି, ସେଗୁଡ଼ିକୁ ଦେଖିଲେ ନିଶ୍ଚୟ ଏପରି ଏକାଧିକ ସ୍ୱତନ୍ତ୍ର ଶିଳ୍ପ-ସଂଘ ଉତ୍କଳରେ ଥିବାର ବୁଝାଯାଇପାରେ।

ଖ୍ରୀଷ୍ଟୀୟ ଯୁଗରେ ଯେପରି ଚାରୋଟି ଶିଳ୍ପସଙ୍ଘ ଥିଲା, ଠିକ୍ ସେହିପରି ଖ୍ରୀଷ୍ଟ-ଜନ୍ମର ବହୁ ଶତବର୍ଷ ପୂର୍ବରୁ ଏ ଦେଶରେ ଆହୁରି ଏକାଧିକ ଶିଳ୍ପସଂଘ ଥିବାର ପ୍ରମାଣ ମିଳେ। ତନ୍ମଧ୍ୟରୁ ନିମ୍ନଗୁଡ଼ିକ ପ୍ରଧାନ ଅଟେ—

୧। ପ୍ରାଗ୍‌ବୈଦିକ ଯୁଗର ଶିଳ୍ପସଙ୍ଘ—ମୟୂରଭଞ୍ଜର ବୈଦ୍ୟପୁର ଓ ଖିଚଙ୍ଗ ପ୍ରଭୃତି ଅଞ୍ଚଳରୁ ପ୍ରସ୍ତର ଓ ତାମ୍ରଯୁଗର ଯେଉଁ ସବୁ ପ୍ରାଚୀନ କୀର୍ତ୍ତି ଆବିଷ୍କୃତ

ହୋଇଅଛି, ସେଗୁଡିକ କୌଣସି ପ୍ରାଗ୍‌ବୈଦିକ ବା ପ୍ରଦେଶବାସିକ ଶିଳ୍ପସଂଘଦ୍ୱାରା ନିର୍ମିତ ହୋଇଥିଲା । ସେ ଯୁଗର ବିସ୍ତୃତ ଇତିହାସ ସଂଗ୍ରହ ଫଳେ ଏହି ଶିଳ୍ପସଂଘ ସମ୍ବନ୍ଧରେ ବିଶେଷ ବିବରଣୀ ପ୍ରକାଶିତ ହେବ ।

୨ । ଜୈନ ଶିଳ୍ପସଂଘ—ପୁରୀ ଜିଲ୍ଲାର ଉଦୟଗିରି ଓ ଖଣ୍ଡଗିରି ପାହାଡ଼ରେ ଥିବା ଗୁମ୍ଫାଗୁଡିକ ଉତ୍କଳର ଅନ୍ୟ ଶିଳ୍ପ ସ୍ଥାପତ୍ୟଠାରୁ ସମ୍ପୂର୍ଣ୍ଣ ପୃଥକ୍ ଦେଖାଯାଏ । କେବଳ ଉତ୍କଳ ନୁହେଁ, ଭାରତର ଅନ୍ୟ କୌଣସି ପର୍ବତଦେହରେ ଥିବା ଗୁମ୍ଫାଗୁଡିକ ଏପରି ସୁଷ୍ଠୁ ଭାବେ ହୋଇ ଦେଖାଯାଏ ନାହିଁ । ଏହି ସବୁ ଗୁମ୍ଫା ଯେଉଁ ଶିଳ୍ପୀମାନେ ନିର୍ମାଣ କରିଥିଲେ, ସେମାନଙ୍କର ଗୋଟିଏ ସ୍ୱତନ୍ତ୍ର ଶିଳ୍ପସଂଘ ଥିଲା ବୋଲି କହିବାରେ ଅତ୍ୟୁକ୍ତି ହେବ ନାହିଁ ।

୩ । ବୌଦ୍ଧ ଶିଳ୍ପସଂଘ—ଆସିଆ ପାହାଡ଼ରେ ଥିବା ବୌଦ୍ଧକୀର୍ତ୍ତିଗୁଡିକ ମହାଯାନ ଶିଳ୍ପସଂଘଦ୍ୱାରା ନିର୍ମିତ ହୋଇଥିଲା । କିନ୍ତୁ ଖ୍ରୀଷ୍ଟପୂର୍ବ ଯୁଗରେ ଯେଉଁ ସବୁ ବୌଦ୍ଧ କୀର୍ତ୍ତିଗୁଡିକ ଉତ୍କଳରେ ସ୍ଥାପିତ ହୋଇଥିଲା, ଯଥା ଧଉଳୀ, ଅଶ୍ୱତ୍ଥାମା ପାହାଡ଼ର ପ୍ରସ୍ତର ହାତୀ ଓ ଅଶୋକ ଶିଳାଲିପି, ଯଉଗଡ଼ର ଅଶୋକ ଶିଳାଲିପି, ନସ୍କର ପ୍ରସ୍ତର ଲିପି ଏବଂ କଟୁଣେଇ ପାହାଡ଼ ଓ ବିଶ୍ୱନାଥ ମୁଣ୍ଡିଆରେ ଥିବା ଗୁମ୍ଫାଗୁଡିକ ଯେଉଁ ବୌଦ୍ଧ ଶିଳ୍ପୀମାନେ ନିର୍ମାଣ କରିଥିଲେ, ସେମାନଙ୍କର ନିଶ୍ଚୟ ଗୋଟିଏ ସ୍ୱତନ୍ତ୍ର ଶିଳ୍ପସଂଘ ଥିଲା । ଏହି ସଂଘ ସମ୍ବନ୍ଧରେ ମଧ୍ୟ ବିଶେଷ ବିବରଣୀ ସଂଗ୍ରହ କରିବାକୁ ହେବ ।

ପ୍ରତ୍ୟେକ ଶିଳ୍ପସଂଘର ସ୍ୱାତନ୍ତ୍ର୍ୟ—ଉପରେ ବର୍ଣ୍ଣିତ ପ୍ରତ୍ୟେକ ଶିଳ୍ପସଂଘ ନିଜ ନିଜର ସମ୍ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ରକ୍ଷାକରି ନିଜର ରୁଚି, ଧର୍ମ ଓ ଦେଶକାଳ ବିବେଚନାରେ ଏ ଦେଶର ଶିଳ୍ପ ସ୍ଥାପତ୍ୟଗୁଡିକୁ ନିର୍ମାଣ କରିଥିଲେ । ଯାଜପୁର ଶିଳ୍ପସଂଘ ଯେଉଁ ସବୁ ସପ୍ତମାତୃକା ମୂର୍ତ୍ତି ଗଢ଼ିଥିଲେ, ଠିକ୍ ସେହିପରି ମୂର୍ତ୍ତି ପୁରୀ ମାର୍କଣ୍ଡପୁଷ୍କରିଣୀ କୂଳରେ ଥିବା ଗୋଟିଏ ମନ୍ଦିରରେ ଦେଖାଯାଏ । ଏ ଦୁଇ ଶ୍ରେଣୀର ମୂର୍ତ୍ତିଗୁଡିକ ମଧ୍ୟରେ ଅଳ୍ପ କେତେକ ପାର୍ଥକ୍ୟ ଥିଲେହେଁ ଯାଜପୁର ଓ ପୁରୀ ମାତୃକା ମୂର୍ତ୍ତିଗୁଡିକ ଏକା ଶିଳ୍ପସଂଘଦ୍ୱାରା ନିର୍ମିତ ହୋଇଥିଲା କିମ୍ବା ପୁରୀ ମୂର୍ତ୍ତିଗୁଡିକ ଯାଜପୁର ମୂର୍ତ୍ତିର ପରବର୍ତ୍ତୀ ସଂସ୍କରଣ ଅଟେ । ଶିରଙ୍ଗ ନିକଟବର୍ତ୍ତୀ ବେଣୁସାଗର କୂଳର ମାତୃକା ମୂର୍ତ୍ତି ମଧ୍ୟ ଯାଜପୁରର ପରବର୍ତ୍ତୀ ସଂସ୍କରଣ ଥିବାର ଅନୁମିତ ହୁଏ ।

କଟକ ଆସିଆ ପାହାଡ଼ର ବୌଦ୍ଧ ମୂର୍ତ୍ତିଗୁଡ଼ିକ ଗୁପ୍ତଯୁଗର ମୂର୍ତ୍ତି ଅପେକ୍ଷା ଗଠନ ଓ ଠାଣି ପ୍ରଭୃତିରେ ଯଥେଷ୍ଟ ଉନ୍ନତି କରିଥିବାର ଦେଖାଯାଏ । ଏଗୁଡ଼ିକ ଦକ୍ଷିଣ ଭାରତୀୟ ସ୍କଷ୍ଟ ବୂଠେ ଓ ପଲ୍ଲବ ବୌଦ୍ଧ ମୂର୍ତ୍ତିଠାରୁ ଆହୁରି ସୂକ୍ଷ୍ମ ଓ ସୁନ୍ଦର ଅଟେ ।

ମୟୂରଭଞ୍ଜ ଶିଳ୍ପସଂଘଦ୍ୱାରା ଅତି ସୁନ୍ଦର ଓ ସୂକ୍ଷ୍ମ ଶିବମୂର୍ତ୍ତି ନିର୍ମିତ ହୋଇଥିଲା । ଭାରତର ଅନ୍ୟ ସ୍ଥାନରେ ପ୍ରାଚୀନ ଯୁଗର ମାନବାକୃତି ଶିବମୂର୍ତ୍ତି କ୍ୱଚିତ୍ ଦେଖାଯାଏ । ସିନ୍ଧୁ ଉପତ୍ୟକାରୁ ଆବିଷ୍କୃତ ପ୍ରାଚୀନ କୀର୍ତ୍ତି ମଧ୍ୟରେ ଶିବଲିଙ୍ଗ ଓ ଶିବଙ୍କ ପ୍ରସ୍ତରମୂର୍ତ୍ତି ଦେଖାଯାଏ । ଏ ଶ୍ରେଣୀର ପ୍ରସ୍ତରମୂର୍ତ୍ତି ମୟୂରଭଞ୍ଜରୁ ଆବିଷ୍କୃତ ହୋଇଅଛି । ପ୍ରାଚୀନ ଖିଚିଙ୍ଗର ଶିଳ୍ପ ସ୍ଥାପତ୍ୟଗୁଡ଼ିକୁ ଦେଖିଲେ ଏଠାର ଶିଳ୍ପସଂଘ କେବଳ ଶୈବ ଧର୍ମର ପ୍ରଧାନ ପ୍ରଚାରକ ଥିଲେ ବୋଲି କୁହାଯାଇପାରେ ।

ଭୁବନେଶ୍ୱର, ପୁରୀ ଓ କୋଣାର୍କ ପ୍ରଭୃତି ସ୍ଥାନରେ ଯେଉଁ ଦେବମନ୍ଦିରମାନ ନିର୍ମିତ ହୋଇଅଛି, ସେଗୁଡ଼ିକ ଦକ୍ଷିଣ ଓଡ଼ିଶା ଶିଳ୍ପସଂଘ ବା କଳିଙ୍ଗ ଶିଳ୍ପସଂଘଦ୍ୱାରା ନିର୍ମିତ ହୋଇଥିଲା । ଏ ଶ୍ରେଣୀର ମନ୍ଦିର ଉତ୍ତରରେ ତମଲୁକ୍‌ଠାରୁ ଦକ୍ଷିଣରେ ସୀମାଚଳ ପର୍ଯ୍ୟନ୍ତ ଥିବା ପ୍ରାଚୀନ ଉତ୍କଳର ବିଭିନ୍ନ ପୁରପଲ୍ଲୀରେ ଦେଖାଯାଏ । କଳିଙ୍ଗ ଶିଳ୍ପସଂଘ ପରେ ଉତ୍କଳରେ ଯେଉଁ ସବୁ ନୂତନ ଧରଣର ଦେବମନ୍ଦିର ଓ ପ୍ରତିମା ପ୍ରଭୃତି ନିର୍ମିତ ହୋଇଛି, ସେଗୁଡ଼ିକରେ ବଙ୍ଗଦେଶୀୟ, ଉତ୍ତର ଭାରତୀୟ ଏବଂ ଦକ୍ଷିଣ ଭାରତୀୟ ଶିଳ୍ପସଂଘର କାର୍ଯ୍ୟଗୁଡ଼ିକୁ ଅନୁକରଣ କରାଯାଇଛି । ଆଜିକାଲି ଉତ୍କଳର କୌଣସି ଜାତୀୟ ଶିଳ୍ପସଂଘ ଥିବାର ଜଣାଯାଏ ନାହିଁ । ଯାହା କିଛି ନୂତନ ଶିଳ୍ପ କାର୍ଯ୍ୟ ହୁଏ, ସେ ସବୁ ବୈଦେଶିକ ଅନୁକରଣ ମାତ୍ର ।



## ଉତ୍କଳୀୟ ଶିଳ୍ପର ପ୍ରକାରଭେଦ

ଉତ୍କଳର ବିଭିନ୍ନ ସ୍ଥାନରେ ଥିବା ଶିଳ୍ପବସ୍ତୁଗୁଡ଼ିକୁ ନିମ୍ନ କେତେକ ଶ୍ରେଣୀରେ ବିଭକ୍ତ କରାଯାଇପାରେ—

୧ । ଧର୍ମ ସମ୍ବନ୍ଧୀୟ ଶିଳ୍ପ—ଦେବମନ୍ଦିର ଓ ଗୁମ୍ଫା ପ୍ରଭୃତି ।

୨ । ଗୃହ ସମ୍ବନ୍ଧୀୟ—ହାତୀ ଘର ଓ ହାତୀ ଚଉଁରୀ ।

୩। ସ୍ୱକୀୟ—ସ୍ୱକପ୍ରାସାଦ, ନବର ଓ ସଭାମଣ୍ଡପ।

୪। ସୈନ୍ୟ ସମ୍ବନ୍ଧୀୟ—ଗଡ଼, ଦୁର୍ଗ ଓ କାନ୍ଥ ପ୍ରଭୃତି।

୫। ନାଗରିକ—ସାଧାରଣ ଲୋକମାନଙ୍କର ବାସଗୃହ।

୬। ନୌବାଣିଜ୍ୟ ସମ୍ବନ୍ଧୀୟ—ଦୀପ ଅଡ୍ଡା, ନଉଘର, ବନ୍ଦର ଓ ବିଭିନ୍ନ ଶ୍ରେଣୀର ବୋଇତ।

୭। ଦେଶହିତକର—ସଡ଼କ, ପୋଲ, ନଦୀବନ୍ଧ, ବାନ୍ଧ, ପୁଷ୍କରିଣୀ ଓ ତୀର୍ଥଘାଟ।

୮। ଯାତ୍ରୀନିବାସ—ଛତ୍ର ଓ ଧର୍ମଶାଳା।

୯। ଚିତ୍ରାଙ୍କନ—ସୂତକାର୍ଯ୍ୟ, ଚିତ୍ରପଟ୍ଟ, ଚଟାକୁଠା ଓ ଝୋଟି।

୧୦। ଧାତୁନିର୍ମିତ ଅଳଙ୍କାର—କଂସା, ପିତ୍ତଳ, ଲୁହା, ସୁନା ଓ ରୁପା।

୧୧। ବିଭିନ୍ନ ଉପକରଣ—କାଠ, ପ୍ରସ୍ତର ଓ ଧାତୁ।

୧୨। ମନୁଷ୍ୟ, ଦେବଦେବୀ ଓ ଜୀବଜନ୍ତୁଙ୍କ ପ୍ରତିମୂର୍ତ୍ତି—କାଠ, ପ୍ରସ୍ତର, ମାଟି ଓ ବିଭିନ୍ନ ଧାତୁ।

ଉପର୍ଯ୍ୟୁକ୍ତ ସବୁ ଶ୍ରେଣୀର ଶିଳ୍ପ ସମ୍ବନ୍ଧରେ ସଂକ୍ଷେପରେ କେତେକ ଆଲୋଚନା କରୁଅଛି।

୧ମ ଧର୍ମ ସମ୍ବନ୍ଧୀୟ ଶିଳ୍ପ—ଅତି ପ୍ରାଚୀନ କାଳରୁ ଏ ଦେଶବାସୀ ଧର୍ମ ପ୍ରତି ଅଟଳ ବିଶ୍ୱାସ ରଖିଥିଲେ। ସେମାନଙ୍କର ଏହି ଧର୍ମଭାବ ପ୍ରକାଶ୍ୟ ରୂପେ ଦେଖାଇବା ନିମନ୍ତେ ପ୍ରତ୍ୟେକ ରଜା ଓ ପ୍ରତ୍ୟେକ ଧନୀ ନିଜର ଇଷ୍ଟଦେବଙ୍କ ପ୍ରତି-ମୂର୍ତ୍ତି ଗଢ଼ି ତାହାଙ୍କ ପାଇଁ ଗୋଟିଏ ମନ୍ଦିର ନିର୍ମାଣ କରି ସେଠାରେ ଦୈନିକ ଭୋଗର ବ୍ୟବସ୍ଥା କରୁଥିଲେ। ଏହି କାରଣରୁ ଆଜି ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରେ ଅସଂଖ୍ୟ ପ୍ରାଚୀନ ଦେବମନ୍ଦିର, ଶିବାଳୟ ଓ ଠାକୁରାଣୀ ଘର ପ୍ରଭୃତି ଆମ୍ଭେମାନେ ଦେଖି-ବାକୁ ପାଉଁ। ଏହି ସବୁ ଦେବମନ୍ଦିର ଯୋଗୁଁ ଉତ୍କଳକୁ "ଭାରତର ତୀର୍ଥ ମୁକୁଟମଣି" ବୋଲି କୁହାଯାଏ। ଭାରତରେ ଯେତେ ନୂତନ ଧର୍ମର ଆବିର୍ଭାବ ହୋଇଅଛି, ସେ ସମସ୍ତ ଉତ୍କଳରେ ନିଜର ଅସ୍ତିତ୍ୱ ରକ୍ଷା କରିପାରିଛି। କୌଣସି ଧର୍ମର ସତ୍ତା ଉତ୍କଳରୁ ଏକାବେଳକେ ଲୋପ ପାଇ ନାହିଁ। ଏହି ବିଭିନ୍ନ ଧର୍ମାବଲମ୍ବୀ ଉତ୍କଳରେ ଯେଉଁ ସବୁ ପ୍ରାଚୀନ ମନ୍ଦିର ଓ ପର୍ବତ ଦେହରେ ଗୁମ୍ଫାମାନ ନିର୍ମାଣ କରିଥିଲେ, ସେ ସବୁ ଦେଖିଲେ ସେ କାଳର ଉତ୍କଳୀୟ ଶିଳ୍ପକାର୍ଯ୍ୟମାନ ସ୍ପଷ୍ଟ ଜାଣିହୁଏ।

୨ୟ ସ୍ମୃତି ସମ୍ବନ୍ଧୀୟ ଶିଳ୍ପ—ଆଜକାଲି ଭାରତର ଭିନ୍ନ ସହରରେ ଯେପରି ସ୍ମୃତି ମନ୍ଦିର, ସ୍ମୃତି ସ୍ତମ୍ଭ, ବା ରାଜା, ମହାରାଜା ଓ ଶାସକମାନଙ୍କର ପ୍ରତିମୂର୍ତ୍ତିମାନ ରଖାଯାଏ, ପ୍ରାଚୀନ ଉତ୍କଳରେ ସେପରି କୌଣସି ଶିଳ୍ପକାର୍ଯ୍ୟ ରଖାଯାଇ ଥିବାର ଆମ୍ଭେମାନେ ଦେଖିପାରୁ ନାହୁଁ ; କିନ୍ତୁ ସ୍ଥାନେ ସ୍ଥାନେ ଯେଉଁ 'ସତୀ ପ୍ରସ୍ତର' ଓ 'ସତୀ ଚଉଁରା' ଦେଖଯାଏ, ଏଗୁଡ଼ିକରେ ପ୍ରାଚୀନ ଉତ୍କଳୀୟମାନଙ୍କର ସ୍ମୃତି ସମ୍ବନ୍ଧୀୟ ଶିଳ୍ପ ଦେଖାଯାଏ । ଖାରବେଳଙ୍କ "ହାତୀଗୁମ୍ଫା ଲିପି"ରେ କାଳିଙ୍ଗଜିନଙ୍କର ଯେଉଁ ପ୍ରତିମୂର୍ତ୍ତି ଥିବାର ବର୍ଣ୍ଣିତ ଅଛି, ତାହା ମଧ୍ୟ ଏହି ଶ୍ରେଣୀର ଥିଲା; କିନ୍ତୁ ଆଜକାଲି ସେହି ପ୍ରତିମୂର୍ତ୍ତିର କୌଣସି ଅସ୍ତିତ୍ୱ ନାହିଁ ।

୩ୟ ରାଜକୀୟ ଶିଳ୍ପ—ପ୍ରାଚୀନ ଯୁଗରେ ଉତ୍କଳୀୟ ରାଜାମାନେ ଯେଉଁ ରାଜପ୍ରାସାଦ, ରାଜ ନଅର, ସଭାଗୃହ ଓ ସଭାମଣ୍ଡପ ପ୍ରଭୃତି ନିର୍ମାଣ କରୁଥିଲେ, ସେ ଗୁଡ଼ିକରେ ଉତ୍କଳୀୟ ଶିଳ୍ପର ଯଥେଷ୍ଟ ସାମଗ୍ରୀ ଥିଲା । 'ହାତୀଗୁମ୍ଫା ଲିପି'ରେ ବର୍ଣ୍ଣିତ ଖାରବେଳଙ୍କ 'ମହାବିଜୟ ପ୍ରାସାଦ' ଅଠତିରିଶ ଲକ୍ଷ ମୁଦ୍ରା ବ୍ୟୟରେ ନିର୍ମିତ ହୋଇ-ଥିବାର ଜଣାଯାଏ । ସେହି ଯୁଗର ଗୋଟିଏ 'ସଭାମଣ୍ଡପ' ପୁରୀ ଜିଲ୍ଲାର ପ୍ରାଚୀ ନଦୀ ତୀରରେ ଆଜ ସୁଦ୍ଧା ଦେଖିବାକୁ ପାଉଁ । ଏହି ମଣ୍ଡପ ପ୍ରାଚୀନ ଇଟା ଓ ପ୍ରକାଣ୍ଡ ପ୍ରସ୍ତରରେ ନିର୍ମିତ ହୋଇଥିବ । ସହସ୍ରାଧିକ ବର୍ଷର ଖରା ଓ ବର୍ଷା ଖାଇ ସୁଦ୍ଧା ଏହା ଯେପରି ପଡ଼ି ରହିଛି, ତାହା ଦେଖିଲେ ପ୍ରାଚୀନ ଉତ୍କଳୀୟ ଶିଳ୍ପପ୍ରଣାଳୀ କିପରି ସୁଦୃଢ଼ ଭିତ୍ତି ଲାଭ କରିଥିଲା, ତାହା ସହଜେ ସ୍ଥିର କରିହେବ ।

୪ର୍ଥ ସୈନ୍ୟସମ୍ବନ୍ଧୀୟ ଶିଳ୍ପ—ଗଡ଼, ଦୁର୍ଗ ଓ କିଲ୍ଲା ପ୍ରଭୃତି ସୈନ୍ୟନିବାସ ପାଇଁ ନିର୍ମିତ ହୋଇଥିଲା । ଏ ଶ୍ରେଣୀର ଶିଳ୍ପ ଉତ୍କଳର ପ୍ରତ୍ୟେକ ଜିଲ୍ଲା ଓ ପ୍ରତ୍ୟେକ ପ୍ରଗନାରେ ଦେଖାଯାଏ । ଅଧିକାଂଶ ପ୍ରାଚୀନ ଗଡ଼ ଓ ଦୁର୍ଗ ପ୍ରଭୃତି ମାଟି, ଇଟା ଓ ପ୍ରସ୍ତରରେ ନିର୍ମିତ ହେଉଥିଲା । ଆଜ ସୁଦ୍ଧା ପ୍ରାଚୀନ ଗଡ଼ ଓ ଦୁର୍ଗରେ ଏହି ଉପାଦାନର ଅବଶିଷ୍ଟାଂଶ ଦେଖାଯାଏ । କଟକର ବାରବାଟୀ ଦୁର୍ଗରେ 'ନବତଳ ପ୍ରାସାଦ' ନିର୍ମିତ ହୋଇଥିବାର ବର୍ଣ୍ଣିତ ଅଛି । ଏଠାରେ ସ୍ୱାଧୀନ ଉତ୍କଳର ରାଜା ଓ ସୈନ୍ୟମାନେ ମଧ୍ୟ ରହୁଥିଲେ । ତାହାର ଭଗ୍ନାବଶେଷ ଅଦ୍ୟାପି ଦେଖାଯାଏ । (୧ ନମ୍ବର ଚିତ୍ର ଦେଖ) ନବତଳ ପ୍ରାସାଦର ବିସ୍ତୃତ ବର୍ଣ୍ଣନା ପାଠ କଲେ, ସେ କାଳରେ ସୈନ୍ୟନିବାସ ପାଇଁ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ କିପରି ସୁଦୃଢ଼, ସୁରମ୍ୟ ଓ ସୁରକ୍ଷିତ ଦୁର୍ଗମାନ ନିର୍ମାଣ

କରୁଥିଲେ, ତାହା ଜାଣି ହେବ ✻। ପ୍ରାଚୀନ ଦୁର୍ଗର ଚତୁର୍ଦ୍ଦିଗ ଯେଉଁ ଗଡଉଣ୍ଡାର ବା 'ପରିଖା' ଦ୍ୱାରା ବେଷ୍ଟିତ ଥିଲା, ତାହାର ସ୍ପଷ୍ଟ ନିଦର୍ଶନ ବାରବାଟୀ ଦୁର୍ଗ, ଚୌଦ୍ୱାର ଓ ଭୁବନେଶ୍ୱର ଶିଶୁପାଳ ଗଡ଼ରେ ଦେଖିବାକୁ ମିଳେ।

୫ମ ନଗର ସମ୍ବନ୍ଧୀୟ ଶିଳ୍ପ—ଦେଶର ସାଧାରଣ ଲୋକମାନେ ଯେଉଁ ବାସଗୃହ ନିର୍ମାଣ କରି ତହିଁରେ ରହୁଥିଲେ, ତହିଁରେ ନାଗରିକ ଶିଳ୍ପ ଦେଖାଯାଉଥିଲା। ଆଜିକାଲି ଆମ ଦେଶବାସୀ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ଲାଭ କରି କେବଳ ସେହି ଛାଞ୍ଚରେ ନିଜର ଘରଦ୍ୱାର ତିଆରି କରିବାପାଇଁ ଇଚ୍ଛା କରନ୍ତି; କିନ୍ତୁ ଯେଉଁ କେତେକ ସ୍ଥାନରେ ବିଶେଷତଃ ନିଭୃତ ପଲ୍ଲୀରେ ଏହି ସଭ୍ୟତା ପ୍ରବେଶ କରି ନାହିଁ, ସେଠାରେ ଅଧିବାସୀମାନେ ଯେଉଁ ଆଠଘର, ମେରଦା ଘର ଓ ଗମ୍ଭୀରା ଘର ପ୍ରସ୍ତୁତ କରିଛନ୍ତି, ତହିଁରେ ପ୍ରାଚୀନ ଉତ୍କଳୀୟ ଶିଳ୍ପର ଯଥେଷ୍ଟ ପ୍ରମାଣ ଦେଖାଯାଏ। ଏ ଶ୍ରେଣୀର ଘରର ଚୌକାଠ (ଦ୍ୱାରବନ୍ଧ), କବାଟ, ପାଣିପଟା, ଶେଣୀ, ଖମ୍ବ, ଭାଡି, ଝରକା ଓ ଅନ୍ୟ ପ୍ରଭୃତିରେ ଶିଳ୍ପୀ ନିପୁଣ ଉତ୍କଳୀୟ ଶିଳ୍ପ ଫୁଟାଇଥିବାର ଦେଖାଯାଏ। ଉତ୍କଳର ଅଧିକାଂଶ ପଲ୍ଲୀରେ ଏ ଶ୍ରେଣୀର ଶିଳ୍ପ ଦେଖିବାକୁ ପାଉଁ।

୬ଷ୍ଠ ନୌବାଣିଜ୍ୟ ସମ୍ବନ୍ଧୀୟ ଶିଳ୍ପ—'ବୋଇତ ବାଣିଜ୍ୟ' କଥା ଉତ୍କଳରେ ଚିରଦିନରୁ ପ୍ରସିଦ୍ଧି ଲାଭ କରିଛି। ସାଧବ ଘର ପୁଅମାନେ ସାତ ସମୁଦ୍ର ଓ ତେର ନଦୀ ପାରି ହୋଇ ବୋଇତ ବାଣିଜ୍ୟ କରୁଥିବା କଥା ପିଲାଦିନରୁ ଶୁଣି ଆସିଛୁ। ଏହି ବୋଇତ ବାଣିଜ୍ୟ ପାଇଁ ଯେଉଁ ବୋଇତ ବା ନାହା କାଠ ଓ ଲୁହା ପ୍ରଭୃତିରେ ତିଆରି ହେଉଥିଲା, ସେ ସବୁ ଉତ୍କଳୀୟ ଶିଳ୍ପୀମାନେ କରୁଥିଲେ। ବାଣିଜ୍ୟ ସଙ୍ଗେ ସଙ୍ଗେ ଜିନିଷ ବୋଝେଇ ଓ ଯୁଦ୍ଧ ସମୟରେ ଦରକାରୀ ବୋଇତ ଓ ଜାହାଜ ମଧ୍ୟ ଉତ୍କଳରେ ତିଆରି ହେଉଥିଲା। ଗୋଟିଏ ଅପ୍ରକାଶିତ ତାଳପତ୍ର ପୋଥି 'ବ୍ରହ୍ମାଣ୍ଡ ଭୂଷଣ' ଉତ୍କଳଖଣ୍ଡରେ ପ୍ରାଚୀନ ଉତ୍କଳୀୟମାନେ କିପରି ଯୁଦ୍ଧ-ଜାହାଜମାନ ନିର୍ମାଣ କରି ବ୍ୟବହାର କରୁଥିଲେ, ସେ କଥା ବର୍ଣ୍ଣିତ ଅଛି। ଆଜିକାଲି ଯେପରି ବୁଡ଼ାଜାହାଜ ଓ 'ଯୁଦ୍ଧ-ଜାହାଜ' ଦେଖାଯାଏ, ସେ ଶ୍ରେଣୀର ଜାହାଜ ମଧ୍ୟ ପ୍ରାଚୀନ ଉତ୍କଳରେ ତିଆରି ହେଉଥିବାର ବର୍ଣ୍ଣିତ ଅଛି। ଉତ୍କଳର ପ୍ରତ୍ୟେକ ଜିଲ୍ଲାରେ ଥିବା ନଦୀଗୁଡ଼ିକରେ

✻ "ବାରବାଟୀ ଦୁର୍ଗ" ସମ୍ବନ୍ଧରେ ବିସ୍ତୃତ ବର୍ଣ୍ଣନା ଓ ଏହାର ପ୍ରାଚୀନ ଇତିହାସ ପାଇଁ ଶ୍ରୀ ନୃସିଂହ ମିଶ୍ର ଏମ୍.ଏ. ପ୍ରଣୀତ ବାରବାଟୀ ଦୁର୍ଗ ଦେଖନ୍ତୁ।

ପ୍ରାଚୀନ ଉତ୍କଳୀୟମାନେ ବୋଇତ ଚଳାଉଥିଲେ । ଏଥିପାଇଁ ସ୍ଥାନେ ସ୍ଥାନେ ବୋଇତ ଘାଟ, ବୋଇତ ଅଡ୍ଡା ଓ ବନ୍ଦରମାନ ଥିଲା । ଚିଲିକା ହ୍ରଦର କେତେକ ସ୍ଥାନ ଏଥିପାଇଁ ପ୍ରଶସ୍ତ ଥିଲା । ପ୍ରାଚୀନ ଉତ୍କଳର ଚିଲିକା, ଚାନ୍ଦ, ମାଛଗାଁ, ପିପ୍‌ପିଲି ଓ ତମଲୁକ ବନ୍ଦର ଅତି ପ୍ରସିଦ୍ଧ ଥିଲା । ଏହିସବୁ ବନ୍ଦର କେବଳ ଉତ୍କଳୀୟ କାରିଗରମାନଙ୍କଦ୍ୱାରା ତିଆରି ହୋଇଥିଲା ଓ ସେଗୁଡିକରେ ଉତ୍କଳୀୟ ଶିଳ୍ପଚାତୁରୀ ଯଥେଷ୍ଟ ଥିଲା । ଚିଲିକାର କେତୋଟି ପର୍ବତକୁ 'ଦୀପ ଅଡ୍ଡା' କୁହାଯାଏ । ଏଠାରେ ଅତି ବଡ଼ ଦୀପ ରଖାଯାଇ ନାବିକମାନଙ୍କ ପାଇଁ ଆଧୁନିକ 'ବତୀଘର'ର ସୁବିଧା କରାଯାଇଥିଲା । ନଦୀକୂଳରେ ବୋଇତ ରହିବା ପାଇଁ ଯେଉଁ କୃତ୍ରିମ ବନ୍ଦର ତିଆରି ହୋଇଥିଲା, ସେ ଶ୍ରେଣୀର ବନ୍ଦରରୁ କେତୋଟି ଆଜ ସୁଦ୍ଧା 'ପ୍ରାଚୀନଦୀ' ତୀରରେ ଦେଖାଯାଏ ।

୭ମ ଦେଶହିତକର ଶିଳ୍ପ କାର୍ଯ୍ୟ—ପ୍ରାଚୀନ କାଳର ସ୍ୱାଧୀନ ରାଜାମାନେ ଲୋକମାନଙ୍କର ଯା ଆସ କରିବା ସୁବିଧା ପାଇଁ ଅନେକ ରାଜପଥ, ସାଧାରଣ ସଡ଼କ, ପୋଲ, ନଦୀଘାଟ, ବାନ୍ଧ, ପୁଷ୍କରିଣୀ ଓ ତୀର୍ଥଘାଟ ପ୍ରଭୃତି ନିର୍ମାଣ କରାଇଥିଲେ ଏ ଶ୍ରେଣୀର ଦେଶହିତକର କାର୍ଯ୍ୟଗୁଡିକ କେବଳ ଉତ୍କଳୀୟ ଶିଳ୍ପୀମାନେ କରୁଥିଲେ । ଅଜି ସେହି ଶ୍ରେଣୀର ସ୍ୱାଧୀନ ରାଜାମାନେ ନାହାନ୍ତି ସତ୍ୟ; କିନ୍ତୁ ଶତ ଶତ ବର୍ଷ ପୂର୍ବେ ତିଆରି ହୋଇଥିବା ସେମାନଙ୍କର ଏହି ଅକ୍ଷୟ ଦେଶହିତକର କୀର୍ତ୍ତିଗୁଡ଼ିକ ଉତ୍କଳର ଅଧିକାଂଶ ପୁରପଲ୍ଲୀରେ ଦେଖିବାକୁ ମିଳେ । କଳିଙ୍ଗ ରାଜଚକ୍ରବର୍ତ୍ତୀ ଖାରବେଳଙ୍କ ସମୟରେ ଶତସହସ୍ର ମୁଦ୍ରା ବ୍ୟୟରେ ଯେଉଁ ପୁଷ୍କରିଣୀ, ବାନ୍ଧ ଓ ପୋଲ ପ୍ରଭୃତି ନିର୍ମିତ ହୋଇଥିଲା, ସେଗୁଡିକର ଭଗ୍ନାବଶେଷ ଏ ପର୍ଯ୍ୟନ୍ତ ପ୍ରାଚୀନଦୀ ତୀରରେ ଦେଖାଯାଏ । ପୁରୀ, ଭୁବନେଶ୍ୱର ଓ ଯାଜପୁରର ପ୍ରସିଦ୍ଧ ପୁଷ୍କରିଣୀ, ଅଠର ନଳା ପୋଲ, ପ୍ରାଚୀ ଓ ବୈତରଣୀ ତୀରବର୍ତ୍ତୀ ତୀର୍ଥଘାଟଗୁଡିକରେ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନଙ୍କର କାରୀଗରୀ ବେଶ୍ ଦେଖାଯାଏ । (୨ୟ ଓ ତୃତୀୟ ଚିତ୍ର )

୮ମ ପାନ୍ଥନିବାସ—ଆଜିକାଲି ଦୂର୍ତ୍ତିଭାଗ ଓ ଜିଲ୍ଲାବୋର୍ଡ଼ ସେମାନଙ୍କର କର୍ମଚାରୀମାନଙ୍କ ସୁବିଧାପାଇଁ ଦେଶର ସ୍ଥାନେ ସ୍ଥାନେ ଯେପରି ଡାକବଙ୍ଗଳାମାନ କରନ୍ତି ଏବଂ ଧନୀବ୍ୟକ୍ତିମାନେ ତୀର୍ଥସ୍ଥାନଗୁଡିକରେ ଯେପରି ଧର୍ମଶାଳା ନିର୍ମାଣ କରିଥାନ୍ତି, ସେହିପରି ଅନେକ ପାନ୍ଥନିବାସ ପ୍ରାଚୀନ କାଳରେ ଭିନ୍ନ ଭିନ୍ନ ସ୍ଥାନରେ ଥିଲା । ଦେଶରେ ଯା ଆସ ପାଇଁ ରେଲ ଓ ସଡ଼କର ଯେତେ ସୁବିଧା ହେଲା, ଏ ଶ୍ରେଣୀର ପ୍ରାଚୀନ

ପାନ୍ଥନିବାସଗୁଡ଼ିକ ପୂର୍ବ ପରି ଲୋକମାନଙ୍କ ସୁବିଧାରେ ନ ଆସିବାରୁ ଭାଙ୍ଗିଯାଉଛି । ତଥାପି ଅନେକ ସ୍ଥାନରେ ସେଗୁଡ଼ିକର ଭଗ୍ନାବଶେଷ ଦେଖାଯାଏ । ପୂର୍ବେ ଗଞ୍ଜାମ ଜିଲ୍ଲାରୁ ପୁରୀକି ଆସିବାପାଇଁ ଚିଲିକା ଓ ସମୁଦ୍ର ମଧ୍ୟସ୍ଥ ବାଲୁକା ସ୍ତୂପ ହିଁ ଏକମାତ୍ର ସୁବିଧାଜନକ ମାର୍ଗ ଥିଲା । ଏହି ମାର୍ଗରେ ସେ କାଳର କେତୋଟି ପାନ୍ଥନିବାସ ଦେଖା-ଯାଏ । ଏଗୁଡ଼ିକୁ ସ୍ଥାନୀୟ ଅଧିବାସୀ କୂଦା କହନ୍ତି । ସାଧାରଣ ଇଟା ଓ ପ୍ରସ୍ତରରେ କୌଣସି କାଠ, ଦ୍ୱାର ଓ କବାଟ ପ୍ରଭୃତି ନ ଥାଇ କିପରି ପାନ୍ଥନିବାସ କରିହେବ, ତହିଁର ସ୍ପଷ୍ଟ ପ୍ରମାଣ ଏହି କୂଦାଗୁଡ଼ିକରୁ ସଂଗ୍ରହ କରିଯାଇପାରେ । ଏହି କୂଦାଗୁଡ଼ିକର ଶିଳ୍ପକାମ ଦେଖିଲେ ପ୍ରାଚୀନ ଉତ୍କଳୀୟ ଶିଳ୍ପୀ ଏହି କାର୍ଯ୍ୟରେ କିପରି ଦକ୍ଷତା ଲାଭ କରିଥିଲେ, ତାହା ମଧ୍ୟ ଜାଣିହେବ ।

**୯ମ ଚିତ୍ରାଙ୍କନ ଶିଳ୍ପ**—ଶିଳ୍ପକଳାର ୬୪ କଳା ମଧ୍ୟରୁ ଚିତ୍ରଶିଳ୍ପ ଗୋଟିଏ । ବାତ୍ସ୍ୟାୟନ ଋଷି ତାହାଙ୍କ ଲିଖିତ କାମସୂତ୍ର ନାମକ ଗ୍ରନ୍ଥରେ ଚିତ୍ରଶିଳ୍ପକୁ ଚତୁର୍ଥ ସ୍ଥାନ ଦେଇଅଛନ୍ତି । ଚିତ୍ରଶିଳ୍ପ ଶିକ୍ଷା କଲେ ମନୁଷ୍ୟମାନେ ଧର୍ମ, କାମ, ଅର୍ଥ ଓ ମୋକ୍ଷ ଲାଭ କରନ୍ତି ବୋଲି ମଧ୍ୟ ସେହି ଋଷିଙ୍କର ମତ । ଯେଉଁ ଘରେ ଗୋଟିଏ ଚିତ୍ର ରଖାଯାଇ-ଅଛି, ସେହି ଘରର ସର୍ବଦା ମଙ୍ଗଳ ହୁଏ ବୋଲି ବିଷ୍ଣୁଧର୍ମୋତ୍ତର ନାମକ ଗ୍ରନ୍ଥରେ ଲେଖା ଅଛି ।

ଅତି ପ୍ରାଚୀନ କାଳରୁ ଉତ୍କଳୀୟମାନେ ଏହି ଚିତ୍ରଶିଳ୍ପ ମଧ୍ୟ ଶିକ୍ଷା କରିଥିଲେ । ଉତ୍କଳର ଘରେ ଘରେ ବୋହୂ, ଝିଅମାନେ କାନ୍ଥବାଡ଼ରେ ଯେଉଁ ଝୋଟି ଦିଅନ୍ତି, ତୁଳସୀ ଚଉଁରର ପୀଡ଼ ଉପରେ, ମାଣବସା ଗୁରୁବାର ଦିନ (ମାର୍ଗଶିର ମାସର ଗୁରୁବାର ଲକ୍ଷ୍ମୀପୂଜା ଦିନ) ଏବଂ ଶିତା ସଂକ୍ରାନ୍ତି ଦିନ କାନ୍ଥବାଡ଼ରେ ଯେଉଁ ସବୁ ଚିତା କାଟନ୍ତି, ସେ ସବୁ ଚିତ୍ରଶିଳ୍ପର ଅଙ୍ଗ ଅଟେ । ଉତ୍କଳର ଘରେ ଘରେ ବାଳକ ଓ ବାଳିକାମାନ-ଙ୍କର ବ୍ରତ ଓ ବିବାହ ଦିନ ଘରର କାନ୍ଥବାଡ଼ରେ ଯେଉଁ ଝୋଟି ଦିଆଯାଏ, ତହିଁରେ ଉତ୍କଳୀୟ ଶିଳ୍ପୀର ଶିଳ୍ପଚାତୁରୀ ସ୍ପଷ୍ଟ ଦେଖିବାକୁ ମିଳେ । କାନ୍ଥରେ ବର, କନ୍ୟା, ବରଯାତ୍ରୀ, ପୁରୋହିତ, ହୋମକୁଣ୍ଡ, ବାଦ୍ୟକାର, ନର୍ତ୍ତକୀମାନେ, ପୂର୍ଣ୍ଣକୁମ୍ଭ, ସବାରି ଓ ଝାମଜନ ପ୍ରଭୃତିର ଚିତ୍ର ଦେଖିଥାଉଁ । ପୂର୍ଣ୍ଣକୁମ୍ଭର ଉଇଡ଼, ଆମ୍ବଡ଼ାଳ, ପୁଷ୍ପମାଳା ଓ ନଡ଼ିଆ ଫୁଲମାଳ ଏବଂ କେତେକ ସ୍ଥାନରେ ହାତୀ, ଘୋଡ଼ା, ଘୋଡ଼ାସବାର, ମଗର ମାଛ ପ୍ରଭୃତିର ଚିତ୍ର ଥାଏ । ଏସବୁ ଚିତ୍ର ଆମ ଦେଶର ନିରକ୍ଷର ସ୍ତ୍ରୀମାନେ ବେଶ୍ ସୁନ୍ଦର ଭାବରେ କରନ୍ତି । ତୁଳସୀ ଚଉଁରା ଓ ମାଣବସା ଗୁରୁବାର ଦିନ



୪—ବୁଦ୍ଧଗୟା ମନ୍ଦିର
( ନାଗର-ଉଡ଼ିଶାରୀତିର ମିଳ )



୪—ତିରୁଉଆରୁର୍-ତ୍ୟାଗରାଜ ମନ୍ଦିର
( ବେସର—ଦକ୍ଷିଣଭାରତୀୟ ଶୈଳୀ )

ଚିତୋଉ କିମ୍ବା ଶଙ୍ଖ ବର୍ଣ୍ଣର ମୃତ୍ତିକା ଓ ରଙ୍ଗ ଗୁଣ୍ଡରେ ଅନେକଗୁଡ଼ିଏ ପ୍ରାକୃତିକ ଦୃଶ୍ୟର ଚିତ୍ର ଲେଖାଯାଏ। ପ୍ରତିବର୍ଷ କାର୍ତ୍ତିକ ମାସରେ ଅମାବାସ୍ୟା ଓ ପୂର୍ଣ୍ଣିମା ଦିନ ଉତ୍କଳର ଘରେ ଘରେ ଯେଉଁ ପର୍ବ ହୁଏ, ସେହି ପର୍ବ ସମୟରେ ଉତ୍କଳୀୟ ନାରୀମାନେ ବିବିଧ ରଙ୍ଗର ଗୁଣ୍ଡରେ ଅନେକ ଚିତ୍ର ଅଙ୍କନ କରନ୍ତି। ଏଥି ମଧ୍ୟରୁ ପୂର୍ଣ୍ଣିମା ଦିନ ନଦୀ କିମ୍ବା ପୁଷ୍କରିଣୀ ଘାଟରେ ସେମାନେ ଯେଉଁ 'ବୋଇତ ଚିତ୍ର', ନାବିକମାନଙ୍କର ଏବଂ ବୋହେଇ ଜନଙ୍କର ଚିତ୍ର ଅଙ୍କନ କରନ୍ତି, ସେଗୁଡ଼ିକ ପ୍ରାଚୀନ ଉତ୍କଳୀୟମାନଙ୍କର (ସାଧବ) 'ବୋଇତ ବାଣିଜ୍ୟ' କଥାକୁ ସ୍ମରଣ କରାଇଦିଏ। ଏହି ଚିତ୍ରଗୁଡ଼ିକରୁ ଆମ ଦେଶର ସ୍ତ୍ରୀମାନେ ଅତି ପ୍ରାଚୀନ କାଳରୁ ଚିତ୍ରଶିଳ୍ପ ଶିକ୍ଷା କରିଥିବା କଥା ସ୍ୱତଃ ମନେ ହୁଏ। ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତ ବର୍ଷ ତଳେ ଉତ୍କଳୀୟମାନେ ବୋଇତ ବାଣିଜ୍ୟ କରୁଥିଲେ। କାର୍ତ୍ତିକ ପୂର୍ଣ୍ଣିମା ଦିନ ନଦୀ ଓ ପୁଷ୍କରିଣୀରେ ଯେଉଁ 'ଅକାମାବୋ' ପଟୁଆ ଡଙ୍ଗା ଭସାହୁଏ, ତାହା ସେହି ଯୁଗର ବୋଇତ ବାଣିଜ୍ୟ କଥାକୁ ସ୍ମରଣ କରାଇଦିଏ। ଆମ ଦେଶର ସ୍ତ୍ରୀମାନେ ସେହି ଯୁଗର ଚିତ୍ରଗୁଡ଼ିକୁ ଯେପରି ଅଙ୍କନ କରନ୍ତି, ତାହା ଦେଖିଲେ ଅତି ପ୍ରାଚୀନ ଯୁଗରୁ ଉତ୍କଳରେ ଚିତ୍ରାଙ୍କନ ଶିଳ୍ପ ଥିଲା ବୋଲି କୁହାଯାଇ ପାରେ।

ପ୍ରାଚୀନ ଉତ୍କଳର ପ୍ରାୟ ଅଧିକାଂଶ ମନ୍ଦିର ଦେହରେ ଯେଉଁ କାରୁକାର୍ଯ୍ୟ ଦେଖାଯାଏ, ସେଗୁଡ଼ିକ ମଧ୍ୟ ଏହି ଚିତ୍ରଶିଳ୍ପର ଅନ୍ତର୍ଭୁକ୍ତ ଅଟେ। ଉତ୍କଳରୁ ଅତି କମ୍ ଚିତ୍ରଶିଳ୍ପଶାସ୍ତ୍ର ଆବିଷ୍କୃତ ହୋଇଅଛି। କିନ୍ତୁ କୌଣସି ଶାସ୍ତ୍ର ଏପର୍ଯ୍ୟନ୍ତ ପୁସ୍ତକାକାରରେ ଛାପା ହୋଇ ନାହିଁ। ତଥାପି ଏ ଶ୍ରେଣୀର ଶିଳ୍ପ ଦେଖିଲେ ପ୍ରାଚୀନ ଶିଳ୍ପୀମାନେ ପ୍ରଥମେ ଚିତ୍ରଶିଳ୍ପକୁ ଉତ୍ତମ ରୂପେ ଅଧ୍ୟୟନ କରି ପରେ ସେହି ଶିଳ୍ପକଳା ପ୍ରସ୍ତର ଦେହରେ ଫୁଟାଇଥିବାର ଅନୁମିତ ହୁଏ।

ଆମ ଦେଶର ସ୍ତ୍ରୀମାନେ ନିଜ ନିଜ ଦେହରେ ଚିତା କୁଟାନ୍ତି। ଏହି 'ଚିତା-କୁଟା' ମଧ୍ୟ ଚିତ୍ରଶିଳ୍ପର ଏକ ଅଙ୍ଗ ଅଟେ। କେତେକ ଜଙ୍ଗଲୀ ଲତାର ରସ, କଜଳି, କାଳି ଓ ଜଳୀୟ ପଦାର୍ଥ ନେଇ ଅଠା ତିଆର ହୁଏ। ଏହି ଅଠାକୁ ଦେହର ନିର୍ଦ୍ଦିଷ୍ଟ ସ୍ଥାନରେ ଲଗାଇ ଛୋଟ ଛୁଞ୍ଚି ଧରି ସେହି ସ୍ଥାନକୁ ଫୋଡ଼ି ଦିଆଯାଏ। ସ୍ତ୍ରୀମାନଙ୍କର ରୁଚି ଅନୁସାରେ କେତେକ ପ୍ରକାରର ପଶୁ, ପକ୍ଷୀ, ଲତା, ବୃକ୍ଷ, ଦଶଅବତାର ଓ ମନୁଷ୍ୟମାନଙ୍କର ଛବି କିମ୍ବା ଅକ୍ଷର ନାମାବଳୀ ପ୍ରଭୃତି ଦେହରେ କୁଟାଯାଏ। ଅଙ୍ଗ-କାଳି ଯେଉଁ ସ୍ତ୍ରୀମାନେ ଏହି ଚିତାକୁଟା କାର୍ଯ୍ୟ କରନ୍ତି, ସେମାନେ ନିତାନ୍ତ ଅନୁନ୍ନତ

ଓ ନିରକ୍ଷର ଦେଖାଯାନ୍ତି । କିନ୍ତୁ ସେମାନେ ମନୁଷ୍ୟ ଦେହରେ ଯେଉଁ ଚିତ୍ର ଅଙ୍କନ କରନ୍ତି, ସେଗୁଡ଼ିକୁ ଦେଖିଲେ ଏହି ନିରକ୍ଷର ସ୍ତ୍ରୀମାନେ ମଧ୍ୟ ଚିତ୍ରଶିଳ୍ପକୁ ବେଶ୍ ଜାଣନ୍ତି ବୋଲି କହିପାରୁଁ ।

ଚିତ୍ରାଙ୍କନ ଶିଳ୍ପର ଆଉ ଗୋଟିଏ ଅଙ୍ଗ ସୂଚୀକାର୍ଯ୍ୟ । ଉତ୍କଳର ପୁରୀ ଜିଲ୍ଲାର ପିପିଲି ଗ୍ରାମରେ ଥିବା ଶିଳ୍ପୀମାନେ ଏହି ବିଦ୍ୟାରେ ବିଶେଷ ପାରଙ୍ଗମ ଥିବାର ଜଣାଯାନ୍ତି । ଏଠାର ଦରଜୀମାନେ ଯେଉଁ ଚାନ୍ଦୁଆ, ଛତି, ତମ୍ବୁ, ଆଲଟ ଓ ରଥ ଘୋଡ଼ାଇବା ପଞ୍ଚବର୍ଣ୍ଣ କନା ପ୍ରସ୍ତୁତ କରନ୍ତି, ସେଥିରେ ଉତ୍କଳୀୟ ଚିତ୍ରଶିଳ୍ପର ବିଶେଷତ୍ୱ ଦେଖାଯାଏ । ଏହି କାର୍ଯ୍ୟ ନେଇ ଏଠାର ଶିଳ୍ପୀମାନେ ଏବେ ଉତ୍କଳ ବାହାରେ, ସୁଦୂର ମାନ୍ଦ୍ରାଜ ଓ କଲିକତାରେ ମଧ୍ୟ ଖ୍ୟାତି ଅର୍ଜିଥିବାର ଶୁଣାଯାଏ । ଉତ୍ସାହ ପାଇଲେ ଉତ୍କଳର ଏହି ପ୍ରାଚୀନ ଶିଳ୍ପ ଅଧିକ ଉନ୍ନତ ହେବା ନିଃସନ୍ଦେହ । ସୂଚୀକାର୍ଯ୍ୟର ଅନ୍ୟ ଏକ ଅଙ୍ଗ ଆମ୍ଭେମାନେ ବ୍ୟବହାର କରୁଥିବା ପାଟ, ମଠା ଓ କାଣ୍ଟିଆ ପ୍ରଭୃତିରେ ଦେଖାଯାଏ । ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ପାଟ, ପୁରୀର ଓଳସିଂହ ପାଟ ଓ ସମ୍ବଲପୁରର ମଠାରେ ଯେଉଁ କାନି ବା ଧଡ଼ି ଥାଏ ଏବଂ ସେହି ଧଡ଼ିରେ ଥିବା ବିଭିନ୍ନ ବର୍ଣ୍ଣର ଫୁଲ ଓ ଡାଳପତ୍ରର ଚିତ୍ର ପ୍ରଭୃତିରେ ଉତ୍କଳୀୟ କାରିଗରମାନେ ଚିତ୍ରଶିଳ୍ପକୁ ବେଶ୍ ଫୁଟାଇଥାନ୍ତି । ଆଜିକାଲି ମୟୂରଭଞ୍ଜର "ଶିଳ୍ପସଦନ" ଓ "କୁଟୀର ଶିଳ୍ପାଗାର"ରେ ମଧ୍ୟ ଏପରି ଚିତ୍ରିତ ଲୁଗା ଓ ପାଟଶାଢ଼ୀ ପ୍ରଭୃତି ତିଆରି ହୁଏ ।

କେବଳ କାନ୍ଥବାଡ଼ ଓ ଲୁଗାପଟାରେ ଯେ ସବୁ ଚିତ୍ର ଦେଖାଯାଏ, ସେତିକି ନୁହେଁ, ଉତ୍କଳର ବିଭିନ୍ନ ସ୍ଥାନରେ ଯେଉଁ କଂସାବାସନ ଓ ଉପକରଣ ପ୍ରଭୃତି ତିଆରି ହୁଏ, ସେଗୁଡ଼ିକରେ ଥିବା ପଶୁପକ୍ଷୀଙ୍କର ଚିତ୍ର, ପୁଷ୍ପଲତା ଏବଂ ବିବିଧ ଦୃଶ୍ୟର ଚିତ୍ର ଗୁଡ଼ିକରେ ମଧ୍ୟ ଉତ୍କଳୀୟ ଶିଳ୍ପୀମାନେ ନିଜର ଚିତ୍ରବିଦ୍ୟାର ପରିଚୟ ବେଶ୍ ଦେଖାନ୍ତି । ଏସବୁ ଶ୍ରେଣୀର ଶିଳ୍ପୀମାନେ ନିତାନ୍ତ ଅନୁନ୍ନତ ଓ ନିରକ୍ଷର ହେବା ସତ୍ତ୍ୱେ ସେମାନଙ୍କ ଦ୍ୱାରା ତିଆରି ହୋଇଥିବା ଜିନିଷଗୁଡ଼ିକ କେବଳ ଏହି ଚିତ୍ରକୁ ନେଇ ଲୋକମାନଙ୍କ ଦ୍ୱାରା ବିଶେଷ ରୂପେ ଆଦୃତ ହୋଇଥାଏ । ଆଜିକାଲି ବିଦେଶୀ ଚକ୍ ଚକ୍ ଜିନିଷର ମୋହରେ ପଡ଼ି ଆମ ଦେଶବାସୀ ଏହି ଦେଶୀ ଶିଳ୍ପର ଆଦର କରୁ ନ ଥିବାରୁ, ଏ ଶ୍ରେଣୀର ଶିଳ୍ପର କ୍ରମବିକାଶ ହୋଇପାରୁ ନାହିଁ । ତଥାପି ଉପଯୁକ୍ତ ଉତ୍ସାହ ପାଇଲେ ଉତ୍କଳର ଏହି ପ୍ରାଚୀନ ଚିତ୍ରଶିଳ୍ପ ନିଶ୍ଚୟ ମୁଣ୍ଡ ଟେକିବା ଆଶା କରାଯାଏ । ପୁରୀର ଶ୍ରୀଯୁକ୍ତ କେ. ଏନ୍. ଦାସ୍ ଅନେକଗୁଡ଼ିଏ ପ୍ରାଚୀନ ଉତ୍କଳୀୟ ଚିତ୍ରପଟ ସଂଗ୍ରହ କରିଛନ୍ତି ।

ଆମ ଦେଶର ନବୀନ ଚର୍ମଶିଳ୍ପୀମାନେ ଏଗୁଡ଼ିକୁ ଦେଖି ଚର୍ମଶିଳ୍ପ ସମ୍ବନ୍ଧରେ ବିଶେଷ ଆଲୋଚନା କଲେ, ଏ ଶ୍ରେଣୀୟ ଶିଳ୍ପର ପୁନରୁଦ୍ଧାର ହେବା ସମ୍ଭବ ।

୧୦ମ **ଧାତୁନିର୍ମିତ ଅଳଙ୍କାର**—ଜାତି, ଭାଷା, ପୋଷାକପତ୍ର ଓ ଆଚାର ବ୍ୟବହାର ନେଇ ଉତ୍କଳୀୟମାନେ ଭାରତର ଅନ୍ୟ ପ୍ରଦେଶବାସୀଙ୍କଠାରୁ ଯେପରି ପୃଥକ୍ ଦେଖାଯାନ୍ତି, ସେମାନଙ୍କର ଅଳଙ୍କାରଗୁଡ଼ିକ ମଧ୍ୟ ସେହିପରି ଭିନ୍ନ ଦେଖାଯାଏ । ପ୍ରାଚୀନ ଉତ୍କଳୀୟମାନେ କିପରି ସୂକ୍ଷ୍ମ ଓ ସୁନ୍ଦର ଅଳଙ୍କାର ବ୍ୟବହାର କରୁଥିଲେ, ତହିଁର ନମୁନା ଉତ୍କଳୀୟ ମନ୍ଦିର ଦେହରେ ଥିବା ମୂର୍ତ୍ତିଗୁଡ଼ିକୁ ଦେଖିଲେ ସ୍ପଷ୍ଟ ଜାଣି-ହେବ । ଆଜିକାଲି ପଡ଼ୋଶୀ ଜାତିମାନଙ୍କ ଅନୁକରଣ କରି ଆମ ଦେଶର କାରିଗର-ମାନେ ନିଜର ସ୍ୱାତନ୍ତ୍ର୍ୟ ହରାଉଛନ୍ତି । ତଥାପି ଅନେକ ପଲ୍ଲୀର କାରିଗର ଖାଣ୍ଟି ଉତ୍କଳୀୟ ଶିଳ୍ପ ଥିବା ସୁନା, ରୁପା ଓ କଂସାର ଅଳଙ୍କାରମାନ ତିଆରି କରନ୍ତି । ଉତ୍କଳର ପ୍ରାଚୀନ ରାଜଧାନୀ କଟକ ସହର ସୁନାରୁପାର ତାରକସୀ କାର୍ଯ୍ୟ ପାଇଁ ଚିର ପ୍ରସିଦ୍ଧି ଲାଭ କରିଛି; କିନ୍ତୁ ଆଜିକାଲି ଏଠାର ଶିଳ୍ପୀମାନେ ମଧ୍ୟ ସେହି ବିଦେଶୀ ଛାଞ୍ଚରେ ଅନେକ ଅଳଙ୍କାର ତିଆରି କରନ୍ତି । ଜାତୀୟ ଶିଳ୍ପର ଉନ୍ନତି କରିବା ପାଇଁ ଇଚ୍ଛା କଲେ, ପ୍ରଥମେ ଏହି ସହରର କାରିଗରମାନଙ୍କୁ ପ୍ରାଚୀନ ଉତ୍କଳୀୟ ଢାଞ୍ଚାରେ ସବୁ ଅଳଙ୍କାର ତିଆରି କରିବାପାଇଁ ବାଧ୍ୟ କରିବାକୁ ହେବ । ତା ନ ହେଲେ ଉତ୍କଳୀୟ ଅଳଙ୍କାର-ଶିଳ୍ପ ଅଚିରେ ଲୋପ ପାଇବା ସମ୍ଭବ ।

୧୧ଶ **କାଠ୍‌ନିର୍ମିତ ଉପକରଣ**—ଆଧୁନିକ ଯୁଗରେ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଲୋକମାନେ ଯେପରି ଚୌକୀ, ବେଞ୍ଚ, ଟେବୁଲ ଓ ଆଲମାରି ପ୍ରଭୃତି ବ୍ୟବହାର କରନ୍ତି, ପ୍ରାଚୀନ ଉତ୍କଳୀୟମାନେ ସେପରି ଉପକରଣ ସବୁ ବ୍ୟବହାର କରୁ-ଥିବାର ଦେଖାଯାଏ ନାହିଁ । କିନ୍ତୁ ଭୁବନେଶ୍ୱର ନିକଟବର୍ତ୍ତୀ ଉଦୟଗିରି ଓ ଖଣ୍ଡ-ଗିରିରେ ଥିବା ଗୁମ୍ଫାଗୁଡ଼ିକରେ କେତୋଟି ବେଞ୍ଚ, ପୀଢ଼ା ବା ଆସନ ଓ ଖଟ ପ୍ରଭୃତି ସେହି ପ୍ରସ୍ତର ଦେହରେ ଖୋଳାଯାଇଅଛି । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଦେହରେ ମଧ୍ୟ ଏପରି କେତୋଟି ଉପକରଣର ଛବି ଏବଂ ସବାରି ଓ ଟାମ୍ଜାନ ପ୍ରଭୃତି ସେହି ପ୍ରସ୍ତର ଦେହରେ ଖୋଳାଯାଇଛି । ଉପକରଣଗୁଡ଼ିକ ସାଧାରଣତଃ କାଠରେ ତିଆରି ହୁଏ । କୌଣସି କାଠ ଶତ ଶତ ବର୍ଷ ଯାଏ ରହିବା ଅସମ୍ଭବ । ଏଣୁ ପ୍ରାଚୀନ କାଠର ଉପକରଣ ଏ ଦେଶରେ ଦେଖାଯାଏ ନାହିଁ । ତନ୍ତ୍ର ପ୍ରୋକ୍ତ ପ୍ରସ୍ତର ଉପକରଣଗୁଡ଼ିକୁ ଦେଖିଲେ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ଏହି ଶିଳ୍ପବିଦ୍ୟାରେ ମଧ୍ୟ ବିଶେଷ ଜ୍ଞାନ ପାଇଥିଲେ ବୋଲି କହିପାରୁ ।

୧୨ଶ ମନୁଷ୍ୟ, ଦେବଦେବୀ ଓ ପଶୁପକ୍ଷୀଙ୍କର ପ୍ରତିମୂର୍ତ୍ତି—ମୂର୍ତ୍ତିଗଠନ ଶିଳ୍ପରେ ମଧ୍ୟ ପ୍ରାଚୀନ ଉତ୍କଳୀୟମାନେ ବିଶେଷ ଦକ୍ଷତା ଲାଭ କରିଥିଲେ । ମୟୂରଭଞ୍ଜର ନିଭୃତ ଝାଡ଼ଖଣ୍ଡ ଜଙ୍ଗଲରେ ଥିବା ଅତି ପ୍ରାଚୀନ ଯୁଗର ସୂର୍ଯ୍ୟ, ଅଗ୍ନି, ସପ୍ତମାତୃକା, ପାର୍ଶ୍ୱନାଥ, ମହାବୀର ଓ ଅନ୍ୟାନ୍ୟ ଦେବଦେବୀ ମୂର୍ତ୍ତିଙ୍କଠାରୁ ଆରମ୍ଭ କରି ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫା ଦେହରେ ଥିବା ପଶୁପକ୍ଷୀ ଓ ଲତାର ଚିତ୍ର ଏବଂ ଉତ୍କଳର "ଶିଳ୍ପଚନ୍ଦ୍ରାଗାର" କୋଣାର୍କର ସୂର୍ଯ୍ୟ ମନ୍ଦିରରେ ଥିବା ସ୍ତ୍ରୀପୁରୁଷ ଓ ପଶୁପକ୍ଷୀଙ୍କ ମୂର୍ତ୍ତିଗୁଡ଼ିକୁ ଦେଖିଲେ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ପ୍ରତିମା ଗଠନ ଶିଳ୍ପରେ କିପରି ଦକ୍ଷତା ଲାଭ କରିଥିଲେ, ତାହା ଜାଣିହେବ । ଏହି ସବୁ ମୂର୍ତ୍ତିଗୁଡ଼ିକ ଯେପରି ସଜୀବ ଦେଖାଯାନ୍ତି, ସେହି ମୂର୍ତ୍ତି ଦେହରେ ଥିବା ଲୁଗାପଟା ଓ ବେଶଭୂଷା ମଧ୍ୟ ସେହିପରି ସୁନ୍ଦର ଓ ସୂକ୍ଷ୍ମ ଦେଖାଯାଏ । ବାସ୍ତବରେ କୋଣାର୍କର ମୂର୍ତ୍ତିଗୁଡ଼ିକୁ ଦେଖିଲେ ଶିଳ୍ପୀ ଯେହି ସେହି ଶ୍ରେଣୀର ସଜୀବ ପଦାର୍ଥକୁ ଦେଖି ଏ ସବୁ ମୂର୍ତ୍ତି ଗଢ଼ିଥିଲେ କିମ୍ବା ଏହି ସବୁ ମୂର୍ତ୍ତି ନିର୍ମାଣ ପରେ ଏ ଦେଶର ପଶୁପକ୍ଷୀ, ସ୍ତ୍ରୀ ପୁରୁଷ ଓ ବୃକ୍ଷଲତାର ସୃଷ୍ଟି ହେଲା, ଏହା କହିବା ସହଜ ବୋଧ ହୁଏ ନାହିଁ ! ଏଠାର ସ୍ତ୍ରୀ ଓ ପୁରୁଷ ମୂର୍ତ୍ତି ଦେହରେ ଥିବା ଖୋସା, ଠାଣି, ବେଶଭୂଷା ପ୍ରଭୃତିରେ ହୃଦୟସ୍ପର୍ଶୀ ବୋଧହୁଏ । ଏଗୁଡ଼ିକ ଦେଖିଲେ ଦର୍ଶକମାନେ ନିଜର ନିଜତ୍ୱକୁ ଭୁଲିଯାଇ ମୁଗ୍ଧ ହୁଅନ୍ତି ! ପ୍ରାଚୀନ ଉତ୍କଳୀୟ ଶିଳ୍ପୀ କେତେ ଯୁଗର ସାଧନା ବଳରେ ପ୍ରସ୍ତର ଦେହରେ ଏପରି ଜୀବନ୍ତ ପ୍ରତିମୂର୍ତ୍ତି ଗଢ଼ିଥିଲେ, ତାହା ସହଜରେ କହି ହେବ ନାହିଁ । ଯେଉଁମାନେ କୋଣାର୍କର ପ୍ରତିମୂର୍ତ୍ତିଗୁଡ଼ିକୁ ନିଜ ଆଖିରେ ଦେଖିଛନ୍ତି, ସେମାନେ କେବଳ ଏହି ପ୍ରତିମା ଗଠନ ଶିଳ୍ପର ବିଶେଷତ୍ୱ ବେଶ୍ ହୃଦୟଙ୍ଗମ କରିପାରନ୍ତି !



## ଉତ୍କଳରେ ଶିଳ୍ପସ୍ଥାପତ୍ୟର କ୍ରମବିକାଶ

ପ୍ରାଚୀନ ଉତ୍କଳର ଶିଳ୍ପୀମାନେ ପ୍ରଥମେ କେଉଁ ଉପାଦାନ ନେଇ ନିଜର ଶିଳ୍ପସ୍ଥାପତ୍ୟଗୁଡ଼ିକୁ ନିର୍ମାଣ କଲେ, ତହିଁର କୌଣସି ସଠିକ ପ୍ରମାଣ ପାଇ ନାହୁଁ । ବିଶାଳ ଉତ୍କଳ ପ୍ରଦେଶର ( ଆଧୁନିକ ଉତ୍କଳ ପ୍ରଦେଶ ଓ ଓଡ଼ିଶା ଗଡ଼ଜାତ ) କେଉଁ ସ୍ଥାନରୁ କି ପ୍ରକାର ପ୍ରାଚୀନ କୀର୍ତ୍ତି ଆବିଷ୍କୃତ ହୋଇଅଛି, ତାହା ପ୍ରକାଶ ପାଇ ନାହିଁ ।

ଯେଉଁ କୋଣରେ କି ଅମୂଲ୍ୟ ଶିଳ୍ପସମ୍ପଦ ଲୁକ୍‌କାୟିତ ଭାବରେ ପଡ଼ି ରହିଛି, ତା ମଧ୍ୟ ଜଣାଯାଏ ନାହିଁ । ଆଜ ସୁଦ୍ଧା ଯାହା କିଛି ପ୍ରାଚୀନ ଶିଳ୍ପସମ୍ପଦ ଅବିଷ୍କୃତ ହୋଇଛି, ସେଗୁଡ଼ିକ ଉପରେ କେବଳ ନିର୍ଭର କଲେ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ନିମ୍ନ ସ୍ତରରେ ଏ ଦେଶର ପ୍ରାଚୀନ ପ୍ରତିମୂର୍ତ୍ତି, ଅସ୍ତ୍ରଶସ୍ତ୍ର ଓ ମନ୍ଦିର ପ୍ରଭୃତି ନିର୍ମାଣ କରି-ଥିଲେ ବୋଲି କୁହାଯାଇପାରେ—

୧ମ ମାଟିଶିଳ୍ପ—ଉତ୍କଳର ପ୍ରଥମ ଶିଳ୍ପ ମାଟିରେ ତିଆରି ହୋଇଥିବାର ଜଣାଯାଏ । ଗଡ଼ଜାତ ରାଜ୍ୟଗୁଡ଼ିକୁ ବାଦ୍ ଦେଲେ ଆଧୁନିକ ଉତ୍କଳର ଅଧିକାଂଶ ରାଜ୍ୟ ସମୁଦ୍ର ଉପକୂଳରେ ଅବସ୍ଥିତ । ଏଠାରେ ସେପରି କୌଣସି ପର୍ବତ ବା ପର୍ବତମାଳା ଦେଖାଯାଏ ନାହିଁ । ପ୍ରଚୁର ପରିମାଣରେ ପଥରର ଅଭାବରେ ଏଠାର ଆଦିମ ଅଧିବାସୀ-ମାନେ କେବଳ ମାଟିରେ ଘରଦ୍ୱାର, ବାସନ ଓ ପ୍ରତିମା ପ୍ରଭୃତି ତିଆରି କରୁଥିଲେ । ପ୍ରାଚୀନକାଳରେ କେବଳ ମତ୍ସ୍ୟଜୀବୀମାନେ ହିଁ ଉତ୍କଳର ସମୁଦ୍ର କୂଳରେ ବାସ କରୁ-ଥିଲେ । ସମୁଦ୍ର ଓ ନଦୀଗୁଡ଼ିକରୁ ମାଛ ମାରିବା ହିଁ ସେମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା । କୌଣସି ଯୁଦ୍ଧବିଗ୍ରହରେ ଯୋଗ ଦେଉ ନ ଥିବାରୁ ସେମାନେ ଅତି ସରଳ ମାଟିଘର କରି ରହୁଥିଲେ । ଆଜ ସୁଦ୍ଧା ସମୁଦ୍ର କୂଳରେ ଏ ଶ୍ରେଣୀର ଲୋକମାନେ କେବଳ ମାଟିଘର କରି ରହନ୍ତି । ଏମାନଙ୍କର ପୂଜିତ ଦେବଦେବୀଙ୍କର ପ୍ରତିମୂର୍ତ୍ତିଗୁଡ଼ିକୁ ସେହି ମାଟିରେ ତିଆରି କରନ୍ତି ।

ସମୁଦ୍ର କୂଳରେ ମତ୍ସ୍ୟଜୀବୀଙ୍କ ପରି ଦେଶର ମଧ୍ୟଭାଗରେ ଯେଉଁମାନେ ବାସ କରୁଥିଲେ, ସେମାନେ ମଧ୍ୟ ଏହି ମାଟିରେ ନିଜର ଘରଦ୍ୱାର, ଦେବପ୍ରତିମା ଓ ଗଡ଼, ଦୁର୍ଗ ପ୍ରଭୃତି ନିର୍ମାଣ କରୁଥିଲେ । ପ୍ରାଚୀନ ଯୁଗର ଅନେକ ଗଡ଼, ଦୁର୍ଗ, ସାଧାରଣ ଘର, ମେରଦା ଘର, ଧାନଘର ଓ ଅଟ୍ଟୁଘର ପ୍ରଭୃତି କେବଳ ମାଟିରେ ତିଆରି ହୋଇଥିବାର ଦେଖାଯାଏ । ଦେଶବାସୀ ଅଗ୍ନିଭୟ ଓ ଚୋରଭୟରୁ ରକ୍ଷା ପାଇବା ପାଇଁ ଏ ଶ୍ରେଣୀର ମାଟିଘର କରୁଥିଲେ । ଆଧୁନିକ ଯୁଗର କାଠ ଓ ପଟା ପ୍ରଭୃତିରେ ତିଆରି ହୋଇଥିବା ଇଟାଘର ଓ ଚକାଘର ପ୍ରଭୃତି ଅନେକ ସମୟରେ ଅଗ୍ନିଦାହ ନଷ୍ଟ ହୁଏ । ସେପରି ଘରେ ଥିବା ଜିନିଷଗୁଡ଼ିକ ମଧ୍ୟ ନଷ୍ଟ ହୁଏ । କିନ୍ତୁ ମାଟି ଓ ମେରଦା ଘରର ଉପର ଚାଳ ଅଗ୍ନିରେ ଜଳିଗଲେ ସୁଦ୍ଧା ତନ୍ମଧ୍ୟସ୍ଥ ଜିନିଷ-ଗୁଡ଼ିକ ସେତେ ନଷ୍ଟ ହୁଏ ନାହିଁ । ଆଧୁନିକ ଯୁଗର ଇଟା ଓ ପ୍ରସ୍ତର ଘରର କାନ୍ଥକୁ ଚୋରମାନେ ଯେଉଁ ସହଜରେ ସିନ୍ଧି କରିପାରନ୍ତି, ମାଟି ଘରକୁ ସେପରି କରିବା

ସହଜ ନୁହେଁ । ଏହି କାରଣରୁ ପ୍ରାଚୀନ ଉତ୍କଳୀୟମାନେ ମାଟିରେ ନଗର ଘର କରିବା ପାଇଁ ବେଶି ପସନ୍ଦ କରୁଥିଲେ । ଅନେକ ପ୍ରାଚୀନ ଦୁର୍ଗର ଚତୁର୍ଦ୍ଦିଗ କାନ୍ଥ (ପ୍ରାଚୀର) କେବଳ ମାଟିରେ ତିଆରି ହେଉଥିଲା । ଏହି କାନ୍ଥର ସ୍ଥାନେ ସ୍ଥାନେ ଯେଉଁ "ମାଟି ବୁରୁଜ" ଥିଲା, ତାହାର କେତୋଟି ନମୁନା ପୁରୀ ଜିଲ୍ଲାର 'ଶିଶୁପାଳଗଡ଼' ଓ 'ପିପ୍ପିଳିଗଡ଼'ରେ ଦେଖାଯାଏ । ଯୁଦ୍ଧ ସମୟରେ ଯୋଦ୍ଧାମାନେ ଏହି ବୁରୁଜ * ଉପରେ ଠିଆହୋଇ ବେଶ୍ ସୁନ୍ଦର ଯୁଦ୍ଧ କରିପାରୁଥିଲେ ।

ଅତି ପ୍ରାଚୀନ କାଳରୁ ଆମ ଦେଶବାସୀ ମାଟି ହାଣ୍ଡିର ବ୍ୟବହାର କରନ୍ତି । ପ୍ରତ୍ୟେକ ପର୍ବପର୍ବାଣୀ ଓ ଓଷା ବ୍ରତରେ ନୂତନ ମାଟି ହାଣ୍ଡି ଦରକାର ହୁଏ । ବିବାହ ଓ ବ୍ରତରେ ଯେଉଁ ପୂର୍ଣ୍ଣକୁମ୍ଭ, ଦୀପାଳି ଓ ଲୁଗା ପ୍ରଭୃତି ଦରକାର ହୁଏ, ସେ ସବୁ ଏହି ମାଟିରେ ଗଢ଼ାଯାଏ । ଆମ ଦେଶର ଛୋଟ ବାଳକ ବାଳିକାମାନେ ଅତି ଶୈଶବରୁ "ବାଲିଘର" ଓ "ମାଟିଘର" ପ୍ରଭୃତି ଗଢ଼ନ୍ତି । ମାଟିର ଚୁଲି, ହାଣ୍ଡି, ସରା, କୁଣ୍ଡ, ଢକେଇ ଓ ତେଲୁଣି ପ୍ରଭୃତି ଗଢ଼ି ଲୋକେ ବ୍ୟବହାର କରନ୍ତି । ଗାଁମାନର ଛୋଟ ବାଳିକାମାନେ ପ୍ରତିବର୍ଷ ଭାଦ୍ରମାସର ଅମାବାସ୍ୟା ଦିନ ଯେଉଁ "କୁଣ୍ଡୀ ଢକେଇ ଖେଳ" କରନ୍ତି, ତାହା ଅତି ପ୍ରାଚୀନ କାଳର ଜାତୀୟ ଓଷା ଥିବାର ଜଣାଯାଏ । ଏଥିପାଇଁ ଏହି ଅମାବାସ୍ୟାର ନାମ "କୁଣ୍ଡୀ ଢକେଇ ଅମାବାସ୍ୟା" ଦିଆଯାଇଅଛି । କେବଳ ନୂଆ ମାଟି ପାତ୍ରରେ ଘରର ଝିଅମାନେ ଏହି ଓଷା ପୂଜା ଖେଳନ୍ତି ।

ପ୍ରତ୍ୟେକ ଉତ୍କଳୀୟଙ୍କ ଘରେ ମାଟି ହାଣ୍ଡିରେ ପ୍ରତିଦିନ ଭାତ ରନ୍ଧା ହୁଏ । ଉତ୍କଳବାସୀଙ୍କର ପ୍ରସିଦ୍ଧ ଠାକୁର ଜଗନ୍ନାଥ ଓ ଲିଙ୍ଗରାଜଙ୍କର ଯେଉଁ ଦୈନିକ ଭୋଗ ହୁଏ, ସେହି ଅଭଡ଼ା କେବଳ 'ମାଟି କୁଡ଼୍ୟା'ରେ ରନ୍ଧା ହୁଏ । ପ୍ରତ୍ୟେକ ହିନ୍ଦୁ ଘରେ ତୁଳସୀ ଚଉଁରା ଉପରେ ତୁଳସୀ ଗଛ ରଖି ପୂଜା କରନ୍ତି । ଏହି ତୁଳସୀ ଚଉଁରା ଓ ତାହା ଉପରେ ଥିବା ଢକେଇ ବା କୁଣ୍ଡ ପ୍ରଭୃତି କେବଳ ମାଟିରେ ତିଆରି ହୁଏ । ପଲ୍ଲୀର ଅଶିକ୍ଷିତ ଓ ଆଦିମ ଲୋକମାନେ ଯେଉଁ ଗ୍ରାମଦେବୀ ଓ ଠାକୁରାଣୀ ପ୍ରଭୃତି ପୂଜା କରନ୍ତି, ସେହି ମୂର୍ତ୍ତିଗୁଡ଼ିକ କେବଳ ମାଟିରେ ଗଢ଼ାଯାଏ । (ଆଜି କାଲି କେତେକ ସ୍ଥାନରେ ପ୍ରସ୍ତର ମୂର୍ତ୍ତି ଦେଖାଯାଏ । ) ଏହି ଗ୍ରାମଦେବୀଙ୍କଠାରେ

* ପ୍ରାଚୀନ ଗଡର ଚତୁର୍ଦ୍ଦିଗରେ ଥିବା ଗଡ କାନ୍ଥରେ ସ୍ଥାନେ ସ୍ଥାନେ ସ୍ତୂପାକୃତି ମାଟିଗଦା ରଖାଯାଉଥିଲା । ଏହି ସନ୍ଧାକୃତିକୁ 'ବୁରୁଜ' କୁହାଯାଏ ।

ଯେଉଁ ଘୋଡ଼ା, ହାତୀ, ରଥ, ଷଣ୍ଢ ଓ ମନୁଷ୍ୟର ପ୍ରସ୍ତମୂର୍ତ୍ତିମାନ ରଖାଯାଏ, ସେଗୁଡ଼ିକ ମଧ୍ୟ ସେହି ମାଟିରେ ତିଆରି ହୁଏ ।

ଏହି ବେଶେକ ପ୍ରମାଣରୁ ସ୍ପଷ୍ଟ ଜଣାପଡ଼େ ଯେ, ଉତ୍କଳର ପ୍ରାଚୀନ ଶିଳ୍ପୀମାନେ ପ୍ରଥମେ ମାଟିର ଉପାଦାନଦ୍ୱାରା ନିଜର ସମସ୍ତ ଶିଳ୍ପକାର୍ଯ୍ୟମାନ କରୁଥିଲେ । ପୂର୍ବରୁ କୁହାଯାଇଥିବା ସିନ୍ଧୁ ଉପତ୍ୟକାରୁ ଆବିଷ୍କୃତ ପ୍ରାଚୀନ କୀର୍ତ୍ତି ମଧ୍ୟରୁ କେତୋଟି ମାଟି ମୂର୍ତ୍ତି ପ୍ରାଗୈତିହାସିକ ଯୁଗର ବୋଲି ପଣ୍ଡିତମାନେ ସ୍ଥିର କରନ୍ତି । ଉତ୍କଳରେ ମଧ୍ୟ ସେହି ଶ୍ରେଣୀର ପ୍ରସ୍ତମୂର୍ତ୍ତି ଓ ମୋହର ବେଶେକ ସ୍ଥାନରୁ ଆବିଷ୍କୃତ ହୋଇଥିବାର ଜଣାଯାଏ ।*

୨ୟ ପ୍ରସ୍ତର ଶିଳ୍ପ—'ମାଟି'ପରେ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ 'ପ୍ରସ୍ତର' ଉପାଦାନଦ୍ୱାରା ନିଜର ଅସ୍ତ୍ରଶସ୍ତ୍ର, ପ୍ରସ୍ତମୂର୍ତ୍ତି ଓ ମନ୍ଦିର ପ୍ରଭୃତି ନିର୍ମାଣ କରୁଥିଲେ । ଏହି ପ୍ରସ୍ତର ଶିଳ୍ପର ନମୁନା ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରେ ଦେଖାଯାଏ ଏବଂ ଏ ପର୍ଯ୍ୟନ୍ତ ଯେଉଁ ବେଶେକ ପ୍ରସ୍ତର ଶିଳ୍ପ ଆବିଷ୍କୃତ ହୋଇଛି, ସେ ସବୁଗୁଡ଼ିକୁ ନିମ୍ନ କେତେକ ଭାଗରେ ବିଭକ୍ତ କରାଯାଇପାରେ ।

(କ) ଅତି ପ୍ରାଚୀନ (ଆଦିମ) ଯୁଗର ଅସ୍ତ୍ରଶସ୍ତ୍ର
(ଖ) ଅତି ପ୍ରାଚୀନ ଯୁଗର ଦେବଦେବୀ ମୂର୍ତ୍ତି
(ଗ) ପର୍ବତ ଦେହରେ ଜୈନ ଓ ବୌଦ୍ଧଧର୍ମର ଗୁମ୍ଫାମାନ
(ଘ) ଦେବ ମନ୍ଦିର—ବିଭିନ୍ନ ଧର୍ମର,
(ଙ) ଆଧୁନିକ ଯୁଗର ଦେବଦେବୀ ମୂର୍ତ୍ତି,
(ଚ) ଦେବମନ୍ଦିର ଦେହରେ ଥିବା ବିବିଧ ପଶୁପକ୍ଷୀ, ବୃକ୍ଷଲତା ଓ ସ୍ତ୍ରୀ ପୁରୁଷ ମୂର୍ତ୍ତି ପ୍ରଭୃତି
(ଛ) ନଦୀବନ୍ଧର ପ୍ରସ୍ତର ଶିଳ୍ପ,
(ଜ) ପୁଷ୍କରିଣୀର ପ୍ରସ୍ତର ଶିଳ୍ପ ଏବଂ
(ଝ) ପୋଲ ପ୍ରଭୃତି ପ୍ରଧାନ ଅଟେ ।

* ପୁରୀ ସହରରେ ଥିବା ମି, ବିଂ. ଏନ୍. ରାୟଙ୍କ ଯାଦୁଘରେ ଶିଶୁପାଳ ଗଡରୁ ଆବିଷ୍କୃତ କେତୋଟି ମାଟି ମୋହର ରଖାଯାଇଛି । ଏଗୁଡ଼ିକ ମାହେଞ୍ଜଦାରୋ ଯୁଗର କି ନୁହେଁ, ସେ ଦିଗରେ ବିଶେଷ ଅନୁସନ୍ଧାନ କରିବାକୁ ହେବ ।

ଉତ୍କଳର ବହୁତ ସ୍ଥାନରୁ ଆବିଷ୍କୃତ ହୋଇଥିବା ସବୁ ଶ୍ରେଣୀର ଶିଳ୍ପକାର୍ଯ୍ୟ ମଧ୍ୟରୁ କେବଳ ପ୍ରସ୍ତର ଶିଳ୍ପରେ ପ୍ରାଚୀନ ଶିଳ୍ପୀମାନେ ଅଦ୍ୱିତୀୟ ପାରଦର୍ଶିତା ଦେଖାଇ ଥିବାର ଜଣାଯାଏ । ଉତ୍କଳର ସ୍ୱାଧୀନ ରାଜାମାନଙ୍କ ସମୟରେ ଯେଉଁ ସବୁ ଦେବ-ମନ୍ଦିର ନିର୍ମିତ ହୋଇଥିଲା, ସେହି ମନ୍ଦିର ଦେହରେ ଯେଉଁ ସୂକ୍ଷ୍ମ ଓ ସୁନ୍ଦର କାରୁକାର୍ଯ୍ୟମାନ ଦେଖାଯାଏ, ସେଗୁଡ଼ିକୁ ଦେଖିଲେ ବାସ୍ତବରେ ବିସ୍ମିତ ହେବାକୁ ହୁଏ । ଏହା ଉତ୍କଳ ବାହାରିକ, ସମଗ୍ର ଭାରତରେ ପ୍ରସ୍ତର ଦେହରେ ଏପରି ସୂକ୍ଷ୍ମତାପୂର୍ଣ୍ଣ କାରୁକାର୍ଯ୍ୟ ଦେଖାଯାଏ ନାହିଁ ବୋଲି ଏକାଧିକ ପଣ୍ଡିତଙ୍କର ମତ ।

୩ୟ ଇଟାଶିଳ୍ପ—ପ୍ରସ୍ତର ଶିଳ୍ପ ସଙ୍ଗେ ସଙ୍ଗେ ଉତ୍କଳର ଭେଭେକ ପ୍ରଦେଶରେ ଥିବା ଶିଳ୍ପୀମାନେ ଇଟାର ମନ୍ଦିର, ଦୁର୍ଗ, ରାଜପ୍ରାସାଦ, ପୁଷ୍କରିଣୀ ଓ ବାନ୍ଧ ପ୍ରଭୃତି ନିର୍ମାଣ କରୁଥିଲେ । ଏହି ଇଟା ଆଧୁନିକ ଇଟା ପରି ଅତି ଛୋଟ ବା ଅସ୍ଥାୟୀ ନ ଥିଲା । ସେ କାଳର ଇଟାଗୁଡ଼ିକ ଅତି ପ୍ରଶସ୍ତ ଓ ଶକ୍ତ ଥିଲା । ପ୍ରତ୍ୟେକ ଇଟାର ମାପ, ଯଥାକ୍ରମେ ଲମ୍ବା ୧୩ ଠାରୁ ୧୬ ଇଞ୍ଚ, ଚଉଡ଼ା ୮ଠାରୁ ୧୨ ଇଞ୍ଚ ଓ ମୋଟା ବା ବହଳ ୩ଠାରୁ ୩୨ ଇଞ୍ଚ ଦେଖାଯାଏ । ଏ ଶ୍ରେଣୀର ଇଟା କେବଳ ମାଟିରେ ତିଆରି ହୋଇ, ଭଟ୍ଟିରେ ତଷ୍ଟୁ ଦେଇ ପୋଡ଼ାଯାଉଥିଲା । ପ୍ରତ୍ୟେକ ପ୍ରାଚୀନ ଇଟାର ଉପରେ ଏବଂ ତଳେ ପୋଡ଼ା ତଷ୍ଟୁର ଦାଗ ଦେଖାଯାଏ ।

ପୂର୍ବେ ଇଜିପ୍ଟ ଓ ଚାଲଡିଆ ଦେଶବାସୀ ଏ ଶ୍ରେଣୀର ଇଟା ତିଆରି କରୁଥିଲେ । ଭାରତରେ ମୌର୍ଯ୍ୟ ଓ ସୁଙ୍ଗା (କୁଷନ୍)ବଂଶର ରାଜାମାନେ ମଧ୍ୟ ଏ ଶ୍ରେଣୀର ଇଟାରେ ଘରଦ୍ୱାର କରୁଥିବା ନଯା ନବାବିଷ୍କୃତ ଗୋଟିଏ ପ୍ରାଚୀନ ଇଷ୍ଟକ ଲିପିରୁ ଜଣାଯାଏ ।* ମଗଧ ରାଜା ଅଶୋକ କଳିଙ୍ଗ ଅଧିକାର କଲା ପରେ ଅନେକ ବୌଦ୍ଧ ଓ ଜୈନଧର୍ମାବଲମ୍ବୀ ଉତ୍କଳକୁ ଆସି ଏଠାରେ ଥିବା ଗୁମ୍ଫାଗୁଡ଼ିକରେ ଆଶ୍ରୟ ନେଇଥିଲେ । ସେହି ମଗଧବାସୀଙ୍କ ଆଗମନ ପରେ ଉତ୍କଳରେ ଏ ଧରଣର ଇଟା ତିଆରି ହୋଇଥିବାର ସମ୍ଭବ । ତା ହେଲେ ଖ୍ରୀଷ୍ଟପୂର୍ବ ୨୫୦ ବର୍ଷ,ଅର୍ଥାତ୍ ଆଜକୁ ୨୦୦୦ ବର୍ଷ ପୂର୍ବେ ଉତ୍କଳରେ ଏ ଧରଣର ଇଟା ତିଆରି ହୋଇଥିଲା । ସୁବର୍ଣ୍ଣ ଜଙ୍ଘାର ପ୍ରାଚୀନଦୀ ତୀରରେ ଥିବା

* ଇଂରାଜୀ ଅମୃତବଜାର ପତ୍ରିକାର ୧୬ । ୯ । ୧୯୩୨ ସଂଖ୍ୟାରେ ପ୍ରକାଶିତ ମି: ଚି: ହି. ଚୌଧୁରି I. C. S.;S. D. O, Behar (Patna) ଙ୍କ ପ୍ରବନ୍ଧ "Archaeological find at Rajgir"



୬—ଭୁବନେଶ୍ୱର ଭଗବତ ମନ୍ଦିର



୭—ଗୌଡ଼ୀୟ ମନ୍ଦିର, ପୁରୀ



୮—ବୋଇତାଳ ଦେଉଳ, ଭୁବନେଶ୍ୱର

ସହସ୍ରାଧିକ ପ୍ରାଚୀନ ବାନ୍ଧ, ଶତାଧିକ ପୁଷ୍କରିଣୀ ଏବଂ ୩୦।୪୦ ଦେବମନ୍ଦିର କେବଳ ଏହି ପୁରୁଣା ଇଟାରେ ନିର୍ମିତ ହୋଇଥିବାର ଦେଖାଯାଏ । ସ୍ଥାନେ ସ୍ଥାନେ ଅନେକ ଗଡ଼ ଓ ନଦୀ ଘାଟରେ ମଧ୍ୟ ଏହି ଇଟାର କୁଢ଼ ଦେଖାଯାଏ । କଳିଙ୍ଗ ଚକ୍ରବର୍ତ୍ତୀ ଖାର-ବେଳଙ୍କର କଳିଙ୍ଗନଗର ଏହି ପ୍ରାଚୀ ନଦୀତୀରରେ ଥିବାର ହାତୀଗୁମ୍ଫା ଲିପିରେ ବର୍ଣ୍ଣିତ ଅଛି । ଯେଉଁମାନେ ପ୍ରାଚୀନ କଳିଙ୍ଗ ନଗରର ଅସ୍ତିତ୍ୱ ଲୋପହେବା କଥା କହୁଥିଲେ, ସେମାନେ ଥରେ ଏହି ପ୍ରାଚୀନଦୀ ତୀରର ପ୍ରାଚୀନ କୀର୍ତ୍ତିଗୁଡ଼ିକୁ ଦେଖିଲେ ନିଜର ଭ୍ରମ ଦୂର କରିପାରିବେ । ପ୍ରାଚୀ ନଦୀତୀରର ଏହି ଇଟାଗୁଡ଼ିକୁ ଦେଖିଲେ ଖାରବେଳଙ୍କ ସମୟରୁ ଉତ୍କଳରେ ଇଟାଶିଳ୍ପର ଆଦର ଥିଲା ବୋଲି ନିଃସନ୍ଦେହରେ କୁହାଯାଇପାରେ ।

ପ୍ରାଚୀତୀର ବ୍ୟତୀତ ପୁରୀ ଜିଲ୍ଲାରେ ଶିଶୁପାଳଗଡ଼, ଧଉଳି ପାହାଡ଼ ନିକଟ-ବର୍ତ୍ତୀ କୌଶଲ୍ୟାଗଙ୍ଗ ଓ ଢେଙ୍କାନାଳର ନବାବିଷ୍କୃତ କେତେକ ଗୁମ୍ଫାରେ ଏବଂ ମୟୂରଭଞ୍ଜ ରାଜ୍ୟର ପଥୁରିଆଗଡ଼ ଓ ଇଟାଗଡ଼ ପ୍ରଭୃତି ସ୍ଥାନରେ ଏ ଶ୍ରେଣୀର ଇଟା ଦେଖାଯାଏ । ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ମାଟିହାଣ୍ଡି ପ୍ରୋଢ଼ ବ୍ୟବହାର କଲା ପରେ ଏହି ମାଟିକୁ ଇଟା ଆକାରରେ ତିଆରି କରିବା ଜ୍ଞାନ ପାଇଥିବେ । କ୍ରମେ ସେମାନଙ୍କୁ ମଗଧର ଇଟାଶିଳ୍ପୀମାନେ ବିଶେଷ ଶିକ୍ଷା ଦେଇଥିବା ସମ୍ଭବ । ଆଧୁନିକ ଯୁଗରେ ଅସଂଖ୍ୟ ଇଟା ଘର (ପକାଘର) ଓ ଟିଣର ଘର ତିଆରି ହୁଏ; କିନ୍ତୁ କୌଣସି ଶିଳ୍ପୀ ପ୍ରାଚୀନ ଯୁଗର ଏ ଶ୍ରେଣୀର ଇଟା ତିଆରି କରନ୍ତି ନାହିଁ । ଦୀର୍ଘ ୨୦୦୦ ବର୍ଷ କାଳର ଇଟାଗୁଡ଼ିକ ଖରା ଓ ବର୍ଷା ମାଡ଼ ଖାଇ ସୁଦ୍ଧା ଅକ୍ଷୁଣ୍ଣ ଭାବରେ ରହିଥିବାର ଦେଖିଲେ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ଏ ଶ୍ରେଣୀର ଇଟା ନିର୍ମାଣ କରିବା ପାଇଁ କିପରି ଦକ୍ଷତା ଲାଭ କରିଥିଲେ, ତାହା ବେଶ୍ ଜାଣିହେବ ।

୪ର୍ଥ **ଲୌହ ଶିଳ୍ପ**—ଉତ୍କଳରେ ଲୁହାଖଣିର ଅଭାବ ନାହିଁ । ଆଜିକାଲି ତାଳଚେର, ମୟୂରଭଞ୍ଜ ଓ ସିଂହଭୂମିରେ ଏହି ଧାତୁ ପ୍ରଚୁର ମିଳେ । ସିଂହଭୂମିର "ଟାଟା ଲୌହ କାରଖାନା" ବିଶ୍ୱବିଖ୍ୟାତ ଅଟେ । ଏହି କାରଖାନାର ସମସ୍ତ ଲୁହା କେବଳ ମୟୂରଭଞ୍ଜ ଓ ତାଳଚେରରୁ ଯାଏ । ପ୍ରାଚୀନ ଉତ୍କଳର କେଉଁ କେଉଁ ସ୍ଥାନରେ ଲୌହଖଣି ଥିଲା, ତାହା ଜାଣିବା ପାଇଁ ଏକ୍ଷଣି ସୁବିଧା ନାହିଁ । କିନ୍ତୁ ସେକାଳର ଉତ୍କଳୀୟ ଶିଳ୍ପୀମାନେ ଲୁହାରେ ଯେଉଁ ଶିଳ୍ପକାର୍ଯ୍ୟମାନ କରିଯାଇଛନ୍ତି, ସେଗୁଡ଼ିକୁ ଦେଖିଲେ ବିସ୍ମିତ ହେବାକୁ ହୁଏ । ଉତ୍କଳର ଅତି ପ୍ରାଚୀନ ଦେବମନ୍ଦିର ଭୁବନେଶ୍ୱରର

"ଲିଙ୍ଗରାଜ" ଓ କୋଣାର୍କର "ସୂର୍ଯ୍ୟମନ୍ଦିର"ରେ ଯେଉଁ ଲୁହା କଡ଼ିମାନ ଦେଖାଯାଏ, ସେ ସମ୍ବନ୍ଧରେ ପଣ୍ଡିତ କୃପାସିନ୍ଧୁ ମିଶ୍ର ଲେଖିଛନ୍ତି—

"ଲୁହାର କାରିଗର ମଧ୍ୟ ବିଶେଷ ଉତ୍କର୍ଷ ଲାଭ କରିଥିଲେ। ବର୍ତ୍ତମାନ ଯୁଗରେ ଲୁହାକାମ ନିମନ୍ତେ ଯେତେ କଳକାରଖାନାର ସୃଷ୍ଟି ହୋଇଛି, ସେତେବେଳେ ସେ ସବୁ ଜଣା ନ ଥିଲା। କମାରମାନେ ନିଜ ହାତ ହାତୁଡ଼ିରେ ଯାହା କିଛି କାମ କରୁଥିଲେ। ସେ କାଳର ଲୁହା ଜିନିଷ ମଧ୍ୟରେ ଭୁବନେଶ୍ୱର ମନ୍ଦିରରେ ଯେଉଁ କଡ଼ି ମାନଙ୍କର ବ୍ୟବହାର କରାଯାଇଛି, ବର୍ତ୍ତମାନ କଳକାରଖାନା ଯୁଗର ଦର୍ଶକମାନେ ତାହା ଦେଖି ବିସ୍ମିତ ହୁଅନ୍ତି। ଭୁବନେଶ୍ୱରର କଡ଼ିମାନ ୨୫ ଫୁଟ ପର୍ଯ୍ୟନ୍ତ ଲମ୍ବ ଏବଂ ତଦନୁସାରେ ମୋଟା। ଏହାର ଗଠନ ମଧ୍ୟ ବିଚିତ୍ର, ପ୍ରାୟ ଏକଇଞ୍ଚ ବର୍ଗ ଓ ପ୍ରାୟ ୨।୩ ଫୁଟ ଲମ୍ବ। ବହୁତ ଗୁଡ଼ିଏ ଲୁହା ଛଡ଼ ଏକତ୍ର ରଖାଯାଇ ସେମାନଙ୍କ ଉପରେ ତରଳ ଲୁହା ଢଳା ଯାଉଥିଲା। ତରଳ ଲୁହା ଛଡ଼ଗୁଡ଼ିକର ଫାଙ୍କମାନଙ୍କରେ ପୂର୍ଣ୍ଣ ହୋଇ ସକଳ ଛଡ଼ଗୁଡ଼ିକୁ ଏକ ଶକ୍ତ କଡ଼ି ଆକାରରେ ସୁଦୃଢ଼ କରିଛି। ଏପରି ନିର୍ମିତ ହୋଇଥିବା କଡ଼ିଗୁଡ଼ିକ କିଛି ଅଳ୍ପ ଶକ୍ତ ହୋଇ ନାହିଁ। ପ୍ରମାଣ କରାଯାଇଛି, ଭୁବନେଶ୍ୱରର କଡ଼ି ପ୍ରତ୍ୟେକ ବର୍ଗଇଞ୍ଚରେ କୋଡ଼ିଏ ଟନ୍ ପର୍ଯ୍ୟନ୍ତ ଭାର ସମ୍ଭାଳି ପାରେ; ଅଥଚ ବର୍ତ୍ତମାନ ଯୁଗର କଳକାରଖାନାର ପ୍ରସ୍ତୁତ ଲୁହାକଡ଼ି ପ୍ରତିବର୍ଗ ଇଞ୍ଚରେ ୨୩ ଟନ୍ ପର୍ଯ୍ୟନ୍ତ ବୋଝ ସମ୍ଭାଳିଲେ ଯଥେଷ୍ଟ ହେଲା। ଅଧୁନିକ ବିଜ୍ଞାନ ଯୁଗରେ ଦେଢ଼ ହଜାର ବର୍ଷ ପୂର୍ବରେ ଉତ୍କଳର କମାର ଭାଇମାନଙ୍କଠୁ ଏହିପରି ଆଶ୍ଚର୍ଯ୍ୟଜନକ କଡ଼ିମାନ ଯେ ପ୍ରସ୍ତୁତ ହେଉଥିଲା, ତାହାହିଁ ବିଚିତ୍ର କଥା।"

(ଉତ୍କଳ ଇତିହାସ)

ଭୁବନେଶ୍ୱର ମନ୍ଦିରର ଲୁହା କଡ଼ି ଅପେକ୍ଷା କୋଣାର୍କର ସୂର୍ଯ୍ୟ ମନ୍ଦିରରେ ବ୍ୟବହୃତ କଡ଼ିଗୁଡ଼ିକ ଅଧିକ ଉତ୍କୃଷ୍ଟ ଥିବାର ଦେଖାଯାଏ। ଏ ସମ୍ବନ୍ଧରେ ପଣ୍ଡିତଜୀ ଲେଖିଛନ୍ତି—

"କୋଣାର୍କରେ ଯେଉଁ ବୃହତ୍ ଲୁହା କଡ଼ିମାନ ଦେଖିବାକୁ ମିଳେ, ତହିଁରୁ ସୁନ୍ଦର ଅନୁମାନ କରାଯାଇପାରେ ଯେ, ଓଡ଼ିଶାର ଲୁହା ଖଣିରୁ ପ୍ରଚୁର ଲୁହା ବାହାରୁଥିଲା ଏବଂ ପ୍ରତ୍ୟେକ ମନ୍ଦିର ନିକଟରେ ଲୁହା କାରଖାନାମାନ ସ୍ଥାପିତ ହୋଇଥିଲା। କୋଣାର୍କର ବେଢ଼ା ମଧ୍ୟରେ ଯେ କେତେକ ଲୁହା କଡ଼ି ପଡ଼ିଅଛି, ତାହାର ଆକାର

ଓ ଗଠନ ଦେଖି ପ୍ରଧାନ ପ୍ରଧାନ ଇଞ୍ଜିନିୟରମାନେ ଚମତ୍କୃତ ହୁଅନ୍ତି । ଉକ୍ତ କଣ୍ଟା ଗୁଡ଼ିକ ମଧ୍ୟରୁ ବୃହତ୍ତମ କଣ୍ଟାର ଲମ୍ବା ୩୫ ଫୁଟ ଇଞ୍ଚ ଏବଂ ଉଚ୍ଚତା ଓ ବେଧ ମଧ୍ୟ ଯଥାକ୍ରମେ ୧୦ ଇଞ୍ଚ ଓ ୮ ଇଞ୍ଚ । କୋଣାର୍କ କଣ୍ଟାର ଗଠନରେ ବିଶେଷତ୍ୱ ଏହି ଯେ, ଦୁଇ ପ୍ରାନ୍ତ ଅପେକ୍ଷା କଣ୍ଟାର ମଧ୍ୟସ୍ଥଳ ଉଚ୍ଚତା ଓ ବେଧରେ ଏକରୁ ଦୁଇ ଇଞ୍ଚ ପର୍ଯ୍ୟନ୍ତ ଅଧିକ । କୋଣାର୍କ ଲୁହା କଣ୍ଟାର ଗଠନ ବର୍ତ୍ତମାନ କଣ୍ଟା ପରି ନୁହେଁ । ପ୍ରଥମରେ ଏକ ବା ଦେଢ଼ ଫୁଟ ଲମ୍ବା ଓ ଦୁଇ ବା ତିନି ଇଞ୍ଚ ଚଉଡ଼ାରେ ଲୁହା ଖଣ୍ଡମାନ ତିଆରି କରାଯାଉଥିଲା । ତତ୍ପରେ କେତେଗୁଡ଼ିଏ ଖଣ୍ଡ ପରସ୍ପର ସହିତ ଏକତ୍ର କରାଇ କଣ୍ଟା ଯେତେ ଲମ୍ବ ଓ ମୋଟା ହେବା ଦରକାର, ସେ ପର୍ଯ୍ୟନ୍ତ ଖଞ୍ଜାଇ ରଖାଯାଉଥିଲା ଓ ସେ ସମସ୍ତ ଉପରେ ତରଳ ଲୁହା ଢଳା ଯାଉଥିଲା । ତଦ୍ଦ୍ୱାରା ଖଣ୍ଡଗୁଡ଼ିକ ମଧ୍ୟରେ ଥିବା ଖଞ୍ଜାଇ ଫାଙ୍କମାନ ପୂର୍ଣ୍ଣ ହୋଇଯାଉଥିଲା ଏବଂ ସେଗୁଡ଼ିକ ପରସ୍ପର ସହିତ ଘନିଷ୍ଠ ଭାବରେ ଜଡ଼ିତ ହୋଇଯିବାରୁ କଣ୍ଟା ସୁଦୃଢ଼ ହେଉଥିଲା । × ଗଠନ ପ୍ରଣାଳୀ ଯାହା ହେଉ, କଣ୍ଟାର ଆକାର ଓ ସହନଶୀଳତା ଦେଖିଲେ, ଏହି ବିଜ୍ଞାନ ଯୁଗରେ ମଧ୍ୟ ଆଶ୍ଚର୍ଯ୍ୟ ହେବାକୁ ହୁଏ । × × ଫରଗୁସନ୍ ଓ ରାଜେନ୍ଦ୍ରଲାଲ ମିତ୍ର କହିଛନ୍ତି— କଣ୍ଟାର ଏହିରୂପ ଗଠନ ଓଡ଼ିଆମାନଙ୍କର ବୈଜ୍ଞାନିକ ସୂକ୍ଷ୍ମଦୃଷ୍ଟିର ଯଥେଷ୍ଟ ପରିଚୟ ଦେଉଅଛି ଇତ୍ୟାଦି ।" (କୋଣାର୍କ)

ଉତ୍କଳର ଲୌହଶିଳ୍ପ କେବଳ କୋଣାର୍କ ବା ଭୁବନେଶ୍ୱର ମନ୍ଦିରର ଲୁହା କଣ୍ଟା ତିଆରି ସଙ୍ଗେ ଆରମ୍ଭ ହୋଇ ନ ଥିଲା । ଖ୍ରୀଷ୍ଟଜନ୍ମର ବହୁଶତ ବର୍ଷ ପୂର୍ବରୁ ଉତ୍କଳୀୟ ଶିଳ୍ପୀମାନେ ଏହି ଧାତୁର ବ୍ୟବହାର ଜାଣିଥିଲେ । ପ୍ରାଚୀନ ଉତ୍କଳ ବା କଳିଙ୍ଗ ଅଧିବାସୀ ଯେଉଁ ବୋଇତ ବାଣିଜ୍ୟ କରୁଥିଲେ, ସେହି ବୋଇତ ତିଆରି ପାଇଁ ପ୍ରଚୁର ଲୁହାକଣ୍ଟା, ଲୁହା କଡ଼ି ଓ ଲୁହାର ଶିକୁଳି ପ୍ରଭୃତି ଦରକାର ହେଉଥିଲା । ଏ ସବୁ ଉତ୍କଳୀୟ ଶିଳ୍ପୀମାନେ ତିଆରି କରୁଥିଲେ । ପ୍ରାଚୀନ ବୋଇତ ବାଣିଜ୍ୟ ସମ୍ବନ୍ଧରେ କେତେକ ବର୍ଣ୍ଣନା ଉତ୍କଳୀୟ କବିମାନଙ୍କର ଲେଖାରେ ଦେଖାଯାଏ । ଏପରି ଏକ ଲେଖାରେ ବର୍ଣ୍ଣିତ ଅଛି—

ସେ ଲୁହା କାଠେଇ କରତ ପଟା
ନାବ ଗଢ଼ିବାକୁ ଗଢ଼ାଇ କଣ୍ଟା
× ×
ଲୁହା ଶଏ ଖଣ୍ଡା ଭିତରେ ଥୋଇ
ନାନା ଶସ୍ତ୍ରମାନ ଭିତରେ ଥୋଇ (ପ୍ରସ୍ତାବସିନ୍ଧୁ)

ପ୍ରାଚୀନ ଉତ୍କଳରେ ଲୌହଶିଳ୍ପର ଏତେ ଉନ୍ନତି ସତ୍ତ୍ୱେ ଆଧୁନିକ ଯୁଗର ଲୌହଶିଳ୍ପୀମାନଙ୍କ ଅବସ୍ଥା ଅତି ଶୋଚନୀୟ ଦେଖାଯାଏ । ଯେଉଁ ଦେଶର କମାର-ମାନେ ଏହି ଦେଶର ଭାଣ୍ଡଗୃହକରେ ତିଆରି କରିଥିବା ଅତି ପ୍ରକାଣ୍ଡ ଲୁହାକଡ଼ି ଭୁବନେଶ୍ୱର ଓ କୋଣାର୍କ ମନ୍ଦିର ପାଇଁ ଯୋଗାଉଥିଲେ, ସେହି ପ୍ରାଚୀନ ଶିଳ୍ପୀମାନଙ୍କ ବଂଶଧରମାନେ ଆଜ ଖଣ୍ଡିଏ ଲୁହା କଣ୍ଟା ବା ଲୁହା ଛଡ଼ କରିବାକୁ ସମ୍ପୂର୍ଣ୍ଣ ଅକ୍ଷମ ଦେଖାଯାନ୍ତି ! ଏହାର ପ୍ରଧାନ କାରଣ ହୁଏ ତ ରାଜପୃଷ୍ଠପୋଷକତାର ଅଭାବ କିମ୍ବା ସେହି ଶିଳ୍ପୀମାନଙ୍କଠାରେ ସୁଦ୍ଧା ଶିଳ୍ପଜ୍ଞାନର ଅଭାବ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ ସମ୍ବନ୍ଧରେ ଶ୍ରୀଯୁକ୍ତ ଶରତ୍ ଚନ୍ଦ୍ର ମୁଖର୍ଜୀ ତାହାଙ୍କ ପ୍ରଣୀତ 'ଆର୍ଥିକ ଉତ୍କଳ'ରେ ଲେଖିଛନ୍ତି—

"ଓଡ଼ିଶାର କମାରଶାଳ ଆଜ ଶ୍ରୀହୀନ । ଦିନେ ଏ ସବୁ ଶାଳାରେ ବର୍ତ୍ତମାନ କୋଣାର୍କରେ ମିଳୁଥିବା ବଡ଼ବଡ଼ ଲୁହାକଡ଼ି ତିଆରି ହୋଇଥିଲା । ମାତ୍ର ଆଜକାଲି ଓଡ଼ିଶାର ଅଧିକାଂଶ ସ୍ଥାନରେ ଯେଉଁସବୁ ଲୁହାର ଜିନିଷ ତିଆରି ହୁଏ, ତାହା ସାଧାରଣ ହାତ ହତିଆର ଶ୍ରେଣୀର, ଯଥା—କୁରାଢ଼ି, କାଙ୍କ, କୋଡ଼ି, ଲଙ୍ଗଳଲୁହା, ଖଦା ଓ ଖଣତି ପ୍ରଭୃତି । ଟାଟା କମ୍ପାନୀଙ୍କର ତିଆରି ଏହି ସବୁ ହାତ ହତିଆର କ୍ରମେ କ୍ରମେ ଓଡ଼ିଶାର ଲୁହା-ବଜାରରେ ମଧ୍ୟ ପ୍ରବେଶ କଲାଣି । ଭଲ କରେଇ, ନାନା ରକମର କଣ୍ଟା, ଜଞ୍ଜିର, କୋଲପ ପ୍ରଭୃତି ଦରକାରୀ ଜିନିଷମାନ ଓ ଲୁହା ଦଣ୍ଡ, କରଗା ପ୍ରଭୃତି ଆଜିକାଲି ବାହାରରୁ ଆସେ × × । ଉତ୍କଳର ଲୌହଶିଳ୍ପ ବାହାରର ପ୍ରତିଯୋଗିତା ନିକଟରେ ଦିନକୁ ଦିନ ପରାହତ ହେଉଅଛି ଓ ହାତପିଟା ଲୁହା ହତିଆରର ସ୍ଥାନ କଳନିର୍ମିତ ହତିଆର ଦଖଲ କରୁଛି । ଏ ଲୌହଶିଳ୍ପ ଓଡ଼ିଶାରୁ ଲୋପ ପାଇବାକୁ ବିଳମ୍ବ ନାହିଁ ।"

୬ମ **କାଷ୍ଠଶିଳ୍ପ**—ପ୍ରାଚୀନ ଉତ୍କଳର 'ବୋଇତ ବାଣିଜ୍ୟ' ଇତିହାସ ପ୍ରସିଦ୍ଧ । ଅଶୋକଙ୍କର କଳିଙ୍ଗ ଅଧିକାର ପୂର୍ବରୁ ଉତ୍କଳୀୟ ବଣିକମାନେ ( ସାଧବ ) ସମୁଦ୍ରରେ ବୋଇତ ବାଣିଜ୍ୟ କରୁଥିବାର ଯଥେଷ୍ଟ ପ୍ରମାଣ ଅଛି । ବୁଦ୍ଧଦେବଙ୍କର ପ୍ରଥମ ଶିଷ୍ୟମାନଙ୍କ ମଧ୍ୟରୁ ତପସୁ ଓ ବଲ୍ଲିକ କଳିଙ୍ଗର ବଣିକ ଥିଲେ । ଏମାନେ ମଧ୍ୟ ବୋଇତ ବାଣିଜ୍ୟ କରୁଥିଲେ । ବୋଇତଗୁଡ଼ିକ ସାଧାରଣତଃ କାଠ ଓ ଲୁହାରେ ତିଆରି ହୁଏ । ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରୀ ଚାଣକ୍ୟ ଯେଉଁ 'ଅର୍ଥଶାସ୍ତ୍ର' ଲେଖିଥିଲେ, ତହିଁରେ ବୋଇତ ବାଣିଜ୍ୟ ଓ ପୋତନିର୍ମାଣ କଥା ଲେଖାଅଛି ! ଏହି କେତେକ ପ୍ରମାଣରୁ

ସ୍ପଷ୍ଟ ଜଣାପଡ଼େ ଯେ, ଖ୍ରୀଷ୍ଟପୂର୍ବ ୩୪ ଶତ ବର୍ଷ ଆଗରୁ ଉତ୍କଳୀୟ ଶିଳ୍ପୀମାନେ ବାସ୍ତୁ-ଶିଳ୍ପରେ ଯଥେଷ୍ଟ ଜ୍ଞାନ ଲାଭ କରିଥିଲେ ।

ପ୍ରାଚୀନ ଉତ୍କଳର ସମୁଦ୍ର କୂଳରେ ଥିବା ବନ୍ଦରଗୁଡ଼ିକ ଖ୍ରୀଷ୍ଟପୂର୍ବ ୬୩ ଶତ ବର୍ଷ ଆଗରୁ ପୂର୍ବ ଭାରତୀୟ ଉପକୂଳର ପ୍ରସିଦ୍ଧ ବନ୍ଦର ଥିବା କଥା ଗ୍ରୀକ୍ ଲେଖକ ଟଲମୀ ଲେଖିଥିଲେ । ଚାଣକ୍ୟ ଯେଉଁ ବୋଇତ ବାଣିଜ୍ୟ ଓ ପୋତନିର୍ମାଣ କଥା ଲେଖିଛନ୍ତି, ତାହା କେବଳ ଏହି ଉତ୍କଳୀୟ ବନ୍ଦରକୁ ଲକ୍ଷ୍ୟ କରି ଲେଖିଥିଲେ । କାରଣ ଉତ୍କଳକୁ ବାଦ୍ ଦେଲେ ମଗଧରେ କୌଣସି ସମୁଦ୍ର ଉପକୂଳ ନାହିଁ । ହଣ୍ଟର ମଧ୍ୟ ବୌଦ୍ଧଯୁଗର ବୋଇତ ବାଣିଜ୍ୟକୁ ଲକ୍ଷ୍ୟ କରି ଲେଖିଛନ୍ତି—'ବୌଦ୍ଧଯୁଗରେ କଳିଙ୍ଗ ବଣିକମାନେ ଅତି ବଡ଼ ବଡ଼ ନାହା ଓ ପୋତମାନ ଭାରତର ପୂର୍ବ ଓ ପଶ୍ଚିମ ଦ୍ୱୀପପୁଞ୍ଜକୁ ପଠାଇ ସେଠାରେ ବସତି ସ୍ଥାପନ କରିଥିଲେ ।' ସେ ଆହୁରି ଲେଖିଛନ୍ତି, 'ଅଷ୍ଟମ ଖ୍ରୀଷ୍ଟାବ୍ଦରେ ଚିଲିକା ବନ୍ଦରରେ ଅସଂଖ୍ୟ ପୋତ ରଖାଯାଉଥିଲା ।' ଖଣ୍ଡିଏ ଅପ୍ରକାଶିତ ତାଳପତ୍ର ପୋଥିରେ ଚିଲିକାର ବୋଇତ ସମ୍ବନ୍ଧରେ ଅନେକ କଥା ଲେଖାଅଛି । ଏହି ଲେଖାରୁ ବେଶ୍ ଜଣାଯାଏ ଯେ, ଉତ୍କଳୀୟ ଶିଳ୍ପୀମାନେ ଅଧୁନିକ ଯୁଗର ବୋଇତ, ନାହା ଓ ଯୁଦ୍ଧ ଏବଂ ସୈନ୍ୟବାହୀ ଜାହାଜ ପରି ଅସଂଖ୍ୟ ଜାହାଜ ପ୍ରଭୃତି ସେ କାଳରେ ନିର୍ମାଣ କରୁଥିଲେ । ଏସବୁ ଜାହାଜରେ ପ୍ରଧାନ ଉପାଦାନ ଥିଲା କାଠ ଓ ଲୁହା ।

ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ ମେଗାସ୍ଥିନିସ୍‌ଙ୍କ ଭାରତ ବର୍ଣ୍ଣନାରୁ ଜଣାଯାଏ ଯେ, କଳିଙ୍ଗ ବଣିକମାନେ ଲଙ୍କାଦ୍ୱୀପରୁ ଜାହାଜରେ ଅତି ବଡ଼ ହାତୀମାନ ବୁହାଇ ଏ ଦେଶକୁ ଆଣୁଥିଲେ । ଏହି ହାତୀ କଳିଙ୍ଗ ହାତୀଠାରୁ ଅତି ବଡ଼ ଥିଲା ଏବଂ ଯେଉଁ ବୋଇତରେ ହାତୀ ଅଣାଯାଉଥିଲା, ତାହାକୁ "ହାତୀ ବୋଇତ" କୁହାଯାଉଥିଲା । ଏ ଶ୍ରେଣୀର ବୋଇତ ମଧ୍ୟ କେବଳ କାଠ ଓ ଲୁହାରେ ତିଆରି ହେଉଥିଲା । ଏହି କେତେକ ଘଟଣାରୁ ଉତ୍କଳୀୟ ଶିଳ୍ପୀମାନେ ଖ୍ରୀଷ୍ଟପୂର୍ବ ଯୁଗରୁ ବାସ୍ତୁଶିଳ୍ପରେ ଦକ୍ଷତା ଲାଭ କରିଥିବା ସମ୍ଭବ ।

ବୋଇତ ନିର୍ମାଣ ବ୍ୟତୀତ ଆହୁରି ଅସଂଖ୍ୟ ପ୍ରକାରର ଶିଳ୍ପକାର୍ଯ୍ୟ କେବଳ କାଠରେ ତିଆରି ହେଉଥିଲା । ତନ୍ମଧ୍ୟରୁ ଠାକୁର ପ୍ରତିମା, ସବାରି, ହାଉଦା, ଟାମଜାନ, ବିମାନ ଓ ରଥ ପ୍ରଭୃତି ଯାନ, ଖଟ, ଚୌକି, ପଲଙ୍କ, ମେଜ ଓ ପେଡ଼ି ପ୍ରଭୃତି ଗୃହୋପକରଣ ଏବଂ ଶିଶୁମାନଙ୍କର ବିବିଧ ଖେଳନା ପ୍ରଭୃତି ଏହି ଉପାଦାନ (କାଠ)ରେ

ଉଠିଥିବ ହୁଏ । ପ୍ରାଚୀନ ଶିଳ୍ପୀମାନେ ଏ ଶ୍ରେଣୀର ଅସଂଖ୍ୟ ଶିଳ୍ପକାର୍ଯ୍ୟ କରିଥିବେ, କିନ୍ତୁ ଲୁହା ଓ ପ୍ରସ୍ତର ପରି କାଠର ଶିଳ୍ପକାର୍ଯ୍ୟ ବହୁଦିନ ଯାଏ ସ୍ଥାୟୀ ହୋଇ ରହୁ ନ ଥିବାରୁ ଆଜିକାଲି ଆମ୍ଭେମାନେ ଅତି ପ୍ରାଚୀନ ଯୁଗର କାଷ୍ଠଶିଳ୍ପ ଦେଖିବା ସୁବିଧା ପାଉ ନାହୁଁ । ଏ ଶ୍ରେଣୀର ଅଳ୍ପ କେତୋଟି ଶିଳ୍ପ ପଲ୍ଲୀବାସୀଙ୍କର ଘର, ଚୌକାଠ, ଗାଣି ଘଟା, ଓ ବଡ଼ ବଡ଼ ଡେଙ୍ଗାରେ ଦେଖାଯାଏ । ଆଧୁନିକ ଯୁଗରେ ଆମ ଦେଶବାସୀ କାଷ୍ଠଶିଳ୍ପକୁ କେତେ ଆଦର କରୁ ନ ଥିବାରୁ ଏ ଧରଣର ଶିଳ୍ପ ପ୍ରାୟ ଲୋପ ହେଉଅଛି ।

୬ଷ୍ଠ ଲିଖନ ଓ ମୌଳିକ ଚିତ୍ରଶିଳ୍ପ— କାଠ, ପଥର, ତାଳପତ୍ର ଓ ତମ୍ବା ପଟାରେ ଭିନ୍ନ ଭିନ୍ନ ଭାଷାରେ ଲେଖା (Palaeography) ଏବଂ ଭିନ୍ନ ଭିନ୍ନ ପ୍ରତିମୂର୍ତ୍ତିର ଚିତ୍ର (Hierography) ଲେଖିବା ପ୍ରଣାଳୀ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ଜାଣିଥିଲେ । ଉତ୍କଳରୁ ଆବିଷ୍କୃତ ଶତାଧିକ ତାମ୍ରଶାସନ (ତମ୍ବାପାଟିଆ) ବଙ୍ଗଦେଶର 'ଏସିଆଟିକ ସୋସାଇଟି', ପାଟଣା ଓ ଆନ୍ଧ୍ରଦେଶର 'ଐତିହାସିକ ସଙ୍ଘ' ନେଇ ସେଗୁଡିକର ପାଠୋଦ୍ଧାର କରି ପ୍ରକାଶ କରିଛନ୍ତି । ଏସବୁ ଲିପି ପାଠକଲେ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ପ୍ରାଚୀନ ଭାଷାଲିଖନଶିଳ୍ପରେ କିପରି ଦକ୍ଷତା ଲାଭ କରିଥିଲେ, ତାହା ଜାଣି ହୁଏ । ଜଉଗଡ଼ ଓ ଧଉଳି ପାହାଡ଼ର ଅଶୋକ ଶିଳାଲିପି, ହାତୀଗୁମ୍ଫାର ଖାରବେଳ ଲିପି ଏବଂ ସମ୍ବଲପୁରର 'ବିକ୍ରମ ଖୋଲ' ପ୍ରଭୃତି ଲିପି ଖ୍ରୀଷ୍ଟଜନ୍ମର ବହୁଶତ ବର୍ଷ ପୂର୍ବରୁ ଖୋଦିତ ହୋଇଥିଲା । ଏସବୁ ଲିପିର ଭାଷା ବ୍ରାହ୍ମୀ, ପାଲି, ମାଗଧୀ ବା ଅର୍ଦ୍ଧମାଗଧୀ ବୋଲି ପଣ୍ଡିତମାନେ ସ୍ଥିର କରିଛନ୍ତି । ଏଥିରୁ ଅଧିକାଂଶ ଲିପି ଉତ୍କଳୀୟ ଶିଳ୍ପୀମାନଙ୍କ ଦ୍ୱାରା ଖୋଳାଯାଇଥିବା ନିଃସନ୍ଦେହ । କଟକ ନିକଟବର୍ତ୍ତୀ 'ନଗ୍ନଜ' ପାହାଡ଼ରେ ଏକ ଅଦ୍ଭୁତ ଲିପି ଦେଖାଯାଏ । ଏହାକୁ ମୌଳିକ ଚିତ୍ର (Hierographic) ବୋଲି ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁ କହନ୍ତି । ମୌଳିକ ଚିତ୍ରଶିଳ୍ପ ପୃଥିବୀର ଅତି ପ୍ରାଚୀନ ଶିଳ୍ପ ଅଟେ । ଏ ଧରଣର ଶିଳ୍ପ ପ୍ରଥମେ ମିଶର ଦେଶରେ ଥିଲା । ଏହି ଚିତ୍ରରେ ପ୍ରଦର୍ଶିତ ଜୀବଜନ୍ତୁ, ବୃକ୍ଷଲତା ଓ କେତେକ ସାଂକେତିକ ଚିହ୍ନଦ୍ୱାରା ପୂର୍ବକାଳରେ ଐତିହାସିକ ବିବରଣୀ ଲିପିବଦ୍ଧ କରାଯାଉଥିଲା । ଏହି ଚିହ୍ନଗୁଡିକୁ ଦେଖି ଇତିହାସ ସଙ୍କଳନ କରିବା ଜ୍ଞାନ ବହୁକାଳଯାଏ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତମାନଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ପରେ ୧୭୯୯ ଖ୍ରୀଷ୍ଟାବ୍ଦରେ ମିସରର ରସେଟା (Rosetta) ନାମକ ସ୍ଥାନରୁ ଯେଉଁ ପ୍ରସ୍ତର ଖଣ୍ଡ (Rosetta Stone) ଆବିଷ୍କୃତ ହୋଇଥିଲା, ତଦ୍ଦ୍ୱାରା ଏହି ଚିହ୍ନରେ ଥିବା ଗୂଢ଼ ରହସ୍ୟ ଉଦ୍‌ଘାଟିତ ହୋଇଥିଲା ।

ମୌଳିକ ଚତ୍ରଶିଳ୍ପ ତିନି ଭାଗରେ ବିଭକ୍ତ—

(୧) ବସ୍ତୁ ଚିତ୍ରଶିଳ୍ପ, (୨) ଭାବ ଚିତ୍ରଶିଳ୍ପ ଏବଂ (୩) ଶବ୍ଦ ଚିତ୍ରଶିଳ୍ପ ।

ଭାବଚିତ୍ର ଦୁଇଭାଗରେ ବିଭକ୍ତ—ଏକଭାବ ଓ ବହୁଭାବ ଚିତ୍ର , ଗୁଣାର୍ଥ-ବୋଧକ ମୂର୍ତ୍ତିଚିତ୍ର, ଏକାଧିକ ମୌଳିକ ଅକ୍ଷର ସଂଯୋଗଦ୍ୱାରା ଶବ୍ଦ ଉଚ୍ଚାରଣ, ଏହି-ପରି ନାନାପ୍ରକାର ଥିଲା ।

ମୌଳିକ ଚିତ୍ରଶିଳ୍ପ ପୃଥିବୀର ଅତି ପ୍ରାଚୀନତମ ଭାଷାଶିଳ୍ପ ଅଟେ । ପରେ ଅକ୍ଷରଶିଳ୍ପ (Alphabets) ଅବିଷ୍କୃତ ହୋଇଥିଲା । ଉତ୍କଳରୁ ଏ ପର୍ଯ୍ୟନ୍ତ ଆବିଷ୍କୃତ ସମସ୍ତ ଲିପିଶିଳ୍ପ ଅପେକ୍ଷା ଧଉଳି ପାହାଡ଼ ଓ ଜଉଗଡ଼ର ଅଶୋକ ଲିପି ଅତି ପ୍ରାଚୀନ-ତମ ଅଟେ । ଏହି ଲିପି ଅର୍ଦ୍ଧମାଗଧି ବା ପାଲି ଭାଷାରେ ଖୋଦିତ । ଅଶୋକଙ୍କ ପୂର୍ବରୁ ପ୍ରାଚୀନ ଉତ୍କଳୀୟମାନେ କିପରି ଅକ୍ଷର ବ୍ୟବହାର କରୁଥିଲେ, ତହିଁର ପ୍ରମାଣ ନାହିଁ । ପଲ୍ଲୀଭାଷାକୁ 'ପାଲି' କୁହାଯାଏ । ସମ୍ଭବତଃ ସେ ଯୁଗରେ ଏ ଦେଶବାସୀ ଏହି ପାଲି-ଭାଷା ଜାଣିଥିଲେ । ତା ନ ହେଲେ ଧଉଳି ଓ ଜଉଗଡ଼ରେ ଏପରି ଭାଷାର ଅକ୍ଷର ଲେଖାଯିବାର ଆବଶ୍ୟକତା ନ ଥାନ୍ତା ।

ପାଲି ଭାଷା ସଙ୍ଗେ ସଙ୍ଗେ ପ୍ରାଚୀନ ଓ ଉତ୍କଳୀୟମାନେ ସଂସ୍କୃତ ଭାଷାକୁ ମଧ୍ୟ ଜାଣିଥିଲେ; କାରଣ ଉତ୍କଳରୁ ଆବିଷ୍କୃତ ହୋଇଥିବା ଅସଂଖ୍ୟ ତାମ୍ରଶାସନର ଭାଷା କେବଳ ସଂସ୍କୃତ ଅଟେ । ସଂସ୍କୃତ ପରେ ଓଡ଼ିଆ ଅକ୍ଷରର ସୃଷ୍ଟି ହୋଇଥିଲା । ପ୍ରାଚୀନ ଓଡ଼ିଆ ଅକ୍ଷରଠାରୁ ଆଧୁନିକ ଓଡ଼ିଆ ଅକ୍ଷରର ଅନେକ ପ୍ରଭେଦ ଦେଖାଯାଏ । ଓଡ଼ିଆ ଅକ୍ଷରର କ୍ରମବିକାଶ ନିମନ୍ତେ ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁଙ୍କ ପ୍ରଣୀତ "ଉତ୍କଳୀୟ ଲିପିତତ୍ତ୍ୱ" ଦେଖିବାକୁ ହେବ ।

ଓଡ଼ିଆ ବର୍ଣ୍ଣମାଳା ସୃଷ୍ଟି ହେବା ପରେ ସେହି ଅକ୍ଷରଗୁଡ଼ିକ ପ୍ରଥମରେ ଲୌହଲେଖନଦ୍ୱାରା ତାଳପତ୍ରରେ ଲେଖାହେଲା । ପ୍ରାଚୀନ କବିମାନେ ନିଜର ଗ୍ରନ୍ଥ-ଗୁଡ଼ିକୁ ଏହି ତାଳପତ୍ର ଦେହରେ ଲେଖି ରଖୁଥିଲେ । ସେ କାଳର ସବୁ ତାଳପତ୍ର ପୋଥି ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ । ତଥାପି, ଯେଉଁ କେତୋଟି ଆବିଷ୍କୃତ ହୋଇଛି, ସେଗୁଡ଼ିକରେ ମଧ୍ୟ ପ୍ରାଚୀନ କବିମାନଙ୍କର କେତୋଟି ମୌଳିକ ଚିତ୍ର-ଶିଳ୍ପ ଦେଖାଯାଏ । ଭାଷାରେ ଯେ କୌଣସି କାବ୍ୟ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ପ୍ରାଚୀନ କବିମାନେ ଏହି ବର୍ଣ୍ଣନାମୂଳକ ଚିତ୍ରଗୁଡ଼ିକ ତାଳପତ୍ର ଦେହରେ ଅତି

ସୁନ୍ଦର ଭାବରେ ଲେଖିପାରୁଥିଲେ । ଏହାଦ୍ୱାରା ସେମାନଙ୍କର ମୌଳିକ ଶିଳ୍ପଜ୍ଞାନ ସ୍ପଷ୍ଟ ପ୍ରକାଶ ପାଉଥିଲା ।

ମୌଳିକ ଶିଳ୍ପର ଆଉ ଗୋଟିଏ ନମୁନା ପ୍ରାଚୀନ ରାଜାମାନଙ୍କଦ୍ୱାରା ପ୍ରଦତ୍ତ ତାମ୍ରଶାସନଗୁଡ଼ିକରେ ଦେଖାଯାଏ । ଏହି ଶାସନଗୁଡ଼ିକରେ ରାଜାଙ୍କର ପ୍ରଶସ୍ତି ସଙ୍ଗେ ସଙ୍ଗେ ସେହି ସେହି ରାଜବଂଶର 'ସନ୍ତକ' ଓ ମୋହର ଖୋଳାଯାଇଥାଏ । ଏହି ସନ୍ତକ ଓ ମୋହରଗୁଡ଼ିକ ମଧ୍ୟ ମୌଳିକ ଶିଳ୍ପର ଅନ୍ତର୍ଭୁକ୍ତ ଅଟେ । ଯେଉଁ ଉତ୍କଳୀୟ ଶିଳ୍ପୀମାନେ ଏ ଶ୍ରେଣୀର ଶିଳ୍ପକାର୍ଯ୍ୟ ପ୍ରାଚୀନ ଯୁଗରେ କରିପାରୁଥିଲେ, ଆଜିକାଲି ସେମାନଙ୍କର ବଂଶଧର କ୍ୱଚିତ୍ ଦେଖାଯାନ୍ତି !

୭ମ ଲୁଗା ଶିଳ୍ପ—ସରୁ ଲୁଗା ପାଇଁ ଉତ୍କଳ ଚିରପ୍ରସିଦ୍ଧି ଲାଭ କରିଅଛି । କଥିତ ଅଛି, କଳିଙ୍ଗର ରାଜା ଅଯୋଧ୍ୟା ରାଜାଙ୍କୁ ଖଣ୍ଡିଏ ସୂକ୍ଷ୍ମ ବସ୍ତ୍ର ଉପହାର ଦେଇଥିଲେ । ସେହି ବସ୍ତ୍ରଖଣ୍ଡି ଜଣେ ବୌଦ୍ଧ ସନ୍ନ୍ୟାସିନୀ ପରିଧାନ କରିଥିଲେ; କିନ୍ତୁ ବସ୍ତ୍ରଖଣ୍ଡି ଏତେ ସୂକ୍ଷ୍ମ ଥିଲା ଯେ, ଲୋକେ ଏହାକୁ ହଠାତ୍ ଦେଖି ନ ପାରି ତପସ୍ୱିନୀଙ୍କୁ ଉଲଗ୍ନ ମନେ କରି ତିରସ୍କାର କଲେ । ପ୍ରାଚୀନ ଉତ୍କଳର ବସ୍ତ୍ରଶିଳ୍ପ ଅତି ଉନ୍ନତ ଧରଣର ଥିଲା ବୋଲି ପ୍ରମାଣ ଦେବାପାଇଁ ଅନେକ ଉଦାହରଣ ଦିଆଯାଇପାରେ । ଦେଶର ସ୍ଥାନେ ସ୍ଥାନେ ଦେଖାଯିବା ପ୍ରାଚୀନ ଦେବଦେବୀଙ୍କ ପ୍ରସ୍ତରମୂର୍ତ୍ତି ଗୁଡ଼ିକୁ ଦେଖିଲେ ସେ କାଳରେ ଏ ଦେଶବାସୀ କିପରି ସୁନ୍ଦର ଓ ସୂକ୍ଷ୍ମ ଲୁଗା ବ୍ୟବହାର କରୁଥିଲେ, ତାହା ଜାଣିହେବ । ମୟୂରଭଞ୍ଜରୁ ଆବିଷ୍କୃତ ଅତି ପ୍ରାଚୀନ ମୂର୍ତ୍ତିଠାରୁ ଆରମ୍ଭ କରି ଖଣ୍ଡଗିରି, ଉଦୟଗିରି ଗୁମ୍ଫାର ପ୍ରସ୍ତରମୂର୍ତ୍ତି ଦେହରେ ଏବଂ ଉତ୍କଳର ଅତି ଉତ୍କୃଷ୍ଟ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର, କୋଣାର୍କର ସୂର୍ଯ୍ୟ ମନ୍ଦିର ଦେହରେ ଥିବା ପ୍ରସ୍ତରମୂର୍ତ୍ତିଙ୍କ ପୋଷାକ ପତ୍ରଗୁଡ଼ିକରେ ଅତି ସରୁ ଓ ସୁନ୍ଦର ଧଡ଼ିକାମ ଥିବାର ଦେଖାଯାଏ । ଏହି ସୂକ୍ଷ୍ମ ଧଡ଼ିକାମର ଶିଳ୍ପ (Embroidery) ଦେଖିଲେ ବାସ୍ତବରେ ବିସ୍ମିତ ହେବାକୁ ହୁଏ ।

ଉତ୍କଳର ବସ୍ତ୍ରଶିଳ୍ପ ସମ୍ବନ୍ଧରେ ଏକାଧିକ ପ୍ରାଚୀନ କବି ନିଜର ଛନ୍ଦଗ୍ରନ୍ଥରେ ଲେଖି ଯାଇଛନ୍ତି—

"ବଂଶ ନଳୀରେ ଭରି ଲେଖି ବସନ ଦେଲେ ସୀତା ପାଇଁ ଆଣି"

(ବୈଦେହୀଶ ବିଳାସ)



୯—ପରଶୁରାମେଶ୍ୱର ମନ୍ଦିର, ଭୁବନେଶ୍ୱର

ଏହି ଢାକାର ମସ୍‌ଲିନ୍ ତିଆରି ହୃତାତ୍ ଅଷ୍ଟାଦଶ ଶତାବ୍ଦୀରେ ଆରମ୍ଭ ହୋଇ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇ ନ ଥିବ । ଏହା ଅବଶ୍ୟ ଏକାଧିକ ଶତାବ୍ଦୀର ଗବେ-ଷଣାର ଫଳ ହୋଇଥିବ । କେହି କେହି ମନେ କରନ୍ତି, ଦାକ୍ଷିଣାତ୍ୟବାସୀମାନେ କଳିଙ୍ଗ ବା ଉତ୍କଳରୁ ସୂକ୍ଷ୍ମବସ୍ତ୍ରନିର୍ମାଣ ଶିକ୍ଷା କରିଥିଲେ । ସେଥିପାଇଁ ପ୍ରାଚୀନ ତାମିଲ୍ ଭାଷାରେ ବସ୍ତ୍ରକୁ 'କଳିଙ୍ଗ' କହନ୍ତି । (କଲଯାତ୍ରା)

ସୂକ୍ଷ୍ମ ବସ୍ତ୍ରପାଇଁ ପ୍ରାଚୀନ ଉତ୍କଳ ପ୍ରସିଦ୍ଧ ଥିବାରୁ ଦ୍ୱାଦଶ ଶତାବ୍ଦୀରେ ଇଉରୋପୀୟ ବଣିକମାନେ ପ୍ରଥମେ ଏହି ଦେଶ ସଙ୍ଗେ ବାଣିଜ୍ୟ କରିଥିଲେ ଏବଂ ଏହି କାରଣରୁ ଇଂରାଜମାନେ ୧୬୩୩ ଓ ୧୬୪୨ ଖ୍ରୀଷ୍ଟାବ୍ଦରେ ଯଥାକ୍ରମେ ପିପିଲି ଓ ବାଲେଶ୍ୱରଠାରେ ନିଜର ବାଣିଜ୍ୟ କୋଠିମାନ ନିର୍ମାଣ କରିଥିଲେ । (ହଣ୍ଟର)

ଆଜିକାଲି ବିଦେଶରୁ ଅନେକ ରଙ୍ଗର ଲୁଗା ଏହି ଦେଶର ସ୍ୱରପଲ୍ଲୀରେ ଅଳ୍ପ ଶସ୍ତାରେ ବିକି ହେଉଥିବାରୁ ଏବଂ ଲୋକମାନଙ୍କର ଜାତୀୟ ବସ୍ତ୍ରଶିଳ୍ପ ପ୍ରତି ମମତା ନ ଥିବାରୁ ଉତ୍କଳରେ ବସ୍ତ୍ରଶିଳ୍ପ ମୃତପ୍ରାୟ ରହିଛି । ତଥାପି ଏହି ଦେଶର ବ୍ରହ୍ମପୁର ଓ ଓଲସିଂହ ପାଟ ଏବଂ ସମ୍ବଲପୁର ମଠା ପ୍ରଭୃତି ଗତ ୧୯୨୪ ଖ୍ରୀଷ୍ଟାବ୍ଦର ସାମ୍ରାଜ୍ୟ ପ୍ରଦର୍ଶନୀ ( British Empire Exhibition at Wembly 1924 )ରେ ଖ୍ୟାତିଲାଭ କରିଥିବା ଉତ୍କଳ ପକ୍ଷରେ କମ୍ ଗୌରବର କଥା ନୁହେଁ ।

(ମ) ଯୁଦ୍ଧାସ୍ତ୍ର—ଧନୁ, ଶର, ଖଣ୍ଡା, ତରବାରି, ଢାଲ୍, ପାଞ୍ଚି, ଓ ମୁଣ୍ଡର ଯୁଦ୍ଧାସ୍ତ୍ର (Helmet) ପ୍ରଭୃତି ପ୍ରାଚୀନ ଉତ୍କଳର ଯୋଦ୍ଧାମାନେ ବ୍ୟବହାର କରୁଥିଲେ । ଏହି ସବୁ ଯୁଦ୍ଧାସ୍ତ୍ର ପ୍ରାଚୀନ ଉତ୍କଳର ଶିଳ୍ପୀମାନେ ତିଆରି କରୁଥିଲେ । ଏ ସବୁ ଅସ୍ତ୍ରର ଚିତ୍ର ଉଦୟଗିରି ଗୁମ୍ଫା ଏବଂ କୋଣାର୍କ, ଭୁବନେଶ୍ୱର ଓ ପୁରୀ ମନ୍ଦିର ଦେହରେ ଦେଖାଯାଏ । ଉତ୍କଳର ସ୍ଥାନେ ସ୍ଥାନେ ଅନେକ ଖଣ୍ଡାଏତ ବା ପାଇକ ବଂଶଧର ବାସ କରନ୍ତି । ଏମାନଙ୍କ ଘରେ ଯେଉଁ ଖଣ୍ଡା ଓ ଢାଲ ପ୍ରଭୃତି ଅଛି, ଏଗୁଡିକ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନଙ୍କଦ୍ୱାରା ତିଆରି ହୋଇଥିଲା । ଗୋଟିଏ ଗୋଟିଏ ଖଣ୍ଡା ଓ ଢାଲର ଗଠନ ପ୍ରଣାଳୀ ଓ ତହିଁ ଉପରେ ଥିବା ସୂକ୍ଷ୍ମ ଚିତ୍ରଗୁଡିକୁ ଦେଖିଲେ ସେକାଳର ଶିଳ୍ପୀ-ମାନେ ଏ ଶ୍ରେଣୀର ଶିଳ୍ପରେ ମଧ୍ୟ କିପରି ଦକ୍ଷତା ଲାଭ କରିଥିଲେ, ତାହା ଜାଣି ହୁଏ ।

## ଉତ୍କଳର ମନ୍ଦିରଗଠନ ପ୍ରଣାଳୀ ଓ ଶିଳ୍ପଚାତୁରୀ

**ଭାରତରେ ଉତ୍କଳୀୟ ମନ୍ଦିରର ସ୍ୱାତନ୍ତ୍ର୍ୟ—**

ସମସ୍ତ ଭାରତରେ ଯେଉଁ ଭେଦଭେଦ ପ୍ରାଚୀନ ଦେବମନ୍ଦିର ଦେଖାଯାଏ, ସେଗୁଡ଼ିକୁ ନିମ୍ନ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ ।

ଭାରତୀୟ ମନ୍ଦିର

୧ ନାଗର (ଆର୍ଯ୍ୟ ଭାରତୀୟ) Indo-Aryan

୨ ବେସର

୩ କଳିଙ୍ଗ

(କ) ଦ୍ରାବିଡ଼ ଦକ୍ଷିଣ ଭାରତୀୟ (South Indian)

(ଖ) ଚାଲୁକ୍ୟ ଦକ୍ଷିଣପଶ୍ଚିମ ଭାରତୀୟ (South-west Indian)

**୧ମ ନାଗର ଶ୍ରେଣୀୟ ପ୍ରାଚୀନ ମନ୍ଦିର**—ଏ ଶ୍ରେଣୀର ମନ୍ଦିର ସମସ୍ତ ଉତ୍ତର ଭାରତରେ ପଶ୍ଚିମରେ ମଥୁରାଠାରୁ ଆରମ୍ଭ କରି ପୂର୍ବରେ ବଙ୍ଗଦେଶ ପର୍ଯ୍ୟନ୍ତ ଦେଖାଯାଏ । ପଶ୍ଚିମ ଭାରତର 'ମଥୁରା' ସହରରେ ଆର୍ଯ୍ୟ ଭାରତୀୟ ଶିଳ୍ପସ୍ଥାପତ୍ୟର ପ୍ରଥମ 'ଶିଳ୍ପସଙ୍ଘ' ଥିଲା । ଏହା ପରେ 'ଗାନ୍ଧାର' ଓ 'ଗୁପ୍ତ' ଶିଳ୍ପସଙ୍ଘର ସୃଷ୍ଟି ହୋଇଥିଲା । ଏପରି ଏତାଧିକ ନୂତନ ଶିଳ୍ପସଙ୍ଘ ସୃଷ୍ଟି ହେବାରୁ ଏ ଶ୍ରେଣୀର ମନ୍ଦିର ଗୁଡ଼ିକରେ ଅନେକ ନୂତନ ଆକାରପ୍ରକାର ମଧ୍ୟ ଦେଖାଗଲା । କେତୋଟି ମନ୍ଦିର ଆଧୁନିକ ଦୋତାଲା ପକ୍କା ଘରଠାରୁ ଆରମ୍ଭ କରି ସ୍ତର ସ୍ତର ହୋଇ କଳସ୍ତମ୍ଭ ଉଚ୍ଚ ଥିବାର ଦେଖାଗଲା । ଅଥଚ କେତୋଟି ମନ୍ଦିରରେ ଉଚ୍ଚ ଉଚ୍ଚ ଶିଖର ବା ଅର୍ଦ୍ଧ ବର୍ତ୍ତୁଳାକାର ଛାତ କିମ୍ବା ସାଧାରଣ ଶିଖରବିହୀନ ଛାତ ଥିବାର ଦେଖାଗଲା । ଏ ଶ୍ରେଣୀର ଅସଂଖ୍ୟ ମନ୍ଦିର ଉତ୍ତର ଭାରତର ବିଭିନ୍ନ ସ୍ଥାନରେ ଅଛି ଏବଂ ଏ ସବୁ ଶ୍ରେଣୀର ମନ୍ଦିରକୁ 'ନାଗର' ବା 'ଆର୍ଯ୍ୟ ଭାରତୀୟ' ମନ୍ଦିର କୁହାଯାଏ । ସ୍ଥାନବିଶେଷରେ ଏ ଶ୍ରେଣୀର ମନ୍ଦିରଗୁଡ଼ିକୁ ବିଭିନ୍ନ ନାମ ମଧ୍ୟ ଦିଆଯାଏ । (୪ର୍ଥ ଚିତ୍ର)

**୨ୟ ବେସର ଶ୍ରେଣୀର ପ୍ରାଚୀନ ମନ୍ଦିର**—ଏ ଶ୍ରେଣୀର ମନ୍ଦିର ଦୁଇ-ଭାଗରେ ବିଭକ୍ତ ।

(କ) ଦକ୍ଷିଣ ଭାରତୀୟ ବା 'ଦ୍ରାବିଡ଼' ଦେଶୀୟ ମନ୍ଦିର । ଏଗୁଡ଼ିକ ମାନ୍ଦ୍ରାଜର ବିଭିନ୍ନ ଜିଲ୍ଲାରେ ଦେଖାଯାଏ । ପ୍ରତ୍ୟେକ ଦ୍ରାବିଡ଼ ମନ୍ଦିରର ମୂଳପତ୍ତନ 'ଚତୁରସ୍ର' ବା ସମଚତୁଷ୍କୋଣ ଥାଏ ଏବଂ ଉପରିଭାଗଗୁଡ଼ିକ ସ୍ତର ସ୍ତର ହୋଇ 'ପାଣ୍ଡ୍ଭାଣ୍ଡ' ପରି ଦେଖାଯାଏ । ଏହି ପାଣ୍ଡ୍ଭାଣ୍ଡ ସଦୃଶ ସ୍ତରଗୁଡ଼ିକୁ ଦକ୍ଷିଣବାସୀ 'ଗୋପୁରମ୍' କହନ୍ତି ।

(ଖ) ଦକ୍ଷିଣପଶ୍ଚିମ ଭାରତୀୟ ବା 'ଚାଲୁକ୍ୟ' ଦେଶୀୟ ମନ୍ଦିର । ଏଗୁଡ଼ିକ ମହାରାଷ୍ଟ୍ର ଦେଶରେ ପ୍ରଚୁର ଦେଖାଯାଏ । ଦକ୍ଷିଣ ଭାରତୀୟ ଓ ଏହି ଚାଲୁକ୍ୟ ମନ୍ଦିର ମଧ୍ୟରେ ବେଶି କିଛି ପ୍ରଭେଦ ନ ଥାଏ । କେବଳ ଚାଲୁକ୍ୟର ମୂଳପତ୍ତନ 'ତାରା' ପରି ନିର୍ମିତ ହୁଏ । (୫ମ ଚିତ୍ର)

୩ୟ କଳିଙ୍ଗଦେଶର ପ୍ରାଚୀନ ମନ୍ଦିର – ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ଭାରତୀୟ ମନ୍ଦିରଠାରୁ ଉତ୍କଳର ବିଭିନ୍ନ ପୁରପଲ୍ଲୀରେ ଥିବା ମନ୍ଦିରଗୁଡ଼ିକ ସମ୍ପୂର୍ଣ୍ଣ ପୃଥକ୍ ଦେଖାଯାଏ । ଅଳ୍ପ କେତୋଟି ମନ୍ଦିରରେ ପ୍ରଥମ ବା ଦ୍ୱିତୀୟ ଶ୍ରେଣୀର ଶିଳ୍ପସ୍ଥାପତ୍ୟ ବା ଗଠନପ୍ରଣାଳୀ ଦେଖାଗଲେ ସୁଦ୍ଧା ସମସ୍ତ ଉତ୍କଳରେ ଥିବା ପ୍ରାଚୀନ ମନ୍ଦିରଗୁଡ଼ିକୁ ଦେଖିଲେ ଏ ଦେଶର ଶିଳ୍ପୀମାନେ ନିଜର ସମ୍ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ରକ୍ଷାକରି ଏସବୁ ମନ୍ଦିର ନିର୍ମାଣ କରିଥିବା ଜଣାଯାଏ । ଅଳ୍ପ କେତେ ଜଣ ସଂକୀର୍ଣ୍ଣମନା ଓ ସ୍ୱାର୍ଥାନ୍ଧ ସମାଲୋଚକ ପ୍ରାଚୀନ ଉତ୍କଳୀୟ ମନ୍ଦିରଗୁଡ଼ିକ ବୈଦେଶିକ ମନ୍ଦିର ଅନୁକରଣରେ ନିର୍ମିତ ହୋଇଥିବାର କହନ୍ତି; କିନ୍ତୁ ପ୍ରକୃତରେ ଉତ୍କଳ ବ୍ୟତୀତ ଭାରତ କିମ୍ବା ପୃଥିବୀର ଅନ୍ୟ କୌଣସି ଦେଶରେ ଉତ୍କଳୀୟ ମନ୍ଦିରର ନମୁନା ଆଦୌ ଦେଖାଯାଏ ନାହିଁ । ଏହି କାରଣରୁ ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ନିଜର ସମ୍ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ରକ୍ଷାକରି ଏସବୁ ମନ୍ଦିର ନିର୍ମାଣ କରିଥିଲେ ବୋଲି ନିଃସନ୍ଦେହରେ କୁହାଯାଇପାରେ । (୬ଷ୍ଠ ଚିତ୍ର)

ଉତ୍କଳର କେତେକ ଗଡ଼ଜାତ ଜଙ୍ଗଲରେ ଖ୍ରୀଷ୍ଟପୂର୍ବ ଯୁଗର ଅତି ପ୍ରାଚୀନ ସୂର୍ଯ୍ୟ, ନାଗମାତା, ବୌଦ୍ଧ ଓ ଜୈନମୂର୍ତ୍ତିଗୁଡ଼ିକ ଥିବାର ପୂର୍ବ ଅଧ୍ୟାୟରେ କୁହାଯାଇଛି; କିନ୍ତୁ ସେହି ଯୁଗର କୌଣସି ଦେବମନ୍ଦିର ଏ ପର୍ଯ୍ୟନ୍ତ ସେହି ସ୍ଥାନଗୁଡ଼ିକରେ ଆବିଷ୍କୃତ ହୋଇ ନାହିଁ । ଯେଉଁ ଶିଳ୍ପୀମାନେ ଖ୍ରୀଷ୍ଟପୂର୍ବ ୩୪ ଶତବର୍ଷ ତଳେ ଅତି ସୁନ୍ଦର ସୁନ୍ଦର ଦେବମୂର୍ତ୍ତିମାନ ନିର୍ମାଣ କରିପାରୁଥିଲେ, ସେମାନେ ଯେ ସେହି ଦେବ-ମୂର୍ତ୍ତିଙ୍କ ପାଇଁ ଉପଯୁକ୍ତ ମନ୍ଦିର ନିର୍ମାଣ କରିଥିବେ, ସନ୍ଦେହ ନାହିଁ; କିନ୍ତୁ ସେସବୁ

କୌଣସି ପ୍ରାଚୀନ ମନ୍ଦିର ଅଭାବରେ ଖ୍ରୀଷ୍ଟପୂର୍ବ ଯୁଗର ଶିଳ୍ପୀମାନେ କେଉଁ ଶ୍ରେଣୀର ମନ୍ଦିର ନିର୍ମାଣ କରୁଥିଲେ, କହିବାର ଏକ୍ଷଣି ସୁବିଧା ନାହିଁ ।

ଖ୍ରୀଷ୍ଟପୂର୍ବ ଯୁଗର କୌଣସି ହିନ୍ଦୁ ମନ୍ଦିର ଉତ୍କଳରେ ନ ଥିଲେହେଁ ସେହି ସମୟର କେତେକ ଜୈନ ଗୁମ୍ଫା ଦେଖାଯାଏ । ଏହି ଗୁମ୍ଫା ସମ୍ବନ୍ଧରେ ପରବର୍ତ୍ତୀ ଅଧ୍ୟାୟରେ ବିସ୍ତୃତ ବର୍ଣ୍ଣନା ଦିଆଯିବ ।

ପ୍ରୋକ୍ତ ଜୈନ ଗୁମ୍ଫାଗୁଡ଼ିକ ଖ୍ରୀଷ୍ଟପୂର୍ବ ୩।୪ ଶତବର୍ଷ ତଳେ ନିର୍ମିତ ହୋଇଥିବାର ପ୍ରମାଣ ଅଛି । ତତ୍ପରେ ପ୍ରାୟ ୭।୮ ଶତାବ୍ଦୀ ଯାଏ ଉତ୍କଳରେ କୌଣସି ଦେବମନ୍ଦିର ନିର୍ମିତ ହୋଇଥିବାର ପ୍ରମାଣ ନାହିଁ । କାରଣ ଖ୍ରୀଷ୍ଟଜନ୍ମର ପ୍ରଥମଠାରୁ ୭ମ ଅବ୍ଦ ମଧ୍ୟରେ ନିର୍ମିତ ହୋଇଥିବା କୌଣସି ଦେବମନ୍ଦିର ଉତ୍କଳରେ ନାହିଁ । ପରେ ୮ମ ଶତାବ୍ଦୀରେ ନିର୍ମିତ ମନ୍ଦିର ଦେଖିବାକୁ ପାଉଁ । ୮ମ ଶତାବ୍ଦୀଠାରୁ ଅଦ୍ୟ-ସୁଦ୍ଧା ଉତ୍କଳର ବିଭିନ୍ନ ସ୍ଥାନଙ୍କରେ ଯେଉଁ ଯେଉଁ ଦେବମନ୍ଦିର ନିର୍ମିତ ହୋଇଛି, ସେଗୁଡ଼ିକୁ ଯଥାକ୍ରମରେ ନିମ୍ନ କେତେକ ଶ୍ରେଣୀରେ ବିଭକ୍ତ କରାଯାଇପାରେ ।

| ଶ୍ରେଣୀ | ସମୟ | ମନ୍ଦିରର ନାମ ଓ ସ୍ଥାନ | ବିଶେଷତ୍ୱ |
| --- | --- | --- | --- |
| ୧ । | ୮ମ ଶତାବ୍ଦୀ | ୧। ପରଶୁରାମେଶ୍ୱର, ଭୁବନେଶ୍ୱର<br>୨ । ମୁକ୍ତେଶ୍ୱର ”<br>୩ । ରକ୍ଷଗୃଡ଼— ବୌଦ୍ଧଗୟା<br>(ଶୈବ ଓ ବୌଦ୍ଧ ମନ୍ଦିର) | ଏ ଶ୍ରେଣୀର ମନ୍ଦିରରେ ଗୋଟିଏ ବିମାନ ଓ ତହିଁ ସମ୍ମୁଖରେ ମଣ୍ଡପ ଥାଏ । ମୁକ୍ତେଶ୍ୱର ମନ୍ଦିରର ମଣ୍ଡପ ସାଧାରଣ ପୀଢ଼ ଦେଉଳ ପରି ଦେଖାଯାଏ । |
| ୨ । | ” | କାପାଳିନୀ ବା ଭୁବନେଶ୍ୱର ବୋଲ୍‌ତାଳ ଦେଉଳ | ଏହାର ବିମାନ ଛାତ ଦାକ୍ଷ ଦେଶୀୟ ଗୋପୁରମ୍ ସଦୃଶ । ସମ୍ମୁଖରେ ମଣ୍ଡପ । |
| ୩ । | ୮।୯ମ ଶତାବ୍ଦୀ | କୁଟାଇଲିଙ୍ଗ, ନୀଳକଣ୍ଠେଶ୍ୱର, ଚନ୍ଦ୍ରଶେଖର — ଶିରଘ ମନ୍ଦରଭଙ୍ଗ<br>ଭୁବନେଶ୍ୱରର ଅନେକ ଛୋଟ ମନ୍ଦିର | ଏ ଶ୍ରେଣୀର ମନ୍ଦିରର ଗୋଟିଏ ବିମାନ ଏବଂ ସମ୍ମୁଖରେ ଛୋଟିଆ ଅନ୍ତରାଳ ଥାଏ । |

| ଶ୍ରେଣୀ | ସମୟ | ମନ୍ଦିରର ନାମ ଓ ସ୍ଥାନ | | ବିଶେଷତ୍ୱ |
|---|---|---|---|---|
| ୪ । | ୧୦।୧୧ଶ ଶତାବ୍ଦୀ | ଲିଙ୍ଗରାଜ<br>ଅନନ୍ତବାସୁଦେବ<br>ପାର୍ବତୀ | ଭୁବନେଶ୍ୱର | ଏ ଶ୍ରେଣୀର ମନ୍ଦିରରେ ଯଥାକ୍ରମେ ବିମାନ, ମୁଖଶାଳା, ନାଟମନ୍ଦିର ଓ ଭୋଗମଣ୍ଡପ ଦେଖାଯାଏ । |
| | | ବିରଜା ମନ୍ଦିର | ଯାଜପୁର | |
| ୫ । | ୧୧ଶ | ରାଜାରାଣୀ | ଭୁବନେଶ୍ୱର | ଏହା ଉତ୍ତରଭାରତୀୟ 'ନାଗର' ଶ୍ରେଣୀସ୍ଥ ମନ୍ଦିର । ଏହାର ବିମାନର ଚତୁର୍ଦ୍ଦିଗରେ ଏକାଧିକ ଛୋଟ ଛୋଟ ବିମାନ ସଦୃଶ ସୂକ୍ଷ୍ମ କାରୁକାର୍ଯ୍ୟ ଖଞ୍ଜାଯାଇଛି । ସମ୍ମୁଖରେ ଛୋଟ ମଣ୍ଡପ ଅଛି । |
| ୬ । | ୧୧।୧୨ଶ " | ଜଗନ୍ନାଥ ମନ୍ଦିର<br>ଲକ୍ଷ୍ମୀଙ୍କ ମନ୍ଦିର | ପୁରୀ | ଏ ଶ୍ରେଣୀର ମନ୍ଦିରରେ ଯଥାକ୍ରମେ ବିମାନ, ମୁଖଶାଳା, ନାଟମନ୍ଦିର ଓ ଭୋଗମଣ୍ଡପ ଦେଖାଯାଏ । |
| ୭ । | ୧୨।୧୩ଶ " | ସୂର୍ଯ୍ୟମନ୍ଦିର | କୋଣାର୍କ | ଏହି ମନ୍ଦିରରେ ବିମାନ ଓ ମୁଖଶାଳା ଏକତ୍ର ଦେଖାଯାଏ ଏବଂ ମୁଖଶାଳାର କିଛି ଦୂରରେ ନାଟମନ୍ଦିର ନିର୍ମିତ ହୋଇଛି । |

କୋଣାର୍କର ପ୍ରସିଦ୍ଧ ସୂର୍ଯ୍ୟମନ୍ଦିର ପରେ ଅର୍ଥାତ୍ ୧୩।୧୪ଶ ଶତାବ୍ଦୀ ପରେ ଉତ୍କଳରେ ଯେଉଁ ସବୁ ମନ୍ଦିର ନିର୍ମିତ ହୋଇଛି, ସେଗୁଡ଼ିକ ସ୍ୱତନ୍ତ୍ର ପ୍ରଣାଳୀ ବା ପଦ୍ଧତି ଅନୁସାରେ ନିର୍ମିତ ହୋଇଥିଲା । ଏ ଶ୍ରେଣୀର ମନ୍ଦିରଗୁଡ଼ିକରେ ପୂର୍ବ ଉତ୍କଳୀୟ ପଦ୍ଧତି ଆଦୌ ଦେଖାଯାଏ ନାହିଁ । ଅଧିକାଂଶ ମନ୍ଦିରରେ ରେଖବିମାନ ଦେଖାଯାଏ ନାହିଁ । ବିମାନ (ରେଖଦେଉଳ) ବଦଳରେ 'ପୀଢ଼ ଦେଉଳ' ନିର୍ମାଣ କରି ତନ୍ମଧ୍ୟରେ ଠାକୁରଙ୍କ ମୂର୍ତ୍ତି ରଖାଯାଇଥାଏ । ଉତ୍କଳୀୟ ମନ୍ଦିରର ନିର୍ମାଣପ୍ରଣାଳୀରେ ଏହି

ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ଏକାଧିକ ବୈଦେଶିକ ପ୍ରଣାଳୀର ମନ୍ଦିର ମଧ୍ୟ ଏଠାରେ ନିର୍ମିତ ହୋଇଅଛି । ଏପରି ବୈଦେଶିକ ପ୍ରଭାବର ପ୍ରଧାନ କାରଣ ଉତ୍କଳର ସ୍ୱାଧୀନତା ଲୋପ ଏବଂ ଉତ୍କଳର ପୁରପଲ୍ଲୀରେ ଚୈତନ୍ୟ ଦେବଙ୍କ ପ୍ରଚାରିତ ବୈଷ୍ଣବ ଧର୍ମ ବୋଲି ନିଃସନ୍ଦେହରେ କୁହାଯାଇପାରେ । ଉତ୍କଳର ପଲ୍ଲୀବାସୀ ଏହି ନୂତନ ଧର୍ମକୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ନିଜ ସଞ୍ଚିତ ଧନର ସଦ୍‌ବ୍ୟବହାର(?) କରିବା ନିମନ୍ତେ ଦେଶର ପ୍ରତ୍ୟେକ ପୁରପଲ୍ଲୀରେ ବୈଷ୍ଣବ ମନ୍ଦିରମାନ ନିର୍ମାଣ କରୁଥିଲେ । ଏହି ଶ୍ରେଣୀର ମନ୍ଦିର ନିର୍ମାଣ କରିବାପାଇଁ ବିଶେଷ କିଛି ଖର୍ଚ୍ଚ ହେଉ ନ ଥିଲା । ସାଧାରଣ କୁଡ଼ିଆ ଘରଠାରୁ ଖଣ୍ଡିଏ ଟିକିଏ ଉପରି ହୋଇଥିବା ଘର ହେଲେ ହେଲା । ଏଥିରେ କୌଣସି ସୂକ୍ଷ୍ମ ବା ସୁନ୍ଦର ଶିଳ୍ପକାର୍ଯ୍ୟ ହେବା ଦରକାର ନ ଥିଲା । ଏଥିପାଇଁ ଉତ୍କଳର ପ୍ରତ୍ୟେକ ସ୍ଥାନରେ ଏ ଶ୍ରେଣୀର ମନ୍ଦିର ଆଜିକାଲି ଦେଖାଯାଏ । ପୁଣି କାରିଗରଙ୍କ ରୁଚି ଅନୁସାରେ ଏହି ମନ୍ଦିରର କାନ୍ଥକାଡ଼ରେ ଅନେକ ବୈଦେଶିକ ଚିହ୍ନ, ଛବି ବା ଫଟୋ ମଧ୍ୟ ରଖାଯାଇଥାଏ ।

କୋଣାର୍କର ସୂର୍ଯ୍ୟ ମନ୍ଦିର ନିର୍ମାଣ ପରେ ପ୍ରାୟ ଦୁଇଶତ ବର୍ଷ ପର୍ଯ୍ୟନ୍ତ, (ଉତ୍କଳରେ ମୋଗଲ ଓ ମରହଟ୍ଟା ସ୍ୱତନ୍ତ୍ର) ଅନ୍ୟ କୌଣସି ମନ୍ଦିର ଏ ଦେଶରେ ନିର୍ମିତ ହୋଇଥିବାର ଜଣାଯାଏ ନାହିଁ । ପରେ ଯେଉଁ ଦେବଦେବ ମନ୍ଦିର ନିର୍ମିତ ହୋଇଛି, ସେଗୁଡ଼ିକ ୧୬ଶ ଓ ୨୦ଶ ଶତାବ୍ଦୀ ମଧ୍ୟରେ ଅଛେ । ଏହି ସମୟର ମନ୍ଦିର ଗୁଡ଼ିକୁ ନିମ୍ନ ପାଞ୍ଚ ଶ୍ରେଣୀରେ ବିଭକ୍ତ କରାଯାଇପାରେ ।

୧ । ପୀଢ଼ ଦେଉଳ—ଗୋଟିଏ ମାତ୍ର ପୀଢ଼ ଦେଉଳରେ ଠାକୁର ରହନ୍ତି ।

୨ । ପୀଢ଼ ଦେଉଳ—ସମ୍ମୁଖରେ ଯଥାକ୍ରମେ ମୁଖଶାଳା ଏବଂ ଏକ ବା ଦୁଇଗୋଟି ମଣ୍ଡପ ଦେଖାଯାଏ ।

୩ । ରେଖ ଦେଉଳ ଓ ସମ୍ମୁଖରେ ଖଣ୍ଡିଏ ମଣ୍ଡପ କିମ୍ବା ଗୋଟିଏ ପୀଢ଼ ଦେଉଳ ।

ଉପର୍ଯ୍ୟୁକ୍ତ ଉତ୍କଳୀୟ ଦେଉଳ କେବଳ ଇଟା କିମ୍ବା ଇଟା ଓ ପ୍ରସ୍ତରରେ ନିର୍ମିତ ହୋଇଥାଏ, କିନ୍ତୁ କୌଣସି ଚାରୁକାର୍ଯ୍ୟ ଦେଖାଯାଏ ନାହିଁ । ସମୁଦାୟ ଅଂଶର ଭିତର ଓ ବାହାର ଚୂନ ପଲସ୍ତରା ହୋଇଥାଏ । କେତେକ ମନ୍ଦିରରେ ପ୍ରାଚୀନ ମନ୍ଦିର ଗୁଡ଼ିକର ପ୍ରତିମୂର୍ତ୍ତି ସଂଗ୍ରହ କରି ରଖିଥିବାର ଦେଖାଯାଏ ।

୪। ସାଧାରଣ ହିନ୍ଦୁର (ଖପରଛାଇ) ଘର ଓ ସମ୍ମୁଖରେ ମଣ୍ଡପ ଥାଏ।

୫। ସାଧାରଣ ଛପର ଘର—କେତୋଟିରେ ସମ୍ମୁଖ ମଣ୍ଡପ ଥାଏ। ଏ ଶ୍ରେଣୀର ମନ୍ଦିରଗୁଡ଼ିକ ସାଧାରଣ ଗୃହୀମାନେ ନିର୍ମାଣ କରି ତହିଁରେ ନିଜର ଇଷ୍ଟଦେବଙ୍କୁ ପୂଜା କରନ୍ତି। ଏ ଶ୍ରେଣୀର ମନ୍ଦିରରେ ମଧ୍ୟ କୌଣସି ଶିଳ୍ପକାର୍ଯ୍ୟ ଦେଖାଯାଏ ନାହିଁ।

ଉତ୍କଳରେ ଶ୍ରୀଚୈତନ୍ୟ ପ୍ରଚାରିତ ବୈଷ୍ଣବଧର୍ମ ନିଜର ଆଧିପତ୍ୟ ବିସ୍ତାର କରିବା ସଙ୍ଗେ ସଙ୍ଗେ ବଙ୍ଗଦେଶର ଏକାଧିକ ରଜା, ମହାରଜା ଏବଂ ଧନୀ ମତ-ପ୍ରଚାରକମାନେ ଏହି ଦେଶର ସ୍ଥାନେ ସ୍ଥାନେ କେତୋଟି ମନ୍ଦିର ନିର୍ମାଣ କରିଥିଲେ। ଏ ଶ୍ରେଣୀର ମନ୍ଦିରଗୁଡ଼ିକୁ ଗୌଡ଼ୀୟ ମନ୍ଦିର କୁହାଯାଏ। ଏ ଧରଣର ମନ୍ଦିରରେ ଉତ୍କଳୀୟ ଶିଳ୍ପଚାତୁରୀ ଆଦୌ ଦେଖାଯାଏ ନାହିଁ। ଆଜିକାଲି ପୁରୀ, ଭୁବନେଶ୍ୱର ଓ କଟକ ସହରରେ ଏ ଶ୍ରେଣୀର କେତେକ ମନ୍ଦିର ଆମ୍ଭେମାନେ ଦେଖିଥାଉ। (୬ମ ଚିତ୍ର)

ବଙ୍ଗବାସୀଙ୍କ ପରି ଉତ୍କଳରେ ବାସ କରୁଥିବା କେତେକ ଧନୀ ମାରୱାଡ଼ି ମଧ୍ୟ ଏଠାର ପ୍ରସିଦ୍ଧ ସହରଗୁଡ଼ିକରେ ଏକାଧିକ ଦେବମନ୍ଦିର ନିର୍ମାଣ କରିଛନ୍ତି। କିନ୍ତୁ ଏ ଶ୍ରେଣୀର ମନ୍ଦିରରେ ଉତ୍କଳୀୟ ଶୈଳୀର ଆଦୌ ନ ଥାଏ।

**ଉତ୍କଳୀୟ ଦେଉଳର ପ୍ରକାରଭେଦ**— ଉତ୍କଳରେ ଯେତେ ପ୍ରାଚୀନ ମନ୍ଦିର ଦେଖାଯାଏ, ସେ ସବୁ 'ଶିଳ୍ପଶାସ୍ତ୍ର'ର ନିୟମାନୁସାରେ ନିର୍ମିତ ହୋଇଥିବାର ଜଣାଯାଏ; କିନ୍ତୁ ଏ ପର୍ଯ୍ୟନ୍ତ ସେ ଯୁଗର କୌଣସି 'ଶିଳ୍ପଶାସ୍ତ୍ର' ଅକ୍ଷୁଣ୍ଣ ଭାବରେ ସଂଗ୍ରହ କରାଯାଇ ନାହିଁ। ଯାହା କିଛି ସଂଗ୍ରହ ହୋଇଅଛି, ସେହି ଗ୍ରନ୍ଥଗୁଡ଼ିକୁ ପାଠ କଲେ ପ୍ରାଚୀନ ଉତ୍କଳର ଦେଉଳଗୁଡ଼ିକ ନିମ୍ନ ପାଞ୍ଚ ଶ୍ରେଣୀରେ ବିଭକ୍ତ ଥିବାର ଦେଖାଯାଏ।

**୧ମ ଏକରଥ ଦେଉଳ**—ଏହି ଶ୍ରେଣୀର ଦେଉଳକୁ 'ଚତୁରସ୍ର' ବା ଚତୁର୍ଭୁଜାକାର ଦେଉଳ କୁହାଯାଏ। ପ୍ରାଚୀନ ଯୁଗରେ ଏହାକୁ କନିଷ୍ଠ ଶ୍ରେଣୀର ଦେଉଳ କୁହାଯାଉଥିଲା; କିନ୍ତୁ ଆଜିକାଲି ଏ ଶ୍ରେଣୀର ଦେଉଳ କ୍ୱଚିତ୍ ଦେଖାଯାଏ। ଭୁବନେଶ୍ୱରର ବୋଇତାଳ ଓ ପଶ୍ଚିମେଶ୍ୱରଙ୍କ 'ଜଗମୋହନ' ଏହି ଶ୍ରେଣୀର ଦେଉଳ ଅଟେ। (୮ମ ଚିତ୍ର)

୨ୟ ତ୍ରିରଥ ଦେଉଳ—କେବଳ ବ୍ରାହ୍ମଣମାନେ ଏ ଶ୍ରେଣୀର ଦେଉଳ ନିର୍ମାଣ କରିବାପାଇଁ ଶିଳ୍ପଶାସ୍ତ୍ରରେ ନିୟମ ଅଛି। ଭୁବନେଶ୍ୱରର ପଶୁରାମ ମନ୍ଦିର ଏହି ଶ୍ରେଣୀର ଅଟେ। ( ୯ମ ଚିତ୍ର )

୩ୟ ପଞ୍ଚରଥ ଦେଉଳ—କ୍ଷତ୍ରିୟମାନେ ଏ ଶ୍ରେଣୀର ଦେଉଳ ନିର୍ମାଣ କରିବା ବିଧି ଅଛି। ଉତ୍କଳର ସ୍ୱାଧୀନ ରଜାମାନେ ଯେଉଁ ଦେବଦେବ ମନ୍ଦିର ନିର୍ମାଣ କରିଥିଲେ, ସେ ସମସ୍ତ ଏହି ଶ୍ରେଣୀର ଅଟେ। ଉତ୍କଳର ଅତି ବଡ଼ ଓ ଅତି ସୁନ୍ଦର ଭୁବନେଶ୍ୱରର ଲିଙ୍ଗରାଜ, ପୁରୀର ଜଗନ୍ନାଥ ଓ କୋଣାର୍କର ସୂର୍ଯ୍ୟ ମନ୍ଦିରକୁ 'ପଞ୍ଚରଥ' କୁହାଯାଏ। ( ୧୦ମ, ୧୧ଶ, ୧୨ଶ ଓ ୧୩ଶ ଚିତ୍ର ) ❋

୪ର୍ଥ ସପ୍ତରଥ ଦେଉଳ—କେବଳ ବୈଶ୍ୟ ଜାତର ଲୋକମାନେ ଏ ଶ୍ରେଣୀର ମନ୍ଦିର ନିର୍ମାଣ କରିବାପାଇଁ ଶିଳ୍ପଶାସ୍ତ୍ରରେ ନିୟମ ଅଛି। ଭୁବନେଶ୍ୱରର ଶାକ୍ଷି ଦେଉଳ (ବିମାନ ଓ ଜଗମୋହନ) ଏହି ଶ୍ରେଣୀର ଦେଉଳ ଅଟେ। ଉତ୍କଳର ଅନ୍ୟ କୌଣସି ସ୍ଥାନରେ ଏ ଶ୍ରେଣୀର ମନ୍ଦିର ଦେଖାଯାଏ ନାହିଁ।

୫ମ ନବରଥ ଦେଉଳ—ଶୂଦ୍ର ଜାତର ଲୋକମାନେ ଏ ଶ୍ରେଣୀର ମନ୍ଦିର ନିର୍ମାଣ କରିପାରନ୍ତି। ଉତ୍କଳର କୌଣସି ସ୍ଥାନରେ ଏ ଧରଣର ମନ୍ଦିର ନିର୍ମିତ ହୋଇଥିବାର ଜଣାଯାଏ ନାହିଁ।

ଉପର୍ଯ୍ୟୁକ୍ତ ପାଞ୍ଚ ଶ୍ରେଣୀର ଦେଉଳ ବ୍ୟତୀତ ଅତି ପ୍ରାଚୀନ କାଳରେ ନିମ୍ନ-ଲିଖିତ ୧୧ଶ ଶ୍ରେଣୀର ଦେବମନ୍ଦିର ନିର୍ମିତ ହେଉଥିବାର 'ଭୁବନପ୍ରକାଶ ନାମକ' ଅପ୍ରକାଶିତ ପୋଥିରେ ବର୍ଣ୍ଣିତ ଅଛି; କିନ୍ତୁ ସେପରି କୌଣସି ମନ୍ଦିର ଆଜିକାଲି ଉତ୍କଳରେ ଦେଖାଯାଏ ନାହିଁ।

| | | |
|---|---|---|
| ୧ ମହାମେରୁ | ୪ ଭଦ୍ର | ୭ ନନ୍ଦୀ |
| ୨ ମନ୍ଦାର | ୫ କେଶରୀ | ୮ ବୃଷ |
| ୩ କୈଳାସ | ୬ ଶ୍ରୀବତ୍ସ | ୯ ହଂସ |
| ୧୦ ଗରୁଡ଼ | ୧୧ ଲଘୁବିମାନ | |

❋ ଭୁବନେଶ୍ୱରର ରାଜାରାଣୀ ମନ୍ଦିରରେ କୌଣସି ଦେବମୂର୍ତ୍ତି ନାହିଁ; ତଥାପି ଏହାର ଶିଖରରେ ଥିବା 'ଚକ୍ର'କୁ ଦେଖିଲେ ଏହା କେବଳ ବିଷ୍ଣୁ ମନ୍ଦିର ବୋଲି କୁହାଯାଇପାରେ।



୧୨—ସୂର୍ଯ୍ୟ ମନ୍ଦିର, କୋଣାର୍କ
[ ପଛରେ ଥିବା ବିମାନ ଭାଙ୍ଗିଯାଇଛି ]



୧୭—ରୁକ୍ମଣୀ ମନ୍ଦିର, ଭୁବନେଶ୍ବର

## ଉତ୍କଳୀୟ ମନ୍ଦିରର ବିଭିନ୍ନ ଭାଗ

ଉତ୍କଳର ଅଧିକାଂଶ ଅତି ବଡ଼ ପ୍ରାଚୀନ ମନ୍ଦିରମାନଙ୍କରେ ନିମ୍ନ ଚେତେ-ଗୋଟି ଅଂଶ ଦେଖାଯାଏ—

୧ମ—ବିମାନ ଦେଉଳ ବା ବଡ଼ ଦେଉଳ—ଏହା ମଧ୍ୟରେ ଠାକୁର ରହନ୍ତି ଓ ଭୋଗଭୋଗ ହୁଏ ।

୨ୟ—ମୁଖଶାଳା, ଜଗମୋହନ, ମୋହନ ବା ଅନ୍ତରାଳ—ଏହା ମଧ୍ୟରେ ଯାତ୍ରୀ, ଭକ୍ତ ପ୍ରଭୃତି ଦଣ୍ଡାୟମାନ ହୋଇ ଦେବଦର୍ଶନ କରନ୍ତି ।

୩ୟ—ନାଟମନ୍ଦିର ବା ମଣ୍ଡପ—ଏହା ମଧ୍ୟରେ ନର୍ତ୍ତକୀ ବା ଦେବ-ଦାସୀମାନେ ନୃତ୍ୟ କରିବାର ଦେଖାଯାଏ । ଅଧିକାଂଶ ଯାତ୍ରୀ ଏହା ମଧ୍ୟରେ ରହି ଦେବଦର୍ଶନ କରିଥାନ୍ତି ।

୪ର୍ଥ—ଭୋଗମଣ୍ଡପ—ଏଠାରେ ଯାତ୍ରୀମାନଙ୍କର ପ୍ରଦତ୍ତ 'ଛତ୍ରଭୋଗ' ଠାକୁରଙ୍କ ନିକଟରେ ଭୋଗ ହୁଏ । (୧୪ଶ ଚିତ୍ର)

**ବିଶିଷ୍ଟ ପରିଚୟ—**

୧ମ **ବିମାନ**—ବିମାନର ଗୋଟିଏ ମାତ୍ର ଦ୍ୱାର ପୂର୍ବଦିଗ କିମ୍ବା ମୁଖଶାଳା ଆଡ଼କୁ ଖୋଲିଥାଏ । ଆଧୁନିକ ଯୁଗର ଅଧିକାଂଶ ମନ୍ଦିରରେ ବିମାନର ପୂର୍ବ, ଉତ୍ତର, ଦକ୍ଷିଣ ଦିଗରେ ମଧ୍ୟ ଦ୍ୱାର ଖୋଲିଥିବାର ଦେଖାଯାଏ । ବିମାନର ବିଭିନ୍ନ ଅଂଶ—

(କ) ବିମାନର ଭିତର—ପ୍ରତ୍ୟେକ ବିମାନର ଭିତରେ ଗୋଟିଏ ସମ-ଚତୁର୍ଭୁଜ କ୍ଷେତ୍ର ବା ଚତୁରସ୍ର ଚଟାଣ ଥାଏ । * ଏହି ଚଟାଣର ଉପରୁ ବିମାନର କାନ୍ଥ ନିର୍ମିତ ହୋଇଥାଏ । ଏହି କାନ୍ଥ ଦୁଇ ଭାଗରେ ବିଭକ୍ତ ।

(୧) ବାଡ଼, (୨) ଗଣ୍ଡି ବା ଛାତ । ଭୂପତନଠାରୁ ଅଧାଉଚ୍ଚ ପର୍ଯ୍ୟନ୍ତ ଯେଉଁ କାନ୍ଥ ସଳଖ ଭାବରେ ଠିଆ ହୋଇଥାଏ, ତାହାକୁ 'ବାଡ଼' କୁହାଯାଏ । ସବୁ ଶ୍ରେଣୀର ଦେଉଳରେ ଏହି ବାଡ଼ ଥିବାର ଦେଖାଯାଏ । ଏହି ବାଡ଼ର ଉଚ୍ଚତା ସାଧାରଣତଃ ୮।୧୦ ଫୁଟଠାରୁ ୩୦ ଫୁଟ ପର୍ଯ୍ୟନ୍ତ ଥିବାର ଦେଖାଯାଏ । କୋଣାର୍କ ସୂର୍ଯ୍ୟ ମନ୍ଦିରର ବିମାନ ବାଡ଼ ୩୦ ଫୁଟ ଉଚ୍ଚ ଅଟେ । ଉତ୍କଳର ଅନ୍ୟ କୌଣସି ମନ୍ଦିରର ବିମାନରେ ଏତେ ଉଚ୍ଚତାବିଶିଷ୍ଟ ବାଡ଼ ଥିବାର ଦେଖାଯାଏ ନାହିଁ ।

* ଶିଳ୍ପଶାସ୍ତ୍ରରେ ପ୍ରାଚୀନ ବିମାନର ଷୋଳ ପ୍ରକାର ଚଟାଣ ଥିବାର ବର୍ଣ୍ଣିତ ଅଛି । ତନ୍ମଧ୍ୟରୁ ସମଚତୁରସ୍ର ବା ଚତୁର୍ଭୁଜ ଚଟାଣ ଉତ୍କୃଷ୍ଟ ଅଟେ ।

ବାଡ଼ ଉପରୁ ଢଳସଯାଏ ଯେଉଁ କାନ୍ଥ ଗଢ଼ାଯାଏ, ତାହାକୁ ଗାଜ ବା ଛାତ କୁହାଯାଏ । ଉତ୍କଳୀୟ ମନ୍ଦିରର ପ୍ରତ୍ୟେକ ଭମାନ ଛାତକୁ 'ରେଖ ଦେଉଳ' ବା 'ରେଖଛାତ' କୁହାଯାଏ । ଏହି ରେଖାଂଶ ବାଡ଼ ଉପରୁ ମନ୍ଦିର ମଧ୍ୟକୁ କ୍ରମବକ୍ର ହୋଇ ନିର୍ମିତ ହୁଏ । "ରେଖାଚାର ମନ୍ଦିର ନିର୍ମାଣରେ ସମୁଦାୟ ମନ୍ଦିରର ଭାର-କେନ୍ଦ୍ର ଏବଂ ସଙ୍ଗେ ପ୍ରତ୍ୟେକ ପ୍ରସ୍ତର ଖଣ୍ଡ ଏବଂ ପ୍ରତ୍ୟେକ କାନ୍ଥର ଭାରକେନ୍ଦ୍ର ପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ପ୍ରତ୍ୟେକ କାନ୍ଥ ଭିତରକୁ କ୍ରମବକ୍ର ଥିବାରୁ ପାର୍ଶ୍ୱବର୍ତ୍ତୀ ଦୁଇ କାନ୍ଥର ସଂଘର୍ଷଦ୍ୱାରା ତାହା ସ୍ଥିର ହୁଏ । ସୁତରାଂ ପ୍ରତ୍ୟେକ କାନ୍ଥ ଉପରେ ଏକ ସମୟରେ ଦୁଇଟି ଶକ୍ତି ସାଧାରଣତଃ କାର୍ଯ୍ୟ କରେ—୧ମ, ପୃଥିବୀର ମାଧ୍ୟାକର୍ଷଣ ପ୍ରଭାବ । ତଦ୍ଦ୍ୱାରା କାନ୍ଥଗୁଡ଼ିକ ସର୍ବଦା ତଳକୁ ପଡ଼ିବା ପାଇଁ ଉନ୍ମୁଖ । ୨ୟ—ମାଧ୍ୟାକର୍ଷଣ ବଳକୁ ପ୍ରତିହତ କରିବା ପାଇଁ ପ୍ରତ୍ୟେକ କାନ୍ଥ ଉପରେ ପାର୍ଶ୍ୱବର୍ତ୍ତୀ ଦୁଇ କାନ୍ଥର ସଂଘର୍ଷଣ । ମନ୍ଦିରର ପ୍ରଥମ ଅବସ୍ଥାରେ ଏହି ଦୁଇଗୋଟି ପ୍ରତିଦ୍ୱନ୍ଦ୍ୱୀ ଶକ୍ତିର ପ୍ରଭାବ ସମାନ ଥାଏ । ସୁତରାଂ କାନ୍ଥଗୁଡ଼ିକ ଭାଙ୍ଗି ପଡ଼େ ନାହିଁ; କିନ୍ତୁ ମାଧ୍ୟାକର୍ଷଣକୁ ସାହାଯ୍ୟ କରିବା ପାଇଁ ଯଦି ପ୍ରବଳ ସ୍ରୋତ ବା ଅନ୍ୟ କୌଣସି ବାହ୍ୟ ଶକ୍ତି କାନ୍ଥ ଉପରେ କାର୍ଯ୍ୟ କରେ, ତାହା ହେଲେ କାନ୍ଥଗୁଡ଼ିକ ଭାଙ୍ଗି ପଡ଼ିବା ଅବଶ୍ୟମ୍ଭାବୀ । ଏହି ଦ୍ୱିବିଧ ଶକ୍ତିକୁ ପ୍ରତିହତ କରିବା ନିମନ୍ତେ ତଳଅଡ଼ୁ ସୁଦୃଢ଼ ଖମ୍ବ ଗଢ଼ି କାନ୍ଥଗୁଡ଼ିକୁ ଆଶ୍ରୟ ଦେବା କିମ୍ବା ଉପରୁ ଅତିଶୟ ଗୁରୁଭାରଦ୍ୱାରା ସେଗୁଡ଼ିକୁ ଚପି ରଖିବା ଅବଶ୍ୟକ । ରେଖ ଦେଉଳର ଭିତର ପରିସର ସେତେ ଅଧିକ ନୁହେଁ; ଅଧିକ ଦେଉଳ ବିଶେଷ ଉଚ୍ଚ । ସୁତରାଂ ଦେଉଳ ଭିତରେ ଖମ୍ବ ଗଢ଼ି କାନ୍ଥକୁ ଆଶ୍ରୟ ଦେବା ସୁବିଧା ନୁହେଁ । + + ତେଣୁ ରେଖଦେଉଳମାନଙ୍କ ଉପରେ 'ଆମଳକଶିଳା', 'କଳସ' ପ୍ରଭୃତି ଗୁରୁଭାର ସ୍ୱରୂପ ନିର୍ମିତ ହୋଇଥାଏ । ଏମାନଙ୍କ ଦ୍ୱାରା ମନ୍ଦିର ଯେପରି ସୁନ୍ଦର ଦେଖାଯାଏ, ସେହିପରି ସୁଦୃଢ଼ ଓ ସ୍ଥାୟୀ ହୋଇ ବହୁକାଳ ରହିପାରେ । ଯଦି ରେଖ ଦେଉଳରୁ ଉକ୍ତ ଉପରସ୍ଥିତ ଭାର ବାହାର କରି ନିଆଯାଏ, ତା ହେଲେ ସମୁଦାୟ ଦେଉଳର ପତନ ଅନିବାର୍ଯ୍ୟ । ସ୍ଥିତି ଓ ଗତି ବିଜ୍ଞାନରେ ଓଡ଼ିଆମାନଙ୍କର ଏକ୍ରୁପ ଅଦ୍ଭୁତ ଅଭିଜ୍ଞତା ଓଡ଼ିଶାର ସମସ୍ତ ରେଖ ଦେଉଳମାନଙ୍କରେ ସବିଶେଷ ଭାବରେ ଦେଖାଯାଏ ।" ( କୋଣାର୍କ )

ବିମାନର ବାଡ଼ ଓ ଛାତ ଭିତର କାନ୍ଥରେ କୌଣସି ପ୍ରକାର ଶିଳ୍ପକାର୍ଯ୍ୟ ନ ଥାଏ । "ଦେଉଳ ଭିତରେ କୌଣସି ଚିତ୍ର ଖୋଦିତ ହୋଇ ନାହିଁ । ଏଠାରେ ମଧ୍ୟ

ତନ୍ତ୍ରର ଆବଶ୍ୟକତା ନାହିଁ । ଅନ୍ତର୍ଦେଶରେ ଭକ୍ତିର ଆବଶ୍ୟକତା, ଏଠାରେ ବାହ୍ୟ ସୌନ୍ଦର୍ଯ୍ୟର ଆବଶ୍ୟକତା ନାହିଁ । ସୁତରାଂ ସେମାନେ ଜାଣି ଶୁଣି ଭିତର ପ୍ରଦେଶରେ କୌଣସି ଚିତ୍ର ଖୋଦିତ କରି ନ ଥିଲେ ।" (ପ୍ରାଚୀନ ଉତ୍କଳ)

ବାଢ଼ ଓ ରେଖ ବ୍ୟତୀତ ବିମାନ ଭିତରେ ଆଉ କେତେକ ଅଂଶ ଦେଖାଯାଏ । ତନ୍ମଧ୍ୟରୁ—(୧) ଚଟାଣ—ଏହା ସମଚତୁର୍ଭୁଜ କ୍ଷେତ୍ର ଅଟେ । ଅଧିକାଂଶ ପ୍ରାଚୀନ ଦେଉଳର ଚଟାଣ କଳା ମୁଗୁନି ପ୍ରସ୍ତରରେ ଛାଉଣି ହୋଇଥାଏ । ଆଧୁନିକ ମନ୍ଦିରର ଏହି ଚଟାଣ, ଚୂନ, ଗୋଡ଼, ଇଟାଖଣ୍ଡ, ସିମେଣ୍ଟ ବା ଟାଇଲରେ ଛାଉଣି ହୁଏ ।

(୨) ସିଂହାସନ -ଉତ୍କଳର ପ୍ରତ୍ୟେକ ବିଷ୍ଣୁ ମନ୍ଦିରର ବିମାନ ଭିତରେ ପଶ୍ଚିମକାନ୍ଥକୁ ଅଳ୍ପ ଛାଡ଼ି ଠାକୁରଙ୍କ ପାଇଁ ଗୋଟିଏ ସିଂହାସନ ଥାଏ । ଏହି ସିଂହାସନ ପ୍ରସ୍ତର କିମ୍ବା ଇଟାରେ ନିର୍ମିତ ହୋଇଥାଏ । କୋଣାର୍କର ସିଂହାସନ କଳା ମୁଗୁନି ପଥରରେ ତିଆରି ହୋଇଥିଲା । ଏହାର ଲମ୍ବ ୧୧ ଫୁଟ, ଓସାର ୬ଫୁଟ ୬ଇଞ୍ଚ ଏବଂ ଉଚ୍ଚତା ୪ଫୁଟ ୮ଇଞ୍ଚ । ଉତ୍କଳର ଅନ୍ୟ କୌଣସି ସିଂହାସନ ଏତେ ବଡ଼ ବା ଏତେ ସୁନ୍ଦର ଦେଖାଯାଏ ନାହିଁ । କୋଣାର୍କର ସିଂହାସନ ମନ୍ଦିରର ଅନ୍ୟ ସ୍ଥାନ ପରି ଅତି ସୁନ୍ଦର ଓ ସୂକ୍ଷ୍ମ କାରୁକାର୍ଯ୍ୟଖଚିତ ହୋଇଅଛି । ବିଷ୍ଣୁ ମନ୍ଦିରର ସିଂହାସନ ଭିତରେ ଅନେକ ଧନରତ୍ନ ରଖାଯାଇଥିଲା । ତେଣୁ ଏହି ସିଂହାସନକୁ 'ରତ୍ନବେଦି' ବା 'ରତ୍ନ-ସିଂହାସନ' କୁହାଯାଏ । ଶିବମନ୍ଦିରରେ କୌଣସି ସିଂହାସନ ନ ଥାଏ । ସିଂହାସନ ବଦଳରେ ଚଟାଣର ମଧ୍ୟଭାଗରେ ଶିବଙ୍କର ଶକ୍ତି ଓ ପାଷାଣ ଲିଙ୍ଗ ରଖିବା ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ ହୋଇଥାଏ । ଶକ୍ତିର ଆକୃତି ସମଚତୁର୍ଭୁଜ କ୍ଷେତ୍ର ପରି । ଏହା ମଧ୍ୟରେ ଲିଙ୍ଗ ରଖାଯାଇଥାଏ । ଏହି ଶକ୍ତିର ଉତ୍ତରଦିଗକୁ ପାତିକ ନଳା ଥାଏ । ଶକ୍ତି ଓ ଲିଙ୍ଗ ଉପରେ ଢଳାଯିବା ପାଣି ଓ ଦୁଗ୍ଧ ପ୍ରଭୃତି ଏହି ନଳା ମଧ୍ୟଦେଇ ବାହାରେ ଥିବା ପାତିକ କୁଣ୍ଡକୁ ବହିଯାଏ ।

ଭୁବନେଶ୍ୱର ଲିଙ୍ଗରାଜ ଦେଉଳର ଶକ୍ତି ଓ ଶିବଲିଙ୍ଗ ପରି ବଡ଼ ଲିଙ୍ଗ ଓ ଶକ୍ତି ଉତ୍କଳର ଅନ୍ୟ କୌଣସି ଶିବ ମନ୍ଦିରରେ ଦେଖାଯାଏ ନାହିଁ । ଏଠାର ଶକ୍ତି ବୃଦ୍ଧାକାର । ବିମାନ ଭିତର ପଶ୍ଚିମ କାନ୍ଥରେ ପାର୍ବତୀଙ୍କ ଧାତୁ-ପ୍ରତିମା ରଖିବା ପାଇଁ ଗୋଟିଏ 'ପଣା' ବା 'ଘର' ଥାଏ । ବିମାନ ଭିତରର ଚାରିଗୋଟି କାନ୍ଥ ମଧ୍ୟରୁ କେବଳ ପୂର୍ବପାଖ କାନ୍ଥରେ ଦ୍ୱାର ଥାଏ । ଏହି ଦ୍ୱାରର ଦ୍ୱାରବନ୍ଧ ବା ଚଉକାଠ

ଢାଠ ଲମ୍ବା ପ୍ରସ୍ତରରେ ଖୋଦିତ ହୋଇଥାଏ । କୋଣାର୍କ ବିମାନର ଉଦ୍ଭାଠ ବଳା ମୁଗୁନୀ ପଥରରେ ଖୋଦିତ ହୋଇଥିଲା ଓ ତହିଁରେ ଅତି ସୂକ୍ଷ୍ମ କାରୁକାର୍ଯ୍ୟ ହୋଇଥିଲା ।

**(ଗ) ବିମାନ ବାହାର**—ପୂର୍ବେ ବର୍ଣ୍ଣିତ ହୋଇଅଛି ଯେ, ପ୍ରାଚୀନ ଉତ୍କଳର ଅଧିକାଂଶ ଦେବମନ୍ଦିର ସ୍ୱାଧୀନ ନୃପତିମାନଙ୍କଦ୍ୱାରା ନିର୍ମିତ ହୋଇଥିଲା ଏବଂ ଏମାନେ ପ୍ରକୃତ କ୍ଷତ୍ରିୟ ଥିବାରୁ ଏହି ସବୁ ମନ୍ଦିର ଶିଳ୍ପଶାସ୍ତ୍ରର ନିୟମାନୁସାରେ 'ପଞ୍ଚରଥ' ଆକାରରେ ନିର୍ମାଣ କରାଇଥିଲେ । ବିମାନ କାନ୍ଥର 'ପାଗ' ବା 'ଭାଗ' ସଂଖ୍ୟା ଅନୁସାରେ ଦେଉଳର ନାମ ଯଥାକ୍ରମେ ଏକରଥ, ତ୍ରିରଥ, ପଞ୍ଚରଥ ପ୍ରଭୃତି ହୋଇଥାଏ । ସାଧାରଣ 'ପଞ୍ଚରଥ' ବିମାନର ପାଗଗୁଡିକର ନାମ—

ମଧ୍ୟ ପାଗ='ରାହା ପାଗ'

ରାହାପାଗର ଦୁଇ ପାର୍ଶ୍ୱରେ—ଦୁଇଗୋଟି 'ଅନର୍ଥ ପାଗ'

ଦୁଇ ଅନର୍ଥ ପାଗର ବାହାରେ—ଦୁଇଗୋଟି 'କୋଣକ ପାଗ'

(୧୬ଶ ଚିତ୍ର)

ପ୍ରତ୍ୟେକ ପାଗ ବାଡ଼ ଉପରୁ ବେକି ପର୍ଯ୍ୟନ୍ତ ସମାନ ଭାଗରେ ଗଢ଼ା ଏହି । ବିମାନର ଭିତର କାନ୍ଥ ପରି ବାହାର କାନ୍ଥ ମଧ୍ୟ ଦୁଇ ଭାଗରେ ବିଭକ୍ତ:—(୧) ବାଡ଼—ଭୂପତନ ବା ପୀଠ ଉପରୁ ଗଢ଼ାଯାଏ, (୨) ରେଖାଂଶ ବା ଗଣ୍ଡି—ବାଡ଼ ଉପରୁ ବେକି ପର୍ଯ୍ୟନ୍ତ ବିସ୍ତୃତ ବିମାନର ଡାଳକୁ ରେଖ ବା ଗଣ୍ଡି କୁହାଯାଏ । ପ୍ରତ୍ୟେକ ପ୍ରାଚୀନ ବିମାନର ବାହାର ଅଂଶରେ ବିଭିନ୍ନ କାରୁକାର୍ଯ୍ୟ ଦେଖାଯାଏ । ଏଥିମଧ୍ୟରୁ ସ୍ତ୍ରୀ, ପୁରୁଷ, ବୃକ୍ଷ, ଲତା ଓ ପଶୁ, ପକ୍ଷୀ ପ୍ରଭୃତି ଦୃଶ୍ୟମାନ ପ୍ରଧାନ । କେତେକ ସ୍ଥାନରେ ଯୁଦ୍ଧକ୍ଷେତ୍ରର ଦୃଶ୍ୟ, ଗୁରୁଶିଷ୍ୟଙ୍କର ଅଧ୍ୟାପନା ଦୃଶ୍ୟ ଓ କ୍ରୀଡ଼ା କୌତୁକର ଦୃଶ୍ୟ ମଧ୍ୟ ଦେଖାଯାଏ । ଉତ୍କଳର ସବୁ ପ୍ରାଚୀନ ମନ୍ଦିର ଅପେକ୍ଷା କୋଣାର୍କର ସୂର୍ଯ୍ୟ ମନ୍ଦିର ବିମାନ ବାଡ଼ରେ ଥିବା କାରୁକାର୍ଯ୍ୟ ଅତି ରମଣୀୟ ଓ ସୂକ୍ଷ୍ମ ଥିଲା; କିନ୍ତୁ ତାହା ଆଜି ଭାଙ୍ଗି ଯାଇଅଛି !

## ବିମାନର ବାହାର କାନ୍ଥର ବିଭିନ୍ନ ଅଂଶ

ଶିଳ୍ପଶାସ୍ତ୍ର ଅନୁସାରେ ପ୍ରତ୍ୟେକ ବିମାନରେ ନିମ୍ନଲିଖିତ ଭାଗଗୁଡିକ ଦେଖାଯାଏ । ଏଗୁଡିକ ଭୂପତନଠାରୁ ଉପର ପତାକା ପର୍ଯ୍ୟନ୍ତ ଯଥାକ୍ରମେ (୧) ପୀଠ, (୨) ବାଡ, (୩) ରେଖ, ଡାଳ ବା ଗଣ୍ଡି (୪) ବେକି, (୫) ଆମଳକ ଶିଳା,

(୬) ଖପୁରୀ, (୭) କଳସ ପାଦ, (୮) କଳସ, (୯) କଳସ ତୋରୁ, (୧୦) କଳସ ଗ୍ରୀବ, (୧୧) ବଷ୍ଟି, ମନ୍ଦିରରେ—ଚକ୍ର; ଶିବ ଓ ଶକ୍ତି ମନ୍ଦିରରେ ତ୍ରିଶୂଳ, (୧୨) ଧ୍ୱଜା ବା ପତାକା । (୧୬ଶ ଚିତ୍ର)

ପ୍ରୋକ୍ତ ପ୍ରତ୍ୟେକ ଭାଗର ବର୍ଣ୍ଣନା ନିମ୍ନରେ ପ୍ରଦତ୍ତ ହେଲା—

୧ । ପୀଠ—ଭୂପୃଷ୍ଠର ଉପରେ ଯେଉଁ ଉପାଦାନ ରଖି ତହିଁ ଉପରେ ସମାନର ବାଡ଼ ବା ତାଳୁ ଗଠିତ ହୁଏ, ସେହି ଉପାଦାନକୁ 'ପୀଠ' ବା 'ପୃଷ୍ଠ' କୁହାଯାଏ । ପ୍ରାଚୀନ ଉତ୍କଳର ପ୍ରାୟ ସବୁ ମନ୍ଦିରରେ ଏପରି ପୀଠ ଦେଖାଯାଏ । କିନ୍ତୁ କୌଣସି ମନ୍ଦିରର ପୀଠ କୋଣାର୍କ ସୂର୍ଯ୍ୟ ମନ୍ଦିର ପରି ଅଳ୍ପ ରୂପ ଓ କାରୁକାର୍ଯ୍ୟପୂର୍ଣ୍ଣ ଦେଖାଯାଏ ନାହିଁ । କୋଣାର୍କର ବଡ଼ ଦେଉଳ ସୂର୍ଯ୍ୟଦେବଙ୍କ ସକାଶେ ନିର୍ମିତ ଥିବାରୁ ସୂର୍ଯ୍ୟଙ୍କର ଯାନ—( ରଥ ) ଓ ବାହାନର ( ସପ୍ତାଶ୍ୱ ) ମୂର୍ତ୍ତି ମଧ୍ୟ ଏହି ପୀଠ ଉପରେ ଦେଖାଯାଏ । କୋଣାର୍କ ପୀଠ ଉପରେ ଆଠ ଫୁଟଠାରୁ ୧୨ ଫୁଟ ପର୍ଯ୍ୟନ୍ତ ବିସ୍ତୃତ ବାରଣ୍ଡା ଓ ତହିଁ ଉପରେ ଏକ ପ୍ରସ୍ତ ପ୍ରସ୍ଫୁଟିତ ଓଲଟା ପଦ୍ମଫୁଲର ପ୍ରତିକୃତି ଦେଖାଯାଏ । ପ୍ରତ୍ୟେକ ପୀଠରେ ନିମ୍ନ ପାଞ୍ଚଗୋଟି ଭାଗ ଥାଏ । (୧) ତଳ ଜଙ୍ଘା (୨) ତଳ ବସୁନ୍ଧ୍ରୀ, (୩) ବନ୍ଧନା, (୪) ଉପର ବସୁନ୍ଧ୍ରୀ, (୫) ଉପର ଜଙ୍ଘା । ଏହି ପାଞ୍ଚ ଭାଗକୁ 'ପାଞ୍ଚକାମ' ବା 'ପଞ୍ଚକର୍ମ' କୁହାଯାଏ ।

୨ । ବାଡ—ପୀଠ ଉପରେ ବାଡ଼ ନିର୍ମିତ ହୁଏ । ଏହି ବାଡ଼ ମଧ୍ୟ ଉପରେ ଥିବା ଚାଳ ପରି ଏକ, ତିନ, ପାଞ୍ଚ, ସାତ ବା ନଅ ଭାଗରେ ବିଭକ୍ତ ହୋଇଥାଏ ଏବଂ ପୀଠର ପଞ୍ଚକର୍ମ ପରି ଏଠାରେ ମଧ୍ୟ 'ପଞ୍ଚକର୍ମ' ଥାଏ । ଉତ୍କଳର ଅଧିକାଂଶ ପ୍ରାଚୀନ ମନ୍ଦିରର ବାଡ଼ ଦେହରେ ଅତି ସୁନ୍ଦର କାରୁକାର୍ଯ୍ୟ ଦେଖାଯାଏ ।

୩ । ରେଖ ବା ଗଣ୍ଡି—ବାଡ଼ ଉପରୁ ବେକି ପର୍ଯ୍ୟନ୍ତ ଗଠିତ ହୋଇଥିବା ଦେଉଳ ତାଳୁକୁ 'ରେଖ' କୁହାଯାଏ । ଏହି ରେଖ ମନ୍ଦିର ଭିତରକୁ କିପରି କ୍ରମ-ବକ୍ର ହୋଇ ତିଆରି ହୁଏ, ସେ ବିଷୟ ପୂର୍ବରୁ ବର୍ଣ୍ଣିତ ହୋଇଅଛି । ରେଖର ମଧ୍ୟ ପାଗ ବା 'ରାହାପାଗ'ର ତଳଭାଗରେ ପ୍ରତ୍ୟେକ ମନ୍ଦିରର ପାର୍ଶ୍ୱଦେବତାମାନଙ୍କ ପାଇଁ ସ୍ଥାନ ଥାଏ । ଉତ୍କଳୀୟ ମନ୍ଦିରର ଉତ୍ତର, ପଶ୍ଚିମ ଓ ଦକ୍ଷିଣ ଦିଗରେ ତିନ ଗୋଟି ପାର୍ଶ୍ୱଦେବତାଙ୍କର ପ୍ରସ୍ତରମୂର୍ତ୍ତି ରଖାଯାଇଥାଏ । ରାହାପାଗର ମଧ୍ୟଭାଗରେ ଦେଉଳ ତାଳୁ ଦେହରୁ ବାହାରି ଗୋଟିଏ ପ୍ରକାଣ୍ଡ ପ୍ରସ୍ତର ପୀଠ ଉପରେ ଗଜସିଂହର ପ୍ରତିମୂର୍ତ୍ତି ଥାଏ । ଏହି ଗଜସିଂହ ସମାନର ଚତୁର୍ଦ୍ଦିଗରେ ଥିବା ରାହାପାଗରେ ଦେଖାଯାଏ ।

୪ । **ବେକି**—ଦେଉଳର ରେଖ ବା ଚାଳ ମନ୍ଦିର ଉପରକୁ ଆସ୍ତେ ଆସ୍ତେ କ୍ରମଶଃ ହୋଇଯିବାରୁ ଗୋଟିଏ ସ୍ଥାନରେ ଏମାନଙ୍କ ଚାରି ବାନ୍ଧ ଏକତ୍ର ହୁଏ । ଏହି ସ୍ଥାନକୁ 'ବେକି' କୁହାଯାଏ ।

୫ । **ଆମଳକ ଶିଳା**—ରେଖ ଦେଉଳର ଗଣ୍ଡି ପ୍ରସ୍ତରଗୁଡ଼ିକୁ ଦୃଢ଼ଭାବରେ ଧରି ରଖିବା ପାଇଁ ବେକି ଉପରେ ଯେଉଁ ପ୍ରକାଣ୍ଡ ପ୍ରସ୍ତର ରଖାଯାଏ, ତାହାର ନାମ 'ଆମଳକ ଶିଳା' । ଏହି ଶିଳାର ଗଠନ ଅଁଳା ଫଳ ପରି ହୋଇଥିବାରୁ ଏହାକୁ ଆମଳକ ଶିଳା କୁହାଯାଏ ।

୬ । **ଖପୁରୀ**—ଆମଳକ ଶିଳା ଉପରେ ଖପୁରୀ ଦେଇ ଏମାନଙ୍କ 'ମୃଣ୍ଡବନ୍ଧା' ବା ଦେଉଳ ମୁଦ ହୁଏ । ନିର୍ମାତାମାନେ ଅନେକ ଧନରତ୍ନ ଏହି ଆମଳକ ଶିଳା ଓ ଖପୁରୀ ତଳେ ରଖି ଦେଉଳ ମୁଦ କରନ୍ତି ।

୭ । **କଳସ ପାଗ**—ଏହା କଳସର ଏକ ଅଂଶ ହୋଇ ଗଢ଼ାଯାଏ ଓ ଖପୁରୀ ଦେହର ଗୋଟିଏ ଗର୍ଭରେ ରଖାଯାଏ ।

୮ । **କଳସ ଡୋରି**—କଳସର ମଧ୍ୟଭାଗକୁ ଟିକିଏ ଚକଡ଼ା କରି ଗୋଟିଏ କଡ଼ଡ଼ା ବା ଡୋରିରୂପେ ଗଢ଼ାଯାଏ । ତଦ୍ଦ୍ୱାରା କଳସର ସୌନ୍ଦର୍ଯ୍ୟବୃଦ୍ଧି ହୁଏ ।

୯ । **କଳସ**—କଳସ ପାଗ ଉପରେ ମାଠିଆ ବା କଳସ ଆକୃତି ପରି ଗଠିତ ଅଂଶକୁ 'କଳସ' ବା 'କୁମ୍ଭ ପଥର' କୁହାଯାଏ । କୋଣାର୍କର ସୂର୍ଯ୍ୟ ମନ୍ଦିର ଉପରେ ଥିବା 'କଳସ' ପ୍ରାୟ ୨୦୦୦ ଟନ୍ ଓଜନ ଥିଲା ଓ ତାହା ଚୁମ୍ବକ ପଥରଦ୍ୱାରା ଗଠିତ ହୋଇଥିବାର କିମ୍ବଦନ୍ତୀ ଅଛି ।

୧୦ । **କଳସ ଘଡ଼ି**—କଳସ ଉପରେ ପୋତାଯିବା ଚକ୍ର ବା ତ୍ରିଶୂଳକୁ ଟାଣ କରି ରଖିବା ପାଇଁ ଏଠାରେ ଖଣ୍ଡିଏ ପ୍ରସ୍ତର ଥାଏ । ଏଥିରେ ଥିବା ଗର୍ତ୍ତ ଦେହରେ ଚକ୍ର ବା ତ୍ରିଶୂଳ ପୋତାଯାଏ ।

୧୧ । **ଚକ୍ର**—ଉତ୍କଳର ସବୁ ବିଷ୍ଣୁ ମନ୍ଦିରରେ ଚକ୍ର ଥାଏ । ଏହାକୁ 'ପଦ୍ମ' ମଧ୍ୟ କହନ୍ତି । ବିଷ୍ଣୁଙ୍କର ଗୋଟିଏ ପ୍ରଧାନ ଆୟୁଧର ନାମ ଚକ୍ର । ମନ୍ଦିରର ଉପରେ ଥିବା ଚକ୍ର 'ପଦ୍ମ' ପରି ନିର୍ମିତ ହୋଇଥିବାରୁ ଏହାକୁ 'ପଦ୍ମ' ବୋଲି କହନ୍ତି । ପୁରୀ ମନ୍ଦିରର ଉପରେ ଥିବା ଚକ୍ରକୁ 'ନୀଳଚକ୍ର' କୁହାଯାଏ । ଶିବ, ଦୁର୍ଗା ଓ ଅନ୍ୟ ଦେବୀ-ମନ୍ଦିର ଉପରେ ତ୍ରିଶୂଳ ଥାଏ । ଏହି ତ୍ରିଶୂଳ ତମ୍ବାପାତ୍ରା କହାରେ ତିଆରି ହୋଇ ଥାଏ । ତ୍ରିଶୂଳ ଶିବ ଓ ଶିବଗଣଙ୍କର ଆୟୁଧ ଅଟେ । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଉପରେ ଥିବା ତ୍ରିଶୂଳକୁ 'ପିନାକିନୀ' କୁହାଯାଏ । ଏହାର ଅର୍ଦ୍ଧାଂଶ ଚକ୍ରାକୃତି ଓ ଉପରାର୍ଦ୍ଧ ତ୍ରିଶୂଳର ଅର୍ଦ୍ଧାଂଶ ଅଟେ ।

୧୨ । ଧ୍ୱଜା—ଏମାନଙ୍କର ଶିଖରପ୍ରଦେଶରେ ଧ୍ୱଜା ଥାଏ । ଉତ୍କଳୀୟ ମନ୍ଦିରର ଏହି ଧ୍ୱଜା ବା ପତାକା ହିନ୍ଦୁଜାତିର ଚିହ୍ନ । ପ୍ରାଚୀନ ଉତ୍କଳର ଯୋଦ୍ଧାମାନେ ଏହି ଧରଣର ପତାକାକୁ ଜାତୀୟ ପତାକାରୂପେ ବ୍ୟବହାର କରୁଥିଲେ । ଆଜ ଉତ୍କଳର ପୂର୍ବ ସ୍ୱାଧୀନତା ନାହିଁ କିମ୍ବା ସେ ସ୍ତରର ଯୋଦ୍ଧା ନାହାନ୍ତି । ସେଥିପାଇଁ ଉତ୍କଳବାସୀ ନିଜର ଏହି ଜାତୀୟ ପତାକାକୁ ଭୁଲିଯାଇ ମନ୍ଦିରର ଉପର ଭାଗରେ ଯେ କୌଣସି ଧରଣର ପତାକା ବ୍ୟବହାର କରୁଅଛନ୍ତି ।

୨ । ମୁଖଶାଳା—ଏମାନଙ୍କର ପୂର୍ବ ଦିଗରେ ଥିବା ମନ୍ଦିରକୁ ମୁଖଶାଳା, ଜଗମୋହନ ବା ଅନ୍ତରାଳ କୁହାଯାଏ । ଏମାନଙ୍କର ଗଠନ ଓ ଆକୃତି ଅନୁସାରେ ମୁଖ-ଶାଳାର ଆକୃତି ଛୋଟ ବା ବଡ଼ ହୋଇଥାଏ । ଉତ୍କଳୀୟ ଶିଳ୍ପଶାସ୍ତ୍ର ଅନୁସାରେ ଏମାନଙ୍କର ଉଚ୍ଚତା ମୁଖଶାଳାର ତିନିଗୁଣ ହୋଇଥିବାର ଦେଖାଯାଏ । ପ୍ରାଚୀନ ଉତ୍କଳର ସବୁ ମୁଖଶାଳାଗୁଡିକ ପଞ୍ଚରଥ ଆକାରରେ ନିର୍ମିତ । କେବଳ ଭୁବନେଶ୍ୱରର 'ସାକ୍ଷୀ' ଦେଉଳର ମୁଖଶାଳା ଓ 'ପରଶୁରାମେଶ୍ୱର' ଦେଉଳର ମୁଖଶାଳା ଯଥାକ୍ରମେ ସପ୍ତ-ରଥ ଓ ଏକରଥାକୃତି ଅଟେ ।

**ମୁଖଶାଳାର ବିଭିନ୍ନ ଅଂଶ—**

(କ) ଚଟାଣ—ପ୍ରାୟ ଅଧି । ଶ ମୁଖଶାଳାର ଚଟାଣ ଆୟତାକାର ଦେଖା-ଯାଏ । (୧୬ଶ ଚିତ୍ର)

ଏହା ମନ୍ଦିରର ପୂର୍ବ ଦିଗରେ ଅବସ୍ଥିତ ଥାଏ । 'ପରଶୁରାମେଶ୍ୱର' ଓ 'ଗନ୍ଧ ବତୀ" ମନ୍ଦିରର ମୁଖଶାଳାକୁ 'ମଣ୍ଡପ' କୁହାଯାଏ । ଖିଚଙ୍ଗରେ ଥିବା ପ୍ରାଚୀନ ମନ୍ଦିରର ମୁଖଶାଳା କିମ୍ବା ମଣ୍ଡପ ନ ଥିଲା । ( ୧୮ଶ ଚିତ୍ର )

ଦୁଇଗୋଟି ଖମ୍ବ ଉପରେ ଖଣ୍ଡିଏ ପ୍ରସ୍ତର ନିର୍ମିତ ଚାଳ ଏମାନଙ୍କୁ ଲାଗି ରହି-ଥିଲା । ଏହାକୁ ଅନ୍ତରାଳ କୁହାଯାଉଥିଲା । ସୂର୍ଯ୍ୟ ଓ କୋଣାର୍କ ମନ୍ଦିରର ମୁଖଶାଳା ଗୁଡିକ ଚତୁରସ୍ର ବା ସମଚତୁଷ୍କୋଣ ଅଟେ ।

(ଖ) ପୀଠ—ମୁଖଶାଳାର ପୀଠ ଦେଉଳର ପୀଠ ସଙ୍ଗେ ସମାନ ଥାଏ । ଅଳ୍ପ କେତେକ ମନ୍ଦିରର ମୁଖଶାଳା ଏମାନ ତିଆରି ହେବା ପରେ ନିର୍ମିତ ହୋଇ ଥିବାରୁ ତହିଁର ପୀଠ ଏମାନ ପୀଠଠାରୁ ଉଚ୍ଚ ବା ନିମ୍ନ ସ୍ତରରେ ଦେଖାଯାଏ ।

(ଗ) ଦ୍ୱାର—ମୁଖଶାଳାର ସାଧାରଣତଃ ଦୁଇଗୋଟି ଦ୍ୱାର ଯଥାକ୍ରମେ ପୂର୍ବ ଓ ପଶ୍ଚିମ ପାଖକୁ ଖୋଲିଥାଏ । ପଶ୍ଚିମ ଦ୍ୱାର ଦେଇ ଏମାନ ମଧ୍ୟରେ ପ୍ରବେଶ କରି-

ଯାଏ । ଅନ୍ୟ କେତେକ ମନ୍ଦିରରେ ମୁଖଶାଳାର ଦକ୍ଷିଣ ଓ ପୂର୍ବ ଦିଗରେ ମଧ୍ୟ ଦ୍ୱାର ଥାଏ । * ମୁଖଶାଳାର ପୂର୍ବ ଦ୍ୱାର ଚଉକାଠ ଉପରେ ନବଗ୍ରହଙ୍କ ପ୍ରସ୍ତରମୂର୍ତ୍ତି ରଖାଯାଏ ।

(ଘ) ବାହାର ବାଡ—ବିମାନ ପରି ମୁଖଶାଳାର ପୀଠ ଉପରେ ବାଡ଼ ଥାଏ । ଏହି ବାଡ଼ପର 'ପଞ୍ଚକର୍ମ' ଶିଳ୍ପକାର୍ଯ୍ୟ ରହିଥାଏ । ମୁକ୍ତେଶ୍ୱର ଓ ପରଶୁରାମେଶ୍ୱର ଶ୍ରେଣୀୟ ମୁଖଶାଳାଗୁଡ଼ିକରେ 'ଚୈତ୍ୟ ଝରକା' ଓ ଅନ୍ୟାନ୍ୟ କାରୁକାର୍ଯ୍ୟ ରହି ଥାଏ । (୧୯ଶ ଚିତ୍ର)

(ଙ) ଛାତ—ପରଶୁରାମେଶ୍ୱର ଶ୍ରେଣୀୟ ମୁଖଶାଳାର ଛାତ ଆଧୁନିକ ମଣ୍ଡପର ଛାତ ପରି ଦେଖାଯାଏ । କିନ୍ତୁ ଏହା ଦୁଇ ସ୍ତର ହୋଇଥାଏ । ଏହି ଦୁଇ ସ୍ତର ମଧ୍ୟରେ ଥିବା ଜାଲି ଦେଇ ଆଲୋକ ଭିତରକୁ ପ୍ରବେଶ କରେ । ଅନ୍ୟ ଶ୍ରେଣୀୟ ମୁଖଶାଳାର ଛାତକୁ 'ପୀଢ଼' କୁହାଯାଏ । ଏହି ପୀଢ଼ାକୃତ ଛାତଯୋଗୁଁ ଏହି ଶ୍ରେଣୀୟ ମୁଖଶାଳାକୁ ପୀଢ଼ ଦେଉଳ କୁହାଯାଏ । ପୀଢ଼ ଦେଉଳ ଦୁଇ ପ୍ରକାର—(୧) କାଠଚାଳିଆ (୨) ନାହାଚାଳିଆ ।

୧—କାଠଚାଳିଆ ପୀଢ଼—ଏହା ଘନକ୍ଷେତ୍ରର $\frac{୨}{୩}$ ଅଂଶ । ଲିଙ୍ଗରାଜ ମନ୍ଦିର ଓ ଅନନ୍ତ ବାସୁଦେବ ମନ୍ଦିରର 'ଜଗମୋହନ' ଏହି ଶ୍ରେଣୀର ।

୨—ନାହାଚାଳିଆ ପୀଢ଼—ଘନକ୍ଷେତ୍ରର ସମାନ କିମ୍ବା ଏହାର $\frac{୫}{୭}$ ଅଂଶ ହୋଇଥାଏ । ମୁକ୍ତେଶ୍ୱର ଦେଉଳର ଜଗମୋହନ ଓ କପିଳେଶ୍ୱର ମନ୍ଦିରର ଭୋଗ-ମଣ୍ଡପ ଏହି ଶ୍ରେଣୀର ।

ପୀଢ଼ ଦେଉଳର ମୋହନ ତିନିପ୍ରକାର—

୧ । ଘଣ୍ଟାମୋହନ—ଲିଙ୍ଗରାଜ ମନ୍ଦିରରେ ଏହା ଦେଖାଯାଏ । ଏଥିରେ ଅମଳ ଶ୍ରୀ, ବିପାକ ଧାସ୍ ଓ କଳସ ଥାଏ ।

୨ । ଲତାମୋହନ—ମୁକ୍ତେଶ୍ୱର, ସିଦ୍ଧେଶ୍ୱର ଓ ରାଜରାଣୀ ମନ୍ଦିରରେ ଦେଖା-ଯାଏ । ଏଥିରେ କାନ୍ତି ନାହିଁ; ପୀଠ ଓ କଳସମାତ୍ର ଥାଏ ।

୩ । ପୀଢ଼ମୋହନ—ଜଗନ୍ନାଥ ମନ୍ଦିର ଓ ଲିଙ୍ଗରାଜଙ୍କ ନାଟମନ୍ଦିରରେ ଏହି ଶ୍ରେଣୀର ପୀଢ଼ମୋହନ ଦେଖାଯାଏ ।

* ପରଶୁରାମେଶ୍ୱର ଶ୍ରେଣୀର ମନ୍ଦିରଗୁଡ଼ିକରେ ଉତ୍ତର ଓ ପଶ୍ଚିମ ଦିଗସ୍ଥ କାନ୍ଥ-ମାନଙ୍କରେ ଦ୍ୱାର ନ ଥାଇ କେବଳ ପ୍ରସ୍ତର ନିର୍ମିତ ଜାଲି ରହିଥିବାର ଦେଖାଯାଏ ।

**ପୀଢ଼ର ଗଠନପ୍ରଣାଳୀ**—ପୀଢ଼ ବା ଛାତ ବାଡ଼ ଉପରୁ ନିର୍ମିତ ହୁଏ । ପ୍ରତ୍ୟେକ ପୀଢ଼ ୨।୩ ଲମ୍ବା ୪।୫ ଭାଗରେ ବିଭକ୍ତ ଥାଏ । ଏହି ଭାଗକୁ ସ୍ତର କୁହାଯାଏ ଏବଂ ପ୍ରତି ଦୁଇ ସ୍ତର ମଧ୍ୟରେ ଯେଉଁ ବ୍ୟବଧାନ ଥାଏ, ତାହାକୁ 'ପାଗ' କହନ୍ତି । *ପୀଢ଼ ଦେଉଳର ଛାତରେ ଏକ ପ୍ରସ୍ତ ପୀଢ଼ ଉପରେ ଅନ୍ୟ ପ୍ରସ୍ତ ପୀଢ଼ କ୍ରମେ କ୍ରମେ ଭିତରକୁ ମୁଣ୍ଡା ହୋଇ ପଡ଼ୁ ପଡ଼ୁ ଶେଷରେ ଚାଲ ବନ୍ଦ କରାଯାଏ; ଅର୍ଥାତ୍ ପୀଢ଼ ଦେଉଳର ଭିତରପାଖ ଗୋଟିଏ ଓଲଟା ସିଡ଼ି ବା ପାହାଚ ପରି ଦେଖାଯାଏ ।* (କୋଣାର୍କ) ଏପରି ସ୍ତର ସ୍ତର ହୋଇ ଗଢ଼ାଯିବାରୁ ମୁଖଶାଳାର ଉପର ଛାତ ବେଶୀ ଉଚ୍ଚ ହୁଏ ନାହିଁ । ଅତି ଅଳ୍ପ ଜାଗାରେ ଛାତ ମୁଦା ହୁଏ । କୋଣାର୍କ ଓ ପୁରୀ ଶ୍ରେଣୀୟ ମନ୍ଦିରର ମୁଖଶାଳା ଏହି ପ୍ରକାରରେ ନିର୍ମିତ । ପରଶୁରାମେଶ୍ୱର ଶ୍ରେଣୀୟ ମଣ୍ଡପର ଛାତ ତଳେ ଦୁଇ ଧାଡ଼ି ପ୍ରସ୍ତର ଖମ୍ବ ଅଛି । ଅନ୍ୟ କେତେକ ମନ୍ଦିରରେ କୌଣସି ଖମ୍ବ ନ ଥାଇ ଉପର ଛାତଟି ମଧ୍ୟ ରହିଅଛି ।

**ଛାତ ଉପରର ଅନ୍ୟାନ୍ୟ ଅଂଶ**—ପ୍ରତ୍ୟେକ ମୁଖଶାଳାର ପୀଢ଼ ବା ଛାତ ଉପରେ ନିମ୍ନ କେତେଗୋଟି ଅଂଶ କ୍ରମାନ୍ୱୟରେ ତଳରୁ ଉପରକୁ ରହିଥାଏ । ଯଥା— ୧ ଘଣ୍ଟୀବେକୀ, ୨ ଘଣ୍ଟୀ, ୩ ଘଣ୍ଟୀଃସ୍ତୁପ, ୪ ଡୋଷୀ, ୫ ଆମଳକବେକୀ, ୬ ଆମଳକଶିଳା, ୭ ଆମଳକ ଖପୁରୀ, ୮ କଳସପାଦ, ୯ କଳସ, ୧୦ ଚକ୍ର ବା ତ୍ରିଶୂଳ ୧୧ ଧ୍ୱଜା ।

(୨୦-୨୧ ଚିତ୍ର)

ପୂର୍ବବର୍ଣ୍ଣିତ ରେଖ ଦେଉଳର ଉପରଭାଗରେ ଯେତେଗୁଡ଼ିଏ ଅଂଶ ଦେଖାଯାଏ, ପୀଢ଼ମନ୍ଦିରରେ ମଧ୍ୟ ପ୍ରାୟ ସେହି ଅଂଶଗୁଡ଼ିକ ରହିଥାଏ । ଏହିସବୁ ଅଂଶଗୁଡ଼ିକ ମୁଖଶାଳାର ଛାତକୁ ଦୃଢ଼ କରି ରଖିଥାଏ ।

୩ । **ନାଟମନ୍ଦିର**—ପରଶୁରାମେଶ୍ୱର ଓ ଷିଚଙ୍ଗ୍ ଶ୍ରେଣୀୟ ମନ୍ଦିର ଏବଂ କୋଣାର୍କର ସୂର୍ଯ୍ୟମନ୍ଦିର ବ୍ୟତୀତ ଅନ୍ୟ ସବୁ ବଡ଼ ମନ୍ଦିରରେ ମୁଖଶାଳାକୁ ଲଗି ନାଟମନ୍ଦିର ରହିଥାଏ । ଅଧିକାଂଶ ନାଟମନ୍ଦିର ଚଉରସାକାରରେ ତିଆରି ହୋଇଥାଏ । ପୁରୀ ଓ ଭୁବନେଶ୍ୱରର ନାଟମନ୍ଦିର ପୀଢ଼ାକୃତି । କୋଣାର୍କର ନାଟମନ୍ଦିର ଜଗମୋହନଠାରୁ ସମ୍ପୂର୍ଣ୍ଣ ଦୂରରେ ନିର୍ମିତ ହୋଇଅଛି । ଆଧୁନିକ ମନ୍ଦିରର ନାଟମନ୍ଦିରର ଛାତ ମଣ୍ଡପ ଛାତ ପରି ଦେଖାଯାଏ ।

ନାଟମନ୍ଦିରର ବର୍ଣ୍ଣନାଂଶ—

୧ । ପୀଠ—ଭୁବନେଶ୍ୱର ଓ ପୁରୀ ପ୍ରଧାନ ମନ୍ଦିରର ବିମାନ ଓ ମୁଖଶାଳାର ପୀଠ ସଙ୍ଗେ ନାଟମନ୍ଦିରର ପୀଠ ସମାନ ଦେଖାଯାଏ । ମାତ୍ର ବୋଣାର୍କରେ ଏହା ସମ୍ପୂର୍ଣ୍ଣ ପୃଥକ୍ ଭାବରେ ନିର୍ମିତ ।

୨ । ଦ୍ୱାର ଅଧିକାଂଶ ନାଟମନ୍ଦିରରେ ଖମ୍ଭ ଉପରେ ଛାତ ପଡ଼ିଥିବାରୁ ଦ୍ୱାର ନ ଥାଏ । ତେଣୁ ସେଠାରେ କୌଣସି ପୃଥକ୍ ଦ୍ୱାର ନ ଥାଏ । ପୁରୀ ଓ ଭୁବନେଶ୍ୱର ନାଟମନ୍ଦିରର ଚାରିଗୋଟି ଦ୍ୱାର । ଏହି ଚାରି ଦ୍ୱାର ମଧ୍ୟରୁ —

(କ) ପୂର୍ବଦ୍ୱାର ଭୋଗମଣ୍ଡପ ଆଡ଼କୁ ଖୋଲି ଥାଏ ।

(ଖ) ପଶ୍ଚିମଦ୍ୱାର ମୁଖଶାଳା ଆଡ଼କୁ ଖୋଲି ଥାଏ ।

(ଗ) ଉତ୍ତର ଦ୍ୱାର } ବାହାରକୁ ଖୋଲି ଥାଏ ।
(ଘ) ଦକ୍ଷିଣ ଦ୍ୱାର }

ଉତ୍କଳର ସବୁ ଦେଉଳର ନାଟମନ୍ଦିରଠାରୁ ପୁରୀ ଜଗନ୍ନାଥ ଦେଉଳର ନାଟମନ୍ଦିର ଅତି ବଡ଼ ଓ ପ୍ରଶସ୍ତ ଅଟେ । ଏହି ନାଟମନ୍ଦିରର ବାହାର କାନ୍ଥରେ ଯେପରି ଚାରୁକାର୍ଯ୍ୟ ଦେଖାଯାଏ, ଭିତର କାନ୍ଥରେ ମଧ୍ୟ କେତେକ ଦୃଶ୍ୟ ଓ ମୂର୍ତ୍ତିର ଚିତ୍ର ରହିଅଛି । ଅନ୍ୟାନ୍ୟ ଋଷି ଓ ପାରିବାରିକ ଜୀବନର ଚିତ୍ର ଅପେକ୍ଷା ପୁରୀ ନାଟ ମନ୍ଦିରର ଭିତର କାନ୍ଥରେ ଥିବା ଧଳା ଓ କଳା ଘୋଡ଼ା ଉପରେ ଯଥାକ୍ରମେ ବଳଭଦ୍ର ଓ ଜଗନ୍ନାଥଙ୍କର ଚିତ୍ର ଏବଂ କେତେକ ବୋଇତର ଚିତ୍ର ଉଲ୍ଲେଖଯୋଗ୍ୟ । ପ୍ରଥମ ଦୃଶ୍ୟଟି ରାଜା ପୁରୁଷୋତ୍ତମ ଦେବଙ୍କ କାଞ୍ଚିଅଭିଯାନର ଇତିବୃତ୍ତ ଓ ଦ୍ୱିତୀୟ ଚିତ୍ର ପ୍ରାଚୀନ କଳିଙ୍ଗର ସାଧବ ପୁଅମାନଙ୍କର ବୋଇତ ବାଣିଜ୍ୟ କଥାର ସ୍ମାରକ । ଅତୀତର ଓଡ଼ିଆମାନେ ନିଜର ପ୍ରାଚୀନ ଶିଳ୍ପକଳାକୁ ଭୁଲିଯାଇ ନଥିଲେ ଓ ଅନ୍ୟାନ୍ୟ ପ୍ରଦେଶର କେତେକ ଛବିର ଦୃଶ୍ୟ ନାଟମନ୍ଦିରର ଭିତର କାନ୍ଥରେ ଚିତ୍ରିତ କରିଥିବାର ମଧ୍ୟ ଏଠାରେ ଦେଖାଯାଏ ।

୩ । ଖମ୍ଭ—ନାଟମନ୍ଦିରର ଉପର ଛାତ ରହିବା ପାଇଁ ପୀଠ ଉପରେ କୁଇ ଧାଡ଼ି ପ୍ରସ୍ତର ବା ଇଟା ଖମ୍ଭ ଥାଏ । ଏହି ଖମ୍ଭ ଉପରେ ଲୁହା କାମ୍ବି କାଠ ବଢ଼ି ରଖି ଉପର ଛାତ ତିଆରି କରାଯାଇଥାଏ ।

୪ । ନାଟମନ୍ଦିରର ବାହ୍ୟ ଦୃଶ୍ୟ—ନାଟମନ୍ଦିରର ବାହ୍ୟ ଅଂଶ ନିମ୍ନ ଦୁଇ ଭାଗରେ ବିଭକ୍ତ—(କ) ବାଡ଼ । (ଖ) ଗଣ୍ଡି ବା ଛାତ ।

(ଙ) ବାଡ—ଉପରଭ ଉପରେ ଗଠିତ ହୋଇଥାଏ । ବାଡ ଦେହରେ ଅନେକ ଶିଳ୍ପକାର୍ଯ୍ୟ ଦେଖାଯାଏ । ଅଧିକାଂଶ ପ୍ରାଚୀନ ମନ୍ଦିର ବାଡ ପଞ୍ଚକର୍ମ ଅଟେ । ବାଡ ଦେହରେ ପ୍ରଧାନ ଶିଳ୍ପକାର୍ଯ୍ୟ ମଧ୍ୟରେ ଅପ୍ସରା ଓ ନର୍ତ୍ତକୀ, ସେବକ ଓ ଯାତ୍ରୀ-ମାନଙ୍କର ନୃତ୍ୟାଦୃଶ୍ୟ ପ୍ରଧାନ ଅଟେ । ଦେବାରାଧନା ପାଇଁ ଏମାନେ ମୃଦଙ୍ଗ, ତାଳ, ବଂଶୀ, ସିଙ୍ଗା ପ୍ରଭୃତି ବାଦ୍ୟ ଯନ୍ତ୍ର ଧରି ନାଚ ନାଚ ଗୀତ ଗାଉଥିବାର ଅନୁମିତ ହୁଏ । କୋଣାର୍କର ନାଟମନ୍ଦିର ବାଡରେ ଥିବା ଏହି ପାଷାଣ ମୂର୍ତ୍ତିଗୁଡ଼ିକୁ ଦେଖିଲେ ସେମାନେ ବର୍ତ୍ତମାନ ପାଷାଣ ହୋଇଗଲେ ପରି ଜଣାପଡ଼େ । ନାଟ ମନ୍ଦିରର କେତେକ ସ୍ଥାନରେ ଅଶ୍ଳୀଳ ପାଷାଣ ମୂର୍ତ୍ତି ଦେଖାଯାଏ ।

(ଖ) ଛାତ—ନାଟ ମନ୍ଦିରର ଛାତ ପୀଢ଼ାକୃତି ଅଟେ ; କିନ୍ତୁ ଏହି ପୀଢ଼ର ଉପରିଭାଗ ଅତି ଉଚ୍ଚ ନ ହୋଇ ଆୟତାକାର ଦେଖାଯାଏ । ଛାତର ପୀଢ଼ ୨ । ୩ ସ୍ତର ଗଠିତ ହେବା ପରେ ତହିଁ ଉପରେ କଳସ ରଖି ଛାତ ପୂର୍ଣ୍ଣ କରାଯାଏ ।

୪ର୍ଥ । ଭୋଗମଣ୍ଡପ—ଭୁବନେଶ୍ୱର ଓ ପୁରୀରେ ଥିବା ଲିଙ୍ଗରାଜ ଓ ଜଗନ୍ନାଥ ମନ୍ଦିରରେ ନାଟମନ୍ଦିରର ପୂର୍ବ ଦିଗକୁ ଲାଗି ଯେଉଁ ମନ୍ଦିର ଅଛି, ତାହାକୁ ଭୋଗମଣ୍ଡପ କୁହାଯାଏ ।

ଭୋଗମଣ୍ଡପର ବିଭିନ୍ନାଂଶ—

(କ) ପୀଠ—ପୁରୀ ଓ ଭୁବନେଶ୍ୱରରେ ବିମାନ, ଜଗମୋହନ ଓ ନାଟ-ମନ୍ଦିରର ପୀଠ ସଙ୍ଗେ ଭୋଗମଣ୍ଡପର ପୀଠ ସମାନ ହୋଇ ନିର୍ମିତ ହୋଇଅଛି । କୋଣାର୍କ ସୂର୍ଯ୍ୟମନ୍ଦିରରେ ଭୋଗମଣ୍ଡପ ଆଦୌ ନାହିଁ ।

(ଖ) ଚଟାଣ—ଅଧିକାଂଶ ବଡ଼ ମନ୍ଦିରର ଭୋଗମଣ୍ଡପ ଚଟାଣ ସମ-ଚତୁର୍ଭୁଜ କ୍ଷେତ୍ର ହୋଇଥାଏ । କେତେକ ସ୍ଥାନରେ ଏହା ଆୟତାକାର ମଧ୍ୟ ଦେଖାଯାଏ ।

(ଗ) ଖମ୍ବ—ପୁରୀ ଓ ଭୁବନେଶ୍ୱର ଭୋଗମଣ୍ଡପରେ ଚାରି ଚାରୋଟି ଅତି ମୋଟା ଖମ୍ବ ଗଢ଼ି ତହିଁ ଉପରେ ଛାତ ନିର୍ମିତ ହୋଇଅଛି ।

(ଘ) ଦ୍ୱାର—ଭୋଗମଣ୍ଡପର ଦୁଇଗୋଟି ଦ୍ୱାର ପୂର୍ବ ଓ ପଶ୍ଚିମ-ଦିଗକୁ ଖୋଲା ଯାଏ । ପୁରୀ ଭୋଗମଣ୍ଡପର ପୂର୍ବଦ୍ୱାର, କେତେକ ବର୍ଷ ହେଲା ବନ୍ଦ କରା-ଯାଇଥିବାରୁ ଏହାର ଭିତର ଅଂଶ ଅନ୍ଧକାର ଦେଖାଯାଏ ଏବଂ ଯାତ୍ରୀମାନେ ନାଟ-ମନ୍ଦିରର ଉତ୍ତର ଓ ଦକ୍ଷିଣ ଦ୍ୱାର ଦେଇ ମନ୍ଦିର ମଧ୍ୟରେ ପ୍ରବେଶ କରନ୍ତି ।

(ଙ) ବାଡ଼—ପୁରୀ ଓ ଭୁବନେଶ୍ୱରର ଭୋଗମଣ୍ଡପର ବାଡ଼ ପଞ୍ଚରଥାତ୍ମକ। ଏହି ବାଡ଼ର ବାହାର ପାଖ ଅଂଶରେ ହାତୀ, ଘୋଡ଼ା, ସିଂହ, ପଦ୍ମ ଓ ସ୍ତ୍ରୀମୂର୍ତ୍ତି-ମାନଙ୍କର ପ୍ରତିମୂର୍ତ୍ତି ଏବଂ କେତେକ ସ୍ଥାନରେ ଅଶ୍ଳୀଳ ମୂର୍ତ୍ତି ମଧ୍ୟ ଦେଖାଯାଏ। ବାଡ଼ର ଭିତର ପାଖ ଅଂଶ ଚିକ୍କଣ ପଲସ୍ତରା ହୋଇଥିବାରୁ ଏଠାରେ କୌଣସି ଚିତ୍ର ବା ପ୍ରତିମୂର୍ତ୍ତି ଦେଖାଯାଏ ନାହିଁ।

(ଚ) ଛାତ—ମୁଖଶାଳା ଓ ଭୋଗମଣ୍ଡପରେ ଛାତ ମଧ୍ୟ ପୀଢ଼ାବିଶିଷ୍ଟ ହୋଇ ଶୁଣ୍ଡି ହୋଇଥାଏ; କିନ୍ତୁ ଏଠାରେ ଥିବା କଳସ ଓ ଅମଳକ ଶିଳା ପ୍ରଭୃତି ଅତି କ୍ଷୁଦ୍ର ହୋଇଥାଏ।



## ଉତ୍କଳୀୟ ମନ୍ଦିରର ଅନ୍ୟାନ୍ୟ ଶିଳ୍ପକାର୍ଯ୍ୟ

୧ମ। ନବଗ୍ରହ—ଉତ୍କଳର ପ୍ରତ୍ୟେକ ବିଷ୍ଣୁ ଓ ଶିବ ମନ୍ଦିରର ମୁଖଶାଳାର ପ୍ରବେଶଦ୍ୱାର ଉପରେ ଖଣ୍ଡିଏ ପ୍ରସ୍ତର ଦେହରେ ନବଗ୍ରହ ମୂର୍ତ୍ତି ଖୋଦିତ ହୋଇ ରଖାଯାଇଥାଏ। ଦେବୀ (ଶକ୍ତି) ମନ୍ଦିରଗୁଡ଼ିକରେ ନବଗ୍ରହ ମୂର୍ତ୍ତି ପରିବର୍ତ୍ତରେ ଠିକ୍ ମଧ୍ୟସ୍ଥଳରେ ପଦ୍ମାସନା ଗଜଲକ୍ଷ୍ମୀଙ୍କର ପ୍ରତିମୂର୍ତ୍ତି ରହିଥାଏ। ସମସ୍ତ ଉତ୍କଳରେ ଥିବା ନବଗ୍ରହ ମୂର୍ତ୍ତିମାନଙ୍କ ମଧ୍ୟରୁ କୋଣାର୍କର ସୂର୍ଯ୍ୟମନ୍ଦିର ନିକଟରେ ଥିବା ନବଗ୍ରହ ପ୍ରସ୍ତର ଅତି ବିଶାଳ ଏବଂ ମୂର୍ତ୍ତିଗୁଡ଼ିକ ଅତି ସୁନ୍ଦର ଓ ସୁସ୍ପଷ୍ଟ ଭାବରେ ଖୋଦିତ। ନବଗ୍ରହମାନଙ୍କର ନାମ ଯଥା—

| | | | |
|---|---|---|---|
| (୧) ରବି | (ସୂର୍ଯ୍ୟଗ୍ରହ) | (୫) ବୃହସ୍ପତି | (ଦେବଗୁରୁ) |
| (୨) ସୋମ | (ଚନ୍ଦ୍ର) | (୬) ଶୁକ୍ର | (ଭୃଗୁଙ୍କ ପୁତ୍ର, ଦୈତ୍ୟଗୁରୁ) |
| (୩) ମଙ୍ଗଳ | (ପୃଥିବୀପୁତ୍ର) | (୭) ଶନି | (ଛାୟାଗର୍ଭସଂଜାତ ରବିପୁତ୍ର) |
| (୪) ବୁଧ | (ଚନ୍ଦ୍ରଙ୍କ ପୁତ୍ର) | (୮) ରାହୁ | (ସିଂହି-ପୁତ୍ର) |
| | (୯) କେତୁ | (ଶୁକ୍ରପୁତ୍ର) | |

[ ପୁସ୍ତକର ମଲାଟ ଉପରେ ଦିଆଯାଇଥିବା ନବଗ୍ରହଙ୍କ ଛବି ଦେଖନ୍ତୁ। ]

୨ୟ। ଦ୍ୱାରପାଳ—ପ୍ରତ୍ୟେକ ମନ୍ଦିରର ମୁଖଶାଳାର ପୂର୍ବଦ୍ୱାରର ଉଭୟ ପାର୍ଶ୍ୱରେ କୁଳକୋଠି ଦ୍ୱାରପାଳ ମୂର୍ତ୍ତି ଥିବାର ଦେଖାଯାଏ।

(କ) ବିଷ୍ଣୁ ମନ୍ଦିରର ଦ୍ୱାରପାଳଦ୍ୱୟଙ୍କୁ 'ଜୟ', 'ବିଜୟ' କୁହାଯାଏ । ଏମାନଙ୍କ ହସ୍ତରେ ଗଦା ଅସ୍ତ୍ର ରହିଥାଏ ।

(ଖ) ଶିବମନ୍ଦିରର ଦ୍ୱାରପାଳଦ୍ୱୟଙ୍କୁ 'ନନ୍ଦୀ', 'ଭୃଙ୍ଗି' କୁହାଯାଏ । ଏମାନଙ୍କ ହସ୍ତରେ ଖଣ୍ଡା, ତ୍ରିଶୂଳ, ଧନୁ ଓ ଶର ଥିବାର ଦେଖାଯାଏ ।

(ଗ) ସୂର୍ଯ୍ୟମନ୍ଦିରର ଦ୍ୱାରପାଳଦ୍ୱୟଙ୍କୁ 'ଦଣ୍ଡ' (ଯମ) 'ପିଙ୍ଗଳ' (ଅଗ୍ନି) କୁହାଯାଏ । ଏମାନଙ୍କ ହସ୍ତରେ ଖଣ୍ଡା ଓ ତରବାରି ରହିଥାଏ ।

୩ୟ । ଗରୁଡ଼ ସ୍ତମ୍ଭ—ପକ୍ଷିରାଜ ଗରୁଡ଼ ବିଷ୍ଣୁଙ୍କର ବାହନ ଥିଲେ । ସେଥିପାଇଁ ପ୍ରତ୍ୟେକ ବିଷ୍ଣୁମନ୍ଦିରର ନାଟମନ୍ଦିର ମଧ୍ୟରେ କିମ୍ବା ମନ୍ଦିର ସମ୍ମୁଖସ୍ଥ ମଣ୍ଡପରେ ଗୋଟିଏ ସ୍ତମ୍ଭ ଉପରେ ଗରୁଡ଼ଙ୍କର ପ୍ରସ୍ତରମୂର୍ତ୍ତି ଅବସ୍ଥାପିତ ହୋଇଥାଏ । ଯାତ୍ରୀମାନେ ସର୍ବାଦୌ ଗରୁଡ଼ ସ୍ତମ୍ଭକୁ ପ୍ରଦକ୍ଷିଣ କରି ତତ୍ପରେ ଦେବଦର୍ଶନ କରିଥାନ୍ତି ।

୪ର୍ଥ । ବୃଷଭ—ଶିବମନ୍ଦିରର ମୁଖଶାଳା ମଧ୍ୟରେ ଶିବଙ୍କର ବାହନ ବୃଷଭ ମୂର୍ତ୍ତି ରହିଥାଏ । ଅଧିକାଂଶ ବୃଷଭ ମୂର୍ତ୍ତିର ଗଠନପ୍ରଣାଳୀ ଦେଖିଲେ ପ୍ରାଚୀନ ଶିଳ୍ପୀ-ମାନେ ଜୀବନ୍ତ ବୃଷଭକୁ ଅନୁକରଣ କରି ଏହି ମୂର୍ତ୍ତିଗୁଡ଼ିକୁ ନିର୍ମାଣ କରିଥିବାର ଅନୁମିତ ହୁଏ । ଭୁବନେଶ୍ୱରର ଲିଙ୍ଗରାଜଙ୍କ ମନ୍ଦିରରେ ହରି-ହରଙ୍କ ଯୁଗ୍ମମୂର୍ତ୍ତି ଥିବାରୁ ଏହାର ମୁଖଶାଳାରେ ଗୋଟିଏ ସ୍ତମ୍ଭ ଉପରେ ଗରୁଡ଼ ଓ ବୃଷଭର ଯୁଗ୍ମମୂର୍ତ୍ତି ସ୍ଥାପିତ ହୋଇଅଛି ।

୫ମ । ପାର୍ଶ୍ୱ ଦେବତା—ଉତ୍କଳର ମନ୍ଦିରଗୁଡ଼ିକରେ ଥିବା ପାର୍ଶ୍ୱଦେବତା-ମାନଙ୍କୁ ନିମ୍ନ କେତେଗୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ ।

(କ) ବିଷ୍ଣୁ ମନ୍ଦିର—ଉତ୍ତର ଦିଗରେ—ବାମନ ମୂର୍ତ୍ତି—ବିଷ୍ଣୁ ବାମନ ଅବ-ତାରରେ ବଳି ରାଜାଙ୍କଠାରୁ ଶୁକଙ୍କ ଉପସ୍ଥିତିରେ ଯେପରି ଦାନ ଗ୍ରହଣ କରିଥିବାର ପୌରାଣିକ ପ୍ରବାଦ ଅଛି । ତାହା ଏଠାରେ ସୁସ୍ପଷ୍ଟରୂପେ ଖୋଦିତ ହୋଇଅଛି ।

ପଶ୍ଚିମ ଦିଗରେ—ନୃସିଂହ ମୂର୍ତ୍ତି । ବିଷ୍ଣୁ ନୃସିଂହ ଅବତାରରେ ହିରଣ୍ୟ କଶ୍ୟପକୁ ବଧ କରିଥିବାର ଦୃଶ୍ୟ ଖଣ୍ଡିଏ ପ୍ରସ୍ତରରେ ଖୋଦିତ ହୋଇଅଛି ।

ଦକ୍ଷିଣ ଦିଗରେ—ବରାହମୂର୍ତ୍ତି । ବିଷ୍ଣୁଙ୍କ ତୃତୀୟାବତାର ଦୃଶ୍ୟ ଏଠାରେ ଖୋଦିତ ହୋଇଅଛି ।

(ଖ) ଶିବମନ୍ଦିର—ଉତ୍ତର ଦିଗରେ ପାର୍ବତୀଙ୍କ ପ୍ରସ୍ତରମୂର୍ତ୍ତି ଥାଏ । କେତେକ ମନ୍ଦିରରେ ପାର୍ବତୀଙ୍କ ମୂର୍ତ୍ତି ପରିବର୍ତ୍ତେ ଶିବ-ପାର୍ବତୀଙ୍କର ଯୁଗଳ ମୂର୍ତ୍ତି ଥିବାର ଦେଖାଯାଏ ।

ପଶ୍ଚିମ ଦିଗରେ—କାର୍ତ୍ତିକେୟଙ୍କ ପ୍ରତିମୂର୍ତ୍ତି ଥାଏ । ଅଧିକାଂଶ ମନ୍ଦିରରେ ଚତୁର୍ଭୁଜ କାର୍ତ୍ତିକ ମୂର୍ତ୍ତି ଓ କେତେକ ସ୍ଥାନରେ ଦ୍ୱିଭୁଜ କାର୍ତ୍ତିକ ମୂର୍ତ୍ତି ଦେଖାଯାଏ । କାର୍ତ୍ତିକେୟଙ୍କର ବାହନ ମୟୂରର ପ୍ରତିମୂର୍ତ୍ତି ସଙ୍ଗ ଦେଖାଯାଏ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରରେ ଥିବା କାର୍ତ୍ତିକେୟଙ୍କ ମୂର୍ତ୍ତି ଉତ୍କଳର ଅତି ବିଶାଳ ଓ ସୂକ୍ଷ୍ମଶିଳ୍ପ-କଳାବିମଣ୍ଡିତ ।

ଦକ୍ଷିଣରେ ଗଣେଶଙ୍କ ପ୍ରତିମୂର୍ତ୍ତି ଦେଖାଯାଏ । କେତେ ସ୍ଥଳରେ ଚତୁର୍ଭୁଜ ଓ ଅଷ୍ଟଭୁଜ ଗଣେଶ ମୂର୍ତ୍ତି ଦେଖାଯାଏ । ଭୁବନେଶ୍ୱର ମନ୍ଦିର ମଧ୍ୟରେ ଥିବା ଗଣେଶ ମୂର୍ତ୍ତି ସମଗ୍ର ଉତ୍କଳରେ ଯେପରି ବିଶାଳ, ସେହିପରି ସୂକ୍ଷ୍ମକଳାବିଶିଷ୍ଟ ।

ଖିଚିଙ୍ଗ ଶିବମନ୍ଦିରର ବିଶେଷତ୍ୱ—ମୟୂରଭଞ୍ଜ ରାଜ୍ୟ ଅନ୍ତର୍ଗତ ଖିଚିଙ୍ଗ ଗ୍ରାମରେ ଥିବା ପ୍ରାଚୀନ ଶିବମନ୍ଦିରରେ ଲିଙ୍ଗ ଓ ଶକ୍ତି ପରିବର୍ତ୍ତେ ଶିବଙ୍କର ମାନବାକୃତି ମୂର୍ତ୍ତି ଥିବାର ପରିଦୃଷ୍ଟ ହୁଏ । ମନ୍ଦିର ମଧ୍ୟରେ ଥିବା ଶିବମୂର୍ତ୍ତି ସଦୃଶ, ଉତ୍ତର ପଶ୍ଚିମ ଓ ଦକ୍ଷିଣ ଦିଗରେ ପୂର୍ବୋକ୍ତ ପାର୍ଶ୍ୱଦେବତାଙ୍କ ପରିବର୍ତ୍ତେ ଶିବ ମୂର୍ତ୍ତିମାନ ସ୍ଥାପିତ ହୋଇଥିଲା । ବର୍ତ୍ତମାନ ଏଗୁଡ଼ିକ ଭଗ୍ନ ବା ବିକଳାଙ୍ଗ ଅବସ୍ଥାରେ ରହିଅଛି ।

(ଗ) କୋଣାର୍କର ସୂର୍ଯ୍ୟମନ୍ଦିର—କୋଣାର୍କର ସୂର୍ଯ୍ୟମନ୍ଦିରରେ ଥିବା ପାର୍ଶ୍ୱ-ଦେବତା କେବଳ ସୂର୍ଯ୍ୟଙ୍କର ପ୍ରତିମୂର୍ତ୍ତି ଅଟେ । ଏହି ମୂର୍ତ୍ତିଗୁଡିକର ଗଠନପ୍ରଣାଳୀ ଅତ୍ୟନ୍ତ ମନୋହର ।

(ଘ) ଦେବୀମନ୍ଦିର—ଦେବୀମନ୍ଦିରମାନଙ୍କରେ ଥିବା ପାର୍ଶ୍ୱଦେବତା ସମସ୍ତ ଉତ୍କଳରେ ଏକାପରି ଦେଖାଯାଏ ନାହିଁ । କେତେକ ସ୍ଥାନରେ ଗଣେଶ, କାର୍ତ୍ତି-କେୟ ଓ ସୂର୍ଯ୍ୟ ବା ବିଷ୍ଣୁମୂର୍ତ୍ତି ଦେଖାଯାଏ । ଅନ୍ୟ କେତେକ ସ୍ଥାନରେ 'ସପ୍ତମାତୃକା'ଙ୍କ ମୂର୍ତ୍ତି ମଧ୍ୟରୁ କେତେ ଗୋଟି ମୂର୍ତ୍ତି ରଖାଯାଇଥାଏ । ଭୁବନେଶ୍ୱରର "ବୋଇତାଳ" ମନ୍ଦିରର ପଶ୍ଚିମ ଦିଗରେ ପାଞ୍ଚଗୋଟି ପାର୍ଶ୍ୱଦେବତାଙ୍କ ମୂର୍ତ୍ତି ସ୍ଥାପିତ ହୋଇଅଛି । ତନ୍ମଧ୍ୟରୁ ମଧ୍ୟସ୍ଥିତ ମୂର୍ତ୍ତି ହରପାର୍ବତୀଙ୍କର ଯୁଗଳ ମୂର୍ତ୍ତି ଅଟେ ।

୬ଷ୍ଠ । ଦିକ୍‌ପାଳ ବା ଦିକ୍‌ପତି—ପ୍ରତ୍ୟେକ ମନ୍ଦିରରେ ଦଶଦିକ୍‌ପାଳଙ୍କ ପ୍ରତିମୂର୍ତ୍ତିମାନ ସ୍ଥାପିତ ହୋଇଥାଏ । ଅଗ୍ନିପୁରାଣ ଓ ଶିଳ୍ପଶାସ୍ତ୍ରର ନିୟମାନୁସାରେ ଦିକ୍‌ପାଳଙ୍କର ପ୍ରତିମୂର୍ତ୍ତି ମନ୍ଦିରର କାନ୍ଥରେ ରଖାଯାଇଥାଏ । ପ୍ରତ୍ୟେକ ଦିକ୍‌ପାଳର

ଗୋଟିଏ ଗୋଟିଏ ବାହନ ଥାଏ । ଏହି ବାହନର ପ୍ରତିମୂର୍ତ୍ତି ଦେଖି ଦିକ୍‌ପାଳଙ୍କୁ ସ୍ପଷ୍ଟ-ରୂପେ ଚିହ୍ନି ହେବ । ନିମ୍ନରେ ଦିକ୍‌ପାଳମାନଙ୍କର ନାମ ଓ ସଂକ୍ଷିପ୍ତ ପରିଚୟ ପ୍ରଦତ୍ତ ହେଲା ।

| | ଦିଗର ନାମ | ଦିକ୍‌ପାଳଙ୍କର ନାମ | ବାହନର ନାମ |
|---|---|---|---|
| (୧) | ପୂର୍ବ ଦିଗ | ଇନ୍ଦ୍ର | ହସ୍ତୀ (ଐରାବତ) |
| (୨) | ଅଗ୍ନିକୋଣ | ଅଗ୍ନି | ଛାଗ ବା ମେଷ |
| (୩) | ଦକ୍ଷିଣ ଦିଗ | ଯମ | ମହିଷ |
| (୪) | ନୈଋତ କୋଣ | ନିଋତି | ମନୁଷ୍ୟ |
| (୫) | ପଶ୍ଚିମ ଦିଗ | ବରୁଣ | ମକର |
| (୬) | ବାୟୁ କୋଣ | ବାୟୁ | ହରିଣ |
| (୭) | ଉତ୍ତର ଦିଗ | କୁବେର | ସପ୍ତପାନ ବା କୁମ୍ଭ |
| (୮) | ଐଶାନ୍ୟ କୋଣ | ଈଶାନ | ବୃଷଭ |
| (୯) | ଊର୍ଦ୍ଧ୍ୱ | ବ୍ରହ୍ମା | ମରାଳ |
| (୧୦) | ଅଧଃ | ଅନନ୍ତ | ବାସୁକି |

୭ମ । ଦେବଦେବୀଙ୍କ ପ୍ରତିମୂର୍ତ୍ତି—ଉତ୍କଳର ଅଧିକାଂଶ ମନ୍ଦିର କାନ୍ଥରେ ଅନେକ ଗୁଡ଼ିଏ ଦେବଦେବୀଙ୍କର ପ୍ରତିମୂର୍ତ୍ତି ଦେଖାଯାଏ । ଏହି ପ୍ରତିମୂର୍ତ୍ତି ମଧ୍ୟରୁ ବିଷ୍ଣୁଙ୍କ ଦଶାବତାର, କୃଷ୍ଣଙ୍କର ଗୋବର୍ଦ୍ଧନ ଧାରଣ ଦୃଶ୍ୟ, କାଳିୟ ଦମନ ଦୃଶ୍ୟ, ରାମ, ସୀତା, ଲକ୍ଷ୍ମଣଙ୍କ ପ୍ରତିମୂର୍ତ୍ତି ପ୍ରଭୃତି ଦେଖାଯାଏ । ଶିବ ଓ ଦେବୀ-ମନ୍ଦିରରେ ଚଣ୍ଡୀ, ଚାମୁଣ୍ଡୀ, ଅଷ୍ଟଭୁଜା, 'ଦ୍ୱାଦଶଭୁଜା', କାପାଳିନୀ ଓ ବାରାହୀ ପ୍ରଭୃତିଙ୍କ ପ୍ରତିମୂର୍ତ୍ତି ଦେଖାଯାଏ । ଅନ୍ୟ କେତେକ ଭଗ୍ନମନ୍ଦିରର କାନ୍ଥରେ ବୁଦ୍ଧ ଓ ଜୈନ ମୂର୍ତ୍ତି ମଧ୍ୟ ରଖାଯାଇଥାଏ । ସେହି ମୂର୍ତ୍ତିଗୁଡ଼ିକୁ ଅଜ୍ଞ ଲୋକମାନେ ଦୁର୍ଗା ଠାକୁରାଣୀ ବା ବିଷ୍ଣୁ ମନେ କରି ପୂଜା କରନ୍ତି । କେତେକ ପଲ୍ଲୀରେ ବର ଓ ନିମ୍ବ ଗଛମୂଳରେ ଉକ୍ତ ମୂର୍ତ୍ତିଗୁଡ଼ିକୁ ରଖି ସେମାନଙ୍କୁ ଦେବୀ ମନେ କରି ପୂଜା କରନ୍ତି ଓ ସମୟ ସମୟରେ ଛାଗମେଷାଦି ବଳି ସମର୍ପଣ କରନ୍ତି ।

୮ମ । ସ୍ତ୍ରୀ ଓ ପୁରୁଷ ପ୍ରତିମୂର୍ତ୍ତି—ଉତ୍କଳୀୟ ମନ୍ଦିରର କାନ୍ଥରେ ଥିବା ନର-ନାରୀ ମୂର୍ତ୍ତିଗୁଡ଼ିକର ଗଠନପ୍ରଣାଳୀ ଦେଖି ସ୍ୱର୍ଗତ ରାଜେନ୍ଦ୍ରଲାଲ୍ ମିତ୍ର ଲେଖିଅଛନ୍ତି— "ମନୁଷ୍ୟର ପ୍ରତିକୃତିଗୁଡ଼ିକ ଆକୃତିର ଅତ୍ୟନ୍ତ ଉପଯୋଗୀ । ବିଶେଷ ତଥା ମନୁଷ୍ୟର ହାବ-

ଭାବ, ମନର ସକଳ ପ୍ରକାର ଅବସ୍ଥା ବହୁରଙ୍ଗରେ ପୂର୍ଣ୍ଣରୂପେ ପ୍ରକାଶ ପାଇଅଛି । ଯୁଦ୍ଧ ମଧ୍ୟରେ ସୈନିକର ମନୋଭାବ, ପ୍ରେମରେ ପ୍ରେମିକର ଭାବୋଚ୍ଛ୍ୱାସ, ନୃତ୍ୟ-ମଦରେ ନର୍ତ୍ତକୀର ଦୃଷ୍ଟି ନ୍ୟାସ, ବିଚ୍ଛେଦରେ ବିରହୀର ଶୂନ୍ୟପ୍ରାଣ, ସମ୍ଭୋଗରେ ଭୋଗୀର ନିର୍ବିଘ୍ନ ହୃଦୟ ଇତ୍ୟାଦି—ମନୁଷ୍ୟ ମନର ବିଭିନ୍ନ ଅବସ୍ଥାର ବିଭିନ୍ନ ଭାବ ପ୍ରସ୍ତର ଦେହରେ ଅତି ନିଖୁଣ ଭାବରେ ଖୋଦିତ ହୋଇଅଛି । ମୂଳତଃ ମନୁଷ୍ୟ ଜୀବନରେ ଯେତେ ଭାବ ପରିବର୍ତ୍ତନ ଘଟିପାରେ, ମନୁଷ୍ୟ ଯେତେ ଯେତେ ଅବସ୍ଥାରେ ଜୀବନଯାପନ କରି ପାରିବା ସମ୍ଭବ—ଗୃହୀ, ସନ୍ନ୍ୟାସୀ, ରାଜା, ସୈନିକ, ପ୍ରେମିକ, ମଲ୍ଲ, ଶିକାରୀ, ଗାୟକ, ବାଦକ, ନର୍ତ୍ତକ, ଶିକ୍ଷକ, ଶିଷ୍ୟ, ବଣିକ, କୃଷକ, ନାବିକ, କାମୁକ, ଧାର୍ମିକ ପ୍ରଭୃତି ସକଳ ଅବସ୍ଥାରେ ମନୁଷ୍ୟର ଭାବଭଙ୍ଗୀ ଅତି ଆଶ୍ଚର୍ଯ୍ୟରୂପେ ସେକାଳର ଉତ୍କଳୀୟ ଶିଳ୍ପୀମାନେ ପ୍ରସ୍ତର ଦେହରେ ଦେଖାଇଥିଲେ । କେତେ ହଜାର ବର୍ଷ ତଳେ ଏହି କାମ ହୋଇଥିଲେ ସୁଦ୍ଧା ସେ ସବୁ (ସ୍ତ୍ରୀପୁରୁଷଙ୍କ ପ୍ରତିମୂର୍ତ୍ତି) ଏବେ ମଧ୍ୟ ଜୀବନ୍ତ ଓ ନୂତନ ପରି ବୋଧହୁଏ । (ଉତ୍କଳ ଇତିହାସ)

ପ୍ରାଚୀନ ଉତ୍କଳର ଶିଳ୍ପୀମାନେ ଏକାଧିକ ଶିଳ୍ପଶାସ୍ତ୍ରକୁ ଅନୁକରଣ କରି ସେହି ସେହି ଶାସ୍ତ୍ରୋକ୍ତ ନିୟମାନୁସାରେ ପ୍ରତ୍ୟେକ ନରନାରୀ ଓ ଦେବଦେବୀଙ୍କ ପ୍ରତିମୂର୍ତ୍ତି ନିର୍ମାଣ କରିଥିଲେ । ଭାରତରେ ନିମ୍ନ ପ୍ରାଚୀନ ଗ୍ରନ୍ଥଗୁଡ଼ିକରେ ମୂର୍ତ୍ତି-ଗଠନର ବିଶେଷ ବର୍ଣ୍ଣନା ପ୍ରଦତ୍ତ ହୋଇଅଛି ।

(୧) ବୃହତ୍‌ସଂହିତା (୨) ବିଷ୍ଣୁଧର୍ମୋତ୍ତର ପୁରାଣ (୩) ଶୁକ୍ରନୀତି
(୪) ମତ୍ସ୍ୟପୁରାଣ (୫) ଅଗ୍ନିପୁରାଣ (୬) ପ୍ରତିମା ମାନ ଲକ୍ଷଣ ।

ଭାରତରେ ଉତ୍କଳ, ବଙ୍ଗ ଓ ଦକ୍ଷିଣଭାରତୀୟ ଶିଳ୍ପୀମାନେ ଏହି କେତେକ ଗ୍ରନ୍ଥର ନିୟମାନୁସାରେ ଏହି ଦେଶର ମୂର୍ତ୍ତିଗୁଡ଼ିକୁ ନିର୍ମାଣ କରିଥିବାର ଜଣାଯାଏ ।

ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ଯେଉଁ ସ୍ତ୍ରୀ ଓ ପୁରୁଷମୂର୍ତ୍ତି ପ୍ରସ୍ତର ଦେହରେ ନିର୍ମାଣ କରିଥିଲେ, ସେହି ମୂର୍ତ୍ତିଦେହର ମାଂସପେଶୀଗୁଡ଼ିକ ପ୍ରାକୃତିକ ନୁହେଁ କିମ୍ବା ରୋମ ଓ ଗ୍ରୀସ୍ ଦେଶର ପ୍ରତିମୂର୍ତ୍ତିଙ୍କ ପରି ସ୍ଥୂଳ ନୁହେଁ ବୋଲି କେତେକ ପାଶ୍ଚାତ୍ୟ ପଣ୍ଡିତ ଆକ୍ଷେପ କରନ୍ତି । କିନ୍ତୁ ପ୍ରାଚୀନ ଉତ୍କଳୀୟମାନେ ବିଶେଷ ଆଧ୍ୟାତ୍ମିକ-ଭାବାପନ୍ନ ଥିବାରୁ ନିଜେ ଗଢ଼ିବା ପ୍ରତିମୂର୍ତ୍ତିଗୁଡ଼ିକୁ ସେପରି ପ୍ରାକୃତିକ କରିବାକୁ ଚିନ୍ତିତ ନ ଥିଲେ । କେବଳ ଏହି ମୂର୍ତ୍ତିଗୁଡ଼ିକୁ ଦେଖି ସେକାଳର ସ୍ତ୍ରୀ ଓ ପୁରୁଷମାନେ ଅତି ଦୁର୍ବଳ ଥିଲେ ବୋଲି କହିବା ଅସଙ୍ଗତ ହେବ । କାରଣ "ଯେଉଁ ଯୁଗରେ




ଜଗନ୍ନାଥ ମନ୍ଦିରର ବିଭିନ୍ନ ଭାଗ




"ପଞ୍ଚରଥ" ଓଡ଼ିଆ ଦେଉଳର ନକ୍ସା

କୋଣାର୍କ ନିର୍ମିତ ହୋଇଥିଲା, ସେ ଯୁଗର ରାଜା ମହାରାଜାମାନେ ତୂଳତଳ୍ପ ଶଯ୍ୟାରେ ସୁଖନିଦ୍ରା ଭୋଗ କରି କେବଳ ବିଳାସରେ ସମୟ କଟାଉ ନ ଥିଲେ । ସେମାନେ ବୀରପୁରୁଷ ଓ ଯୁଦ୍ଧପ୍ରିୟ ଥିଲେ । ଅସ୍ତ୍ରଶସ୍ତ୍ର ଶିକ୍ଷା ଓ ଅଶ୍ୱସଞ୍ଚାଳନ ପ୍ରଭୃତି ସେ ଯୁଗରେ ରାଜା ମହାରାଜାମାନଙ୍କର ନିତ୍ୟ ବିଳାସକ୍ରୀଡ଼ା ଥିଲା । ସୁତରାଂ ସେମାନଙ୍କର ମାଂସପେଶୀ ପୁଷ୍ଟ ବା ସୁଗଠିତ ହୋଇ ନ ଥିଲା ବୋଲି କୁହାଯାଇ ନ ପାରେ ।[*]
( କୋଣାର୍କ )

୯ମ । କାଳ୍ପନିକ ବା ଅସ୍ୱାଭାବିକ ସ୍ତ୍ରୀପୁରୁଷ ମୂର୍ତ୍ତି—ଉତ୍କଳୀୟ ଶିଳ୍ପୀମାନେ ଯେଉଁ କେତେକ ପ୍ରତିମୂର୍ତ୍ତି ଗଠନ କରିଅଛନ୍ତି, ସେଗୁଡ଼ିକୁ ନିମ୍ନଲିଖିତ-ମତେ ତିନିଭାଗରେ ବିଭକ୍ତ କରାଯାଇ ପାରେ:—

(କ) ଅନୁମାନିକ (ଖ) ସାଦୃଶ୍ୟ (ଗ) କେବଳ ଶୋଭାବର୍ଦ୍ଧକ । ଉପର୍ଯ୍ୟୁକ୍ତ ତିନିଭାଗ ମଧ୍ୟରୁ ପୂର୍ବବର୍ଣ୍ଣିତ ସ୍ତ୍ରୀ ଓ ପୁରୁଷଙ୍କ ପ୍ରତିମୂର୍ତ୍ତି ଦ୍ୱିତୀୟ ବା ସାଦୃଶ୍ୟ ଶ୍ରେଣୀର ଅଟେ । ଅନେକ ପ୍ରକାର ଲତା ଓ ବୃକ୍ଷ ପ୍ରଭୃତି କେବଳ ଶୋଭାବର୍ଦ୍ଧକ ଶ୍ରେଣୀର । ଦେବଦେବୀଙ୍କ ପ୍ରତିମୂର୍ତ୍ତିଗୁଡ଼ିକୁ ପ୍ରଥମ ବା ଆନୁମାନିକ ଶ୍ରେଣୀଭୁକ୍ତ କରାଯାଇପାରେ । କୌଣସି ମାନବ ଏ ପର୍ଯ୍ୟନ୍ତ ଚତୁର୍ଭୁଜ ବିଷ୍ଣୁଙ୍କୁ, ତ୍ରିଲୋଚନ ଶିବଙ୍କୁ ବା ଅଷ୍ଟଭୁଜା ଦୁର୍ଗାଙ୍କୁ ସ୍ୱଚକ୍ଷୁରେ ଦେଖିନାହାନ୍ତି । ତଥାପି ଏହି ଦେବଦେବୀଙ୍କର ବର୍ଣ୍ଣନା ଶିଳ୍ପଶାସ୍ତ୍ର ଓ ପୁରାଣଗୁଡ଼ିକରେ ବର୍ଣ୍ଣିତ ଅଛି । ସେହି ବର୍ଣ୍ଣନା ପାଠ କରି ଶିଳ୍ପୀ ନିଜର କଳ୍ପନାଶକ୍ତି ସାହାଯ୍ୟରେ ଅନେକଗୁଡ଼ିଏ ଅପ୍ରାକୃତିକ ବା କାଳ୍ପନିକ ମୂର୍ତ୍ତି ନିର୍ମାଣ କରିଥାଏ ।

ନିମ୍ନରେ କେତେ ଗୋଟି ଆନୁମାନିକ ବା କାଳ୍ପନିକ ପ୍ରତିମୂର୍ତ୍ତିର ବର୍ଣ୍ଣନା ଦିଆଗଲା ।

(କ) କୀର୍ତ୍ତିମୁଖ—"ପଦ୍ମପୁରାଣାନ୍ତର୍ଗତ କାର୍ତ୍ତିକମାହାତ୍ମ୍ୟ ପ୍ରସଙ୍ଗରେ ଏହି କୀର୍ତ୍ତିମୁଖର ପୌରାଣିକ ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । ଦୈତ୍ୟରାଜ ଜଳନ୍ଧର ମଦାନ୍ଧ ହୋଇ ରାହୁକୁ ଦୂତସ୍ୱରୂପ ଶିବଙ୍କ ନିକଟକୁ ପ୍ରେରଣ କରି ପ୍ରସ୍ତାବ କରିଥିଲା ଯେ, ମହାଦେବ ଭିକ୍ଷୁକ, ସନ୍ନ୍ୟାସୀ। ପାର୍ବତୀ ତୁଲ୍ୟ ସୁନ୍ଦରୀ ରମଣୀ ଶିବଭୋଗ୍ୟା ନୁହନ୍ତି । ଶିବ ପାର୍ବତୀଙ୍କୁ ଶୀଘ୍ର ଜଳନ୍ଧରଙ୍କୁ ସମର୍ପଣ କରନ୍ତୁ । ରାହୁ ଏ ପ୍ରସ୍ତାବ ଘେନି ଶିବଙ୍କ ନିକଟରେ ଉପସ୍ଥିତ ହୋଇ ତାହା ପ୍ରକାଶ କଲାମାତ୍ରେ ଶିବ କ୍ରୋଧାନ୍ୱିତ ହୋଇ-

ଉଠିଲେ । ତୃତୀୟ ନେତ୍ରରୁ ଶିବଙ୍କର ଭ୍ରୂଯୁଗ୍ମ ମଧ୍ୟରୁ ସିଂହବଦନ, ଊର୍ଦ୍ଧ୍ୱକେଶ, ଲୋଳଜିହ୍ୱା, ଜ୍ୱଳନ୍ତନୟନ, ଅତି କୃଶକାୟ ଏକ ଭୀଷଣ ମୂର୍ତ୍ତି ଆବିର୍ଭୂତ ହୋଇ ସିଂହିକାକୁ ହନନ କରିବାକୁ ଉଦ୍ୟତ ହେବାରୁ ସେହି ଶିବଙ୍କର ଶରଣାଗତ ହେଲା । ତୁଚ୍ଛ ଅବଧ୍ୟ । ତେଣୁ ଶିବ ସିଂହୀକୁ ରକ୍ଷା କଲେ । କିନ୍ତୁ ସେ ପୁରୁଷ କ୍ଷୁଧାର୍ତ୍ତ ହୋଇ ଶିବଙ୍କୁ ଭୋଜନ ମାଗିବାରୁ ଶିବ କହିଲେ, "ତୁ ତୋର ନିଜର ହାତଗୋଡ଼ ଖାଇଯା ।" ସେ ଆପଣାର ହାତଗୋଡ଼ ଖାଇସିବାରୁ ତାର ମୁଖମାତ୍ର ଅବଶିଷ୍ଟ ରହିଲା । ଶିବ ତାହା ଉପରେ ସନ୍ତୁଷ୍ଟ ହୋଇ ଆଦେଶ ଦେଲେ, "ତୋହର ନାମ କୀର୍ତ୍ତିମୁଖ ରହିଲା । ତୁ ମୋର ଦ୍ୱାରଦେଶରେ ଅବସ୍ଥାନ କରିବୁ । ଯେଉଁମାନେ ପ୍ରଥମେ ତୋର ଅର୍ଚ୍ଚନା ନ କରି ମୋହର ଅର୍ଚ୍ଚନା କରିବେ, ସେମାନଙ୍କର ପୂଜା ବିଫଳ ହେବ ।" ପ୍ରଥମେ କୀର୍ତ୍ତିମୁଖ ଶୈବମନ୍ଦିରମାନଙ୍କରେ ସ୍ଥାପିତ ହେଉଥିଲା । ପରେ ଶୁଭସୂଚକ ଚିହ୍ନରୂପେ ଶିବ, ବିଷ୍ଣୁ, ଜୈନ ପ୍ରଭୃତି ମନ୍ଦିରର ସମ୍ମୁଖସ୍ଥ ସରଦୋଳ ଉପରେ ଖୋଦିତ ହୋଇଥିବାର ଦେଖାଯାଏ ।" (ଭୁବନେଶ୍ୱର)

(ଖ) ନାଗକନ୍ୟା-- ଅନେକ ପ୍ରାଚୀନ ମନ୍ଦିରର କାନ୍ଥରେ ବିଶେଷତଃ ସିଂହଦ୍ୱାରର ଦୁଇ ପାର୍ଶ୍ୱରେ ନାଗକନ୍ୟାମାନଙ୍କର ପ୍ରତିମୂର୍ତ୍ତି ଅତି ସୁନ୍ଦର ଓ ସୂକ୍ଷ୍ମ ଭାବରେ ଖୋଦିତ ହୋଇଥିବାର ଦେଖାଯାଏ । ଏହି କନ୍ୟାମାନେ ସାଧାରଣତଃ ଯୋଡ଼ହସ୍ତ ହୋଇ ନମସ୍କାର କଲା ପରି ଠିଆ ହୋଇଥାନ୍ତି । ଏମାନଙ୍କର ଅଣ୍ଟାଠାରୁ ମୁଣ୍ଡ ପର୍ଯ୍ୟନ୍ତ ମନୁଷ୍ୟାକୃତି ଓ ନିମ୍ନ ଅଂଶ ସର୍ପାକୃତି ହୋଇଥାଏ । କେତେକ ନାଗକନ୍ୟାମାନଙ୍କ ମୁଣ୍ଡ ଉପରେ ପାଞ୍ଚ ଗୋଟି ବା ସାତ ଗୋଟି ସର୍ପଫଣା ରହିଥାଏ । କେତେଗୋଟି ମୂର୍ତ୍ତିର ହସ୍ତରେ ପୁଷ୍ପମାଳା ରହିଥାଏ । (୧୨ଶ ଶତ) ପୁରୀର ଲକ୍ଷ୍ମୀଙ୍କ ମନ୍ଦିରରେ ନାଗଯୁଗ୍ମ ବା ନାଗଦମ୍ପତି ମୂର୍ତ୍ତି ରହିଥିବାର ଦେଖାଯାଏ । ଉତ୍କଳରେ ନାଗପୂଜା ଖ୍ରୀଷ୍ଟପୂର୍ବ ଯୁଗରୁ ହୋଇଥିବାର ବର୍ଣ୍ଣିତ ଅଛି । ମୟୂରଭଞ୍ଜର ନାଗବଂଶ ବା ଭଞ୍ଜ ବଂଶ ଏହି ନାଗପୂଜା ପ୍ରଥମେ ଆରମ୍ଭ କରିଥିବାର କିମ୍ବଦନ୍ତୀ ଅଛି । ଜୈନମାନେ ମଧ୍ୟ ନାଗପୂଜା କରୁଥିଲେ । ତ୍ରୟୋବିଂଶ ତୀର୍ଥଙ୍କର ପାର୍ଶ୍ୱନାଥଙ୍କ ମୁଣ୍ଡ ଉପରେ ସପ୍ତନାଗଫଣାର ଛତ୍ର ଦେଖାଯାଏ ।

(ଗ) ମତ୍ସ୍ୟକନ୍ୟା ମତ୍ସ୍ୟ କନ୍ୟାମାନଙ୍କର ଅଣ୍ଟାଠାରୁ ତଳ ପର୍ଯ୍ୟନ୍ତ ମତ୍ସ୍ୟାକୃତି ଓ ଊର୍ଦ୍ଧ୍ୱକୁ ନାରୀ ଆକୃତି । ଅଳ୍ପ କେତେଗୋଟି ପ୍ରାଚୀନ ମନ୍ଦିରର ମୁଖଶାଳାର ଦୁଇ ପାର୍ଶ୍ୱରେ ଏହି ମୂର୍ତ୍ତି ଦେଖାଯାଇଥାଏ ।

(ଘ) ଅପ୍ସରା—ପ୍ରତ୍ୟେକ ମନ୍ଦିରର କାନ୍ଥରେ ଛୋଟ ବା ବଡ଼ ଅପ୍ସରାମୂର୍ତ୍ତି-ମାନ ଖୋଦିତ ହୋଇଥାଏ । ଏମାନେ ସାଧାରଣତଃ ସ୍ତ୍ରୀମୂର୍ତ୍ତି ପରି ଦେଖାଯାନ୍ତି ଓ ଏମାନଙ୍କର ଦୁଇ ବାହୁ ପାର୍ଶ୍ୱରେ ଦୁଇ ଗୋଟି ପକ୍ଷ ଥିବାର ଦେଖାଯାଏ । ଏହି କାରଣରୁ ଏମାନଙ୍କୁ ପରୀ କୁହାଯାଏ । ଏହି ମୂର୍ତ୍ତିଗୁଡ଼ିକ ପ୍ରତ୍ୟେକ ପାର୍ଶ୍ୱଦେବତା ଓ ଅନ୍ୟ ଖୋଦିତ ଦେବଦେବୀ ମୂର୍ତ୍ତିର ଊର୍ଦ୍ଧ୍ୱଭାଗରେ ପୁଷ୍ପମାଳା ଧାରଣ କରି କଣ୍ଠାୟ୍ରମାନ ରହିଥାନ୍ତି ।

(ଙ) ପକ୍ଷଯୁକ୍ତ ପୁରୁଷମୂର୍ତ୍ତି—କେତେକ ମନ୍ଦିରରେ ପୁରୁଷ ମୂର୍ତ୍ତିର ମଧ୍ୟ ଦୁଇ ଗୋଟି ପକ୍ଷ ବା ପର ଥିବାର ଦେଖାଯାଏ । ଏଗୁଡ଼ିକ ଗ୍ରୀସ୍ ଦେଶର ମୂର୍ତ୍ତିସଦୃଶ ହୋଇଥାଏ ।

୧୦ମ । ସ୍ତ୍ରୀ ଓ ପୁରୁଷମାନଙ୍କର ଅଶ୍ଳୀଳ ମୂର୍ତ୍ତି—ଅଧିକାଂଶ ପ୍ରାଚୀନ ମନ୍ଦିରରେ ନାନା ପ୍ରକାର ଅଶ୍ଳୀଳ ମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ । ଏହି ମୂର୍ତ୍ତି ସମ୍ବନ୍ଧରେ ଭିନ୍ନ ଭିନ୍ନ ବ୍ୟକ୍ତି ଭିନ୍ନ ଭିନ୍ନ ମତ ବ୍ୟକ୍ତ କରିଥାନ୍ତି । କେତେକ ବ୍ୟକ୍ତି କହନ୍ତି ଯେ, ଏଗୁଡ଼ିକ ବଜ୍ରନିବାରଣ ଉଦ୍ଦେଶ୍ୟରେ ସୃଷ୍ଟ । ଅନ୍ୟ କେତେକଙ୍କର ମତ ଯେ, ଯାତ୍ରୀମାନେ ମନ୍ଦିରର ପ୍ରାଚୀରରେ ଖୋଦିତ ହୋଇଥିବା ଏହି ଅଶ୍ଳୀଳ ମୂର୍ତ୍ତିଙ୍କୁ ଦେଖି ମଧ୍ୟ ହୃଦୟରେ କୌଣସି ବିକାର ଅନୁଭବ ନ କରି ମନ୍ଦିର ମଧ୍ୟରେ ପ୍ରବେଶ ଲାଭପୂର୍ବକ ବିଶୁଦ୍ଧଚିତ୍ତରେ ଦେବ-ଦର୍ଶନ କରିବା ପାଇଁ ଏମାନେ ସୃଷ୍ଟ ହୋଇଅଛନ୍ତି । ପ୍ରାଚୀନ ଶିଳ୍ପୀମାନେ ରତିଶାସ୍ତ୍ର ବିଶେଷରୂପେ ଆଲୋଚନା କରି ସେହି ଶାସ୍ତ୍ରବର୍ଣ୍ଣିତ ୬୪ ପ୍ରକାର ରତି ପ୍ରସ୍ତରମୂର୍ତ୍ତି ମଧ୍ୟରେ ପ୍ରସ୍ଫୁଟିତ କରାଇବା ପାଇଁ ଏହି ଅଶ୍ଳୀଳ ମୂର୍ତ୍ତିମାନ ନିର୍ମାଣ କରିଥିବା ଅନୁମିତ ହୁଏ । କାରଣ ଶିଳ୍ପୀମାନଙ୍କ ଦୃଷ୍ଟିରେ ଏହି ଶ୍ରେଣୀର ଶିଳ୍ପକାର୍ଯ୍ୟ ଅଶ୍ଳୀଳ ନ ଥିଲା । ମନ୍ଦିରର ପ୍ରାଚୀରରେ ଖୋଦିତ ଏହି ମୂର୍ତ୍ତିଗୁଡ଼ିକ ସମ୍ପୂର୍ଣ୍ଣ ଅଶ୍ଳୀଳ ହେଲେ ମଧ୍ୟ ଅନ୍ୟ ଦେବଦେବୀ ମୂର୍ତ୍ତିମାନଙ୍କର କାରୁକାର୍ଯ୍ୟ ତୁଳନାରେ ଏଗୁଡ଼ିକ କୌଣସିମତେ ନ୍ୟୂନ ନୁହେଁ । ଏହି ଅଶ୍ଳୀଳମୂର୍ତ୍ତିଗୁଡ଼ିକ ମନ୍ଦିରର ବିମାନ ବ୍ୟତୀତ ଅନ୍ୟାନ୍ୟ ଅଂଶରେ ଦେଖାଯାଏ ।

୧୧ଶ । ଅଳଙ୍କାର—ମୂର୍ତ୍ତିମାନଙ୍କର ଦେବ ଓ ମାନବ ପ୍ରସ୍ତରମୂର୍ତ୍ତିର ଶରୀରର ପ୍ରତ୍ୟେକ ଅଂଶରେ ଯେଉଁ ଅଳଙ୍କାରମାନ ଖୋଦିତ ହୋଇଥାଏ, ସେଗୁଡ଼ିକୁ ଦେଖିଲେ

ସେକାଳର ସ୍ତ୍ରୀପୁରୁଷମାନେ କପର ଅଳଙ୍କାର ବ୍ୟବହାର କରୁଥିଲେ, ଏହା ସ୍ପଷ୍ଟ-ରୂପେ ଜଣା ପଡେ । ନିମ୍ନରେ ସେହିସବୁ କେତେଗୁଡିଏ ଅଳଙ୍କାରର ପରିଚୟ ଦିଆଗଲା ।

(କ) ମୁଣ୍ଡରେ—ପୁରୁଷମାନଙ୍କର—ନବରତ୍ନଖଚିତ କିରୀଟ । ସ୍ତ୍ରୀମାନଙ୍କର—ସିନ୍ଦୂର, ପାନପତ୍ର, ସେବତୀଫୁଲ (ଖୋସାରେ) ଇତ୍ୟାଦି

(ଖ) ନାକରେ—ସ୍ତ୍ରୀମାନଙ୍କର ନୋଥ, ଗୁଣା, ବସଣୀ; ଦଣ୍ଡି, ନାଲୁ

(ଗ) କାନରେ (ସ୍ତ୍ରୀ ଓ ପୁରୁଷ)—ମକରକୁଣ୍ଡଳ, ମଲ୍ଲକଢ଼ୀ, ଚନ୍ଦ୍ରସୂର୍ଯ୍ୟ

(ଘ) ବେକରେ ( " ) ସୋରିଷା, ମଣିମୁକ୍ତାହାର, (ଗଣେଶଙ୍କର ଛୋଟ ଛୋଟ ଘାଗୁଡି ବା ଘୁଙ୍ଗୁରମାଳ )

(ଙ) ହାତରେ (ବାହୁରେ ) ରତ୍ନଖଚିତ ବାହୁବନ୍ଧ, ତାଡ଼, (ମଣିବନ୍ଧରେ) ମଣିବନ୍ଧ, ଚୁଡ଼ୀ, ଖଡ଼ୁ (ଅଙ୍ଗୁଳିରେ) ମୁଦି ।

(ଚ) ଅଣ୍ଟାରେ—ଅଣ୍ଟାପାଟିଆ, ସୋରିଷା, ଶିଙ୍କୁଳି

(ଛ) ପାଦଗଣ୍ଠିରେ—(ସ୍ତ୍ରୀ) ବଳା, ପାହାଡ଼, ବାଙ୍କୀ, ପାପଦ୍ମ, ପାଉଁଟି

(ଜ) ପାଦ ଆଙ୍ଗୁଳି—(ସ୍ତ୍ରୀ) ଝୁଣ୍ଟିଆ, ମୁଦି, ଚମ୍ପୁଲି, ( କାର୍ତ୍ତିକେୟ ଓ ଗଣେଶଙ୍କ ପାଦରେ ଘାଗୁଡିମାଳ )

ଉପର୍ଯ୍ୟୁକ୍ତ ସମସ୍ତ ପ୍ରକାର ଅଳଙ୍କାରର ବର୍ଣ୍ଣନା ଓ ଗଠନପ୍ରଣାଳୀ ପ୍ରାଚୀନ ଶିଳ୍ପଶାସ୍ତ୍ରରେ ଅଛି । ପ୍ରାୟ ଦୁଇ ହଜାର ବର୍ଷ ତଳେ ଆମ ଦେଶର ଶିଳ୍ପୀମାନେ ଏହି ଶାସ୍ତ୍ରଗୁଡିକୁ ଆଲୋଚନା କରି ପ୍ରୋକ୍ତ ପ୍ରତିମୂର୍ତ୍ତି ଓ ଅଳଙ୍କାର ନିର୍ମାଣ କରିଥିବା ନିଃସନ୍ଦେହ ।

୧୨ଶ । କେଶବିନ୍ୟାସ—କେଶବିନ୍ୟାସ ସଭ୍ୟତାର ଅନ୍ୟ ଗୋଟିଏ ଅଙ୍ଗ । ମନ୍ଦିରର ସ୍ତ୍ରୀ ମୂର୍ତ୍ତି ଦେଖିଲେ ଜଣାଯାଏ ଯେ,ସେମାନଙ୍କର କେଶବିନ୍ୟାସର ପରିପାଟୀ ବଡ଼ ମନୋହର ଥିଲା । ଦୁଇ ତିନି ପ୍ରକାର ଖୋସା, ବେଣୀ, ଚୂଟି ପ୍ରଭୃତି ଓ ନାନା ପ୍ରକାର ସୁନ୍ଦର କେଶବିନ୍ୟାସ ପ୍ରଚଳିତ ଥିଲା । (ପ୍ରାଃ ଉଃ)

୧୩ଶ । ପୋଷାକ ପରିଚ୍ଛଦ—ଖ୍ରୀଷ୍ଟ ୩ । ୪ଶତବର୍ଷ ପୂର୍ବରୁ ଏ ଦେଶବାସୀ ଅତି ସରୁ ଓ ସୂକ୍ଷ୍ମ ଧୋତି ବ୍ୟବହାର କରୁଥିଲେ । ଏହାର ଜ୍ୱଳନ୍ତ ପ୍ରମାଣ ଉଦୟ-ଗିରିର ରାଣୀହଂସପୁରରେ ଥିବା ପ୍ରସ୍ତରମୂର୍ତ୍ତିଗୁଡିକରୁ ଜଣାପଡ଼େ । ଏଠାରୁ ଦ୍ୱାରପାଳ-

ଠାରୁ ଆରମ୍ଭ କରି ଅନ୍ୟାନ୍ୟ ପ୍ରତ୍ୟେକ ମୂର୍ତ୍ତିର ପୋଷାକ ପରିଚ୍ଛଦ ସୁସ୍ପଷ୍ଟରୂପେ ଦେଖାପଡ଼େ । ଦେବମନ୍ଦିରର ସ୍ତ୍ରୀ ଓ ପୁରୁଷମାନଙ୍କ ପ୍ରସ୍ତରମୂର୍ତ୍ତିଗୁଡ଼ିକ କିଛିକ୍ଷଣ ନିରୀକ୍ଷଣ କରି ଦେଖିଲେ ସେମାନଙ୍କ ଦେହରେ ଥିବା ପୋଷାକ ଅତି ସୂକ୍ଷ୍ମ ଓ ସ୍ନିଗ୍ଧ ଥିବାର ଜଣାଯାଏ ଏବଂ ପ୍ରତ୍ୟେକ ଶାଢ଼ୀ ଓ ପିନ୍ଧା ଲୁଗାର ଧଡ଼ିରେ ଅତି ସୂକ୍ଷ୍ମ କାରିଗରି କାମ ଦେଖାଯାଏ ।

କେତେକ ଯୋଦ୍ଧାଙ୍କ ମୁଣ୍ଡରେ ପଗଡ଼ି ଓ ଅଣ୍ଟାରେ ପାଇକଚ୍ଛା ବା ଫରିକଚ୍ଛା ଦେଖାଯାଏ । କୋଣାର୍କ ମନ୍ଦିରର କେତେକ ପ୍ରସ୍ତରମୂର୍ତ୍ତିରେ ଉତ୍କଳ-ଯନ୍ତ୍ରରେ ତିଆରି ଦେଇଥିବା ଜାତୀୟ ପଗଡ଼ି ପରି ପଗଡ଼ିର ଚିହ୍ନ ମଧ୍ୟ ଦେଖାଯାଏ ।

୧୪ଶ । ଉପକରଣ—ସେକାଳର ଲୋକମାନେ କି କି ପ୍ରକାର ଉପକରଣ ବ୍ୟବହାର କରୁଥିଲେ, ତାହାର କେତେକ ଚିହ୍ନ ମଧ୍ୟ ଏହି ମନ୍ଦିର ଦେହରେ ଖୋଦିତ ହୋଇଅଛି । ତନ୍ମଧ୍ୟରୁ ଖଟ, ପଲଙ୍କ, ଚୌକି, ବେଞ୍ଚ ପ୍ରଭୃତି ପ୍ରଧାନ ଅଟେ । ସାଧାରଣ ଗୃହୋପକରଣ ମଧ୍ୟରୁ ଥାଳି, ଗିନା, ମାଠିଆ, ଗିଲାସ, ପିକଦାନୀ, ଛତା, ପଙ୍ଖା ଓ ଚାମର ପ୍ରଭୃତିର ଚିହ୍ନ ମଧ୍ୟ ଦେଖାଯାଏ ।

୧୫ଶ । **ବାଦ୍ୟାଦି ଯନ୍ତ୍ର**—ଦେବମନ୍ଦିରରେ ଠାକୁରଙ୍କ ନାମ କୀର୍ତ୍ତନ କରିବା ଓ ସେହି ଉଦ୍ଦେଶ୍ୟରେ ନୃତ୍ୟ ଗୀତାଦି କରିବା ଉତ୍କଳର ପ୍ରାଚୀନ ଅଧିବାସୀମାନେ ଜାଣିଥିଲେ । ସେହି ଉଦ୍ଦେଶ୍ୟରେ ବ୍ୟବହୃତ ଭିନ୍ନ ଭିନ୍ନ ପ୍ରକାରର ବାଦ୍ୟଯନ୍ତ୍ରର ଚିହ୍ନ ପ୍ରାଚୀନ ମନ୍ଦିରପ୍ରାଚୀରରେ ଖୋଦିତ ହୋଇଥିବାର ଦେଖାଯାଏ । ଯାତ୍ରୀମାନେ ଏହି ନୃତ୍ୟଗୀତରେ ଯୋଗ ଦେବା ପାଇଁ ଦେବମନ୍ଦିରର ଏକ ଅଂଶକୁ ନାଟମନ୍ଦିରରୂପେ ବ୍ୟବହାର କରିଥାନ୍ତି । ଉତ୍କଳର ଅନ୍ୟ ମନ୍ଦିର ଅପେକ୍ଷା କୋଣାର୍କର ନାଟ ମନ୍ଦିରରେ ବହୁସଂଖ୍ୟକ ବାଦ୍ୟଯନ୍ତ୍ରର ଚିହ୍ନ ଦେଖାଯାଏ । ତନ୍ମଧ୍ୟରେ ଢୋଲ, ପଖଉଜ, ବୀଣା, ମର୍ଦ୍ଦଳ, ଘଣ୍ଟା, ମୃଦଙ୍ଗ, କାହାଳୀ, ତାଳ ବା କରତାଳ, ଶଙ୍ଖ ଓ ବଂଶୀ ପ୍ରଭୃତି ପ୍ରଧାନ ଅଟେ ।

୧୬ଶ । ଶସ୍ତ୍ରାସ୍ତ୍ର—ଅତି ପ୍ରାଚୀନକାଳରୁ ଉତ୍କଳବାସୀ ନିଜର ଆତ୍ମରକ୍ଷା କରିବା ପାଇଁ ଯୁଦ୍ଧାଦି କରୁଥିଲେ ଓ ସେହି ଉଦ୍ଦେଶ୍ୟରେ ନାନା ପ୍ରକାର ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ । ମଗଧସମ୍ରାଟ ଅଶୋକଙ୍କ ତ୍ରୟୋଦଶ ଶିଳାଶାସନରୁ ଏକଥା

ସ୍ପଷ୍ଟ ଜଣାଯାଏ ଯେ, ଖ୍ରୀଷ୍ଟପୂର୍ବ ୨୦୦ ଅବ୍ଦରେ ଏ ଦେଶବାସୀ ଯୁଦ୍ଧପ୍ରବୀଣ ଥିଲେ । ମହାଭାରତ ଯୁଗରେ ଜଣେ ଉତ୍କଳ ରାଜା ୨୦୦୦୦ ରଥ ଓ ପର୍ବତ ସମାନ ଦଶ ହଜାର ହାତୀ ନେଇ କୁରୁକ୍ଷେତ୍ରରେ ଲୋମହର୍ଷଣକାରୀ ଯୁଦ୍ଧ କରିଥିବାର ବର୍ଣ୍ଣିତ ଅଛି । ସେକାଳର ଯୁଦ୍ଧାସ୍ତ୍ର ମଧ୍ୟରୁ ନିମ୍ନ କେତେଗୋଟିର ଚିତ୍ର କେତେକ ପ୍ରାଚୀନ ମନ୍ଦିରର ପ୍ରାଚୀରରେ ଦେଖାଯାଏ ।

ବର୍ଚ୍ଛା, ଖଣ୍ଡା, ତରବାରୀ, କଟାରି, ଭୁଷି, (ଭାଲ୍ଲ) ଢାଲ, ଚାଣ୍ଡ୍ର, ଚାଣ୍ଡ୍ରପାଉଁଶ, ବାଙ୍କ ଛୁରି, ଧନୁଃଶର ପ୍ରଭୃତି । ସେକାଳର ଯୋଦ୍ଧାମାନେ ଦେହରେ ସାଞ୍ଜୁ ଓ ମୁଣ୍ଡରେ ଅର୍ଦ୍ଧବୃତ୍ତାକାର ଶିରୋରକ୍ଷକ ବା କବଚ ଧାରଣ କରି ଯୁଦ୍ଧ କରୁଥିଲେ । ଏହିପରି କେତେ ଗୋଟି ଚିତ୍ର ପ୍ରାଚୀ ନଦୀତୀରବର୍ତ୍ତୀ ବାରହୀ ମନ୍ଦିରରେ ଦେଖାଯାଏ ।

୧୭ଶ । ଯାନ—ପାଲିଙ୍କି, ସବାରି ଓ ଚଉଦୋଳ ପ୍ରଭୃତି ସେକାଳର ପ୍ରଧାନ ଯାନ ଥିଲା । ଜଣେ ଋଷି ବା ଧର୍ମଯାଜକ ଚଉଦୋଳରେ ବସି ଯୋଡ଼ିଏ ଗ୍ରାମ ମଧ୍ୟଦେଇ ଯାଉଥିବା ଚିତ୍ର ରାଣୀହଂସପୁରରେ ଖୋଦିତ ହୋଇଅଛି । ଭୁବନେଶ୍ୱରର ଓ କୋଣାର୍କର କେତେକ ମନ୍ଦିରରେ ମଧ୍ୟ ଏହିପରି ଯାନଗୁଡ଼ିକର ଚିତ୍ର ଦେଖାଯାଏ ।

୧୮ଶ । ଆୟୁଧ—ଉପର୍ଯ୍ୟୁକ୍ତ ଯୁଦ୍ଧାସ୍ତ୍ର ବ୍ୟତୀତ ଦେବଦେବୀଙ୍କ ହସ୍ତରେ ଅନେକ ପ୍ରକାର ଆୟୁଧ ଥିବାର ଦେଖାଯାଏ । ଯଥା—

ବିଷ୍ଣୁଙ୍କ ଚାରି ହାତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ
ଶିବଙ୍କ ହସ୍ତରେ ତ୍ରିଶୂଳ, ସର୍ପ ଓ ଡମ୍ବରୁ
କାର୍ତ୍ତିକେୟ ଓ ଗଣେଶ—ତ୍ରିଶୂଳ
ଦୁର୍ଗାଙ୍କ ହସ୍ତରେ—ଖଣ୍ଡା, ଡମ୍ବରୁ, ଜପମାଳା, ଅଗ୍ନିପାତ୍ର ଓ ଛିନ୍ନମସ୍ତକ ପ୍ରଭୃତି

୧୯ଶ । ପଶୁ ଓ ପକ୍ଷୀମାନଙ୍କର ପ୍ରତିମୂର୍ତ୍ତି—ଅଧିକାଂଶ ପ୍ରାଚୀନ ମନ୍ଦିରର ବାହାର ପ୍ରାଚୀରରେ ନିମ୍ନ କେତେଗୋଟି ପଶୁପକ୍ଷୀଙ୍କର ପ୍ରତିମୂର୍ତ୍ତି ଖୋଦିତ ହୋଇଥାଏ ।

(କ) ହାତୀ—ପୂର୍ବେ ଉତ୍କଳରେ ପ୍ରଚୁର ପରିମାଣରେ ହାତୀ ମିଳୁଥିଲେ । ବର୍ତ୍ତମାନ ମଧ୍ୟ ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ଅନେକ ବଣ ବଡ଼ ହାତୀ ମିଳନ୍ତି ।

ଖ୍ରୀଃ ପୂ ୩୦୦।୪୦୦ ଅବ୍ଦରେ ଏ ଦେଶବାସୀ ହସ୍ତୀ ବ୍ୟବହାର କରୁଥିବାର ପ୍ରମାଣ ଅଶୋକ ଶିଳାଲିପିରୁ ଜଣାଯାଏ । ଭାରତର ଅତି ପ୍ରାଚୀନ ଓ ପ୍ରସିଦ୍ଧ ପ୍ରସ୍ତରନିର୍ମିତ ହସ୍ତୀ ଭୁବନେଶ୍ୱର ଅନ୍ତର୍ଗତ ଧଉଳି ଗ୍ରାମର ଅଶ୍ୱତ୍ଥାମା ପାହାଡ଼ରେ ଦୃଷ୍ଟିଗୋଚର ହୁଏ । ଖ୍ରୀଃ ପୂ ୨୬୨ ଅବ୍ଦରେ ଅର୍ଥାତ୍ କଳିଙ୍ଗ ଅଧିକାର ପରେ ଅଶୋକଙ୍କ ଆଦେଶମତେ ଏହି ହାତୀର ପ୍ରସ୍ତରମୂର୍ତ୍ତି ଓ ସନ୍ନିକଟବର୍ତ୍ତୀ ଅଶୋକ ଶିଳାଲିପି ପ୍ରସ୍ତର ଦେହରେ ଖୋଦିତ ହୋଇଥିଲା । ପ୍ରାଚୀନ ମନ୍ଦିରରେ ଥିବା ଅନ୍ୟାନ୍ୟ ସମସ୍ତ ଜୀବଜନ୍ତୁଙ୍କ ଅପେକ୍ଷା ହାତୀର ପ୍ରସ୍ତରମୂର୍ତ୍ତିଗୁଡ଼ିକୁ ଉତ୍କଳର ପ୍ରାଚୀନ ଶିଳ୍ପୀମାନେ ଦକ୍ଷ ଦକ୍ଷତାର ସହିତ ନିର୍ମାଣ କରିଥିଲେ ।

ଉଦୟଗିରିର ସ୍ୱର୍ଣ୍ଣୀହଂସପୁର ନିକଟବର୍ତ୍ତୀ ଦୁଇଟି ଗୁମ୍ଫାକୁ ହାତୀଗୁମ୍ଫା ଓ ଛୋଟ ହାତୀଗୁମ୍ଫା କହନ୍ତି । ହାତୀ ଗୁମ୍ଫାର ଉପରଭାଗରେ କଳିଙ୍ଗ ଚକ୍ରବର୍ତ୍ତୀ ଖାରବେଳଙ୍କ ଇତିହାସପ୍ରସିଦ୍ଧ 'ହାତୀଗୁମ୍ଫା ଲିପି' ଖୋଦିତ ହୋଇଅଛି । ଛୋଟ ହାତୀ ଗୁମ୍ଫାର ଗୋଟିଏ ସ୍ତମ୍ଭରେ 'ହାତୀ ସ୍ୱାଗତ'ର ଚିତ୍ର ଖୋଦିତ ଅଛି । ଏହି ଚିତ୍ରରେ ଗୋଟିଏ ହାତୀ ଅନ୍ୟ ଏକ ହାତୀର ମୁଣ୍ଡ ଉପରେ ଛତାଟିଏ ଧରି ଠିଆ ହୋଇଅଛି । ଏହି ଦୁଇ ହାତୀଙ୍କ ଉପରେ ଅନ୍ୟ ଏକ ହାତୀ ଚାମର ଧରି ବସିଅଛି ।

କୋଣାର୍କ ମନ୍ଦିରର ହାତୀ ଚିତ୍ର ଅତି ସୁନ୍ଦର ଦେଖାଯାଏ । କୋଣାର୍କର ବେଢ଼ା ମଧ୍ୟରେ ୭ଫୁଟ ଲମ୍ବା ୫ଫୁଟ ଓସାର ଓ ୭ଫୁଟ ଉଚ୍ଚତାବିଶିଷ୍ଟ ଦୁଇ ଗୋଟି ପ୍ରକାଣ୍ଡ ହସ୍ତୀ ଅବସ୍ଥାପିତ ହୋଇଅଛି । ଏ ହସ୍ତୀ ଦୁଇଟି ଦୂରରୁ ଜୀବନ୍ତ ହସ୍ତୀ ପରି ପ୍ରତୀୟମାନ ହୁଅନ୍ତି । କୋଣାର୍କ ମନ୍ଦିରର ବାଡରେ ଯୂଥ ଯୂଥ ହସ୍ତୀ ଚିତ୍ର ଦୃଷ୍ଟିଗୋଚର ହୁଏ ।

(ଗ) ଘୋଡ଼ା—ପ୍ରସ୍ତରଦ୍ୱାରା ଅଶ୍ୱର ପ୍ରସ୍ତରମୂର୍ତ୍ତି ନିର୍ମାଣ କରିବା ଉତ୍କଳରେ ବିରଳ ନ ଥିଲା । ଏ ଦେଶର ଅତି ପ୍ରାଚୀନ ଘୋଡ଼ାମୂର୍ତ୍ତି ଉଦୟଗିରିର ସ୍ୱର୍ଣ୍ଣୀହଂସ ପୁରରେ ଦେଖାଯାଏ । ଏହାହିଁ ଉତ୍କଳର ସର୍ବପ୍ରଥମ ପ୍ରସ୍ତରନିର୍ମିତ ଘୋଟକ ମୂର୍ତ୍ତି । କୋଣାର୍କ ମନ୍ଦିରର ସୂର୍ଯ୍ୟଙ୍କର ସପ୍ତାଶ୍ୱ ମୂର୍ତ୍ତି ଆଧୁନିକ ଯୁଗର ଅତି ସୁନ୍ଦର ମୂର୍ତ୍ତି । କୋଣାର୍କ ମୁଖଶାଳାର ଦକ୍ଷିଣରେ ଥିବା ପ୍ରକାଣ୍ଡ ଅଶ୍ୱ ମୂର୍ତ୍ତି ଦୁଇଟି ଅଦ୍ଭୁତ ଆଶ୍ଚର୍ଯ୍ୟଜନକ । ଏଥିରେ ପ୍ରକୃତିର ଅନୁକରଣ ଥିଲା ପରି ବୋଧ ହୁଏ ନାହିଁ । ବରଂ ଦୁଇଗୋଟି ଜୀବନ୍ତ ଘୋଡ଼ା ପ୍ରବଳ ବେଗରେ ରଣକ୍ଷେତ୍ରରେ ଧାବମାନ ହେଉଥିବାର ଜଣାପଡ଼େ ଏବଂ ସେମାନଙ୍କୁ ହଠାତ୍ ଦେଖିଲେ ହୃଦୟରେ ବାସ୍ତବିକ ଭୟ ଜାତ ହୁଏ ।" (କୋଣାର୍କ) ଏହି ଦୁଇ ଗୋଟି ଘୋଡ଼ା ସମ୍ବନ୍ଧରେ ଅଧ୍ୟାପକ 'ହାଭେଲ୍ ସାହେବ' ଲେଖିଅଛନ୍ତି—

"କୈବାତ୍ ଏହି ଅଶ୍ୱ କୁଇଟି ଯଦି ଗ୍ରୀସୀୟ ବା ରୋମୀୟ ସ୍ଥାପତ୍ୟ ହୋଇଥାନ୍ତା, ତା ହେଲେ ଏହି ଚମତ୍କାର କଳାକୌଶଳ ସ୍କଟ୍ଲେଣ୍ଡ ବା ଆମେରିକାର ରାଜଧାନୀମାନଙ୍କରେ ଥିବା ପ୍ରଧାନ ପ୍ରଧାନ ଯାଦୁଘରମାନଙ୍କର ସର୍ବଶ୍ରେଷ୍ଠ ଗୌରବାବହ ବସ୍ତୁ ହୋଇଥାନ୍ତା । ଏହି ଅଶ୍ୱ ଦୁଇ ଗୋଟିକୁ ନିର୍ମାଣ କରି ପ୍ରାଚୀନ ଉତ୍କଳୀୟ ଶିଳ୍ପୀମାନେ ନିଜର ଉତ୍କୃଷ୍ଟ ଶିଳ୍ପପଟୁତାକୁ ଦେଖାଇ ପାରିଅଛନ୍ତି । ପ୍ରତ୍ୟେକ ଘୋଡ଼ାର ଲମ୍ବା ୧୦ ଫୁଟ, ଓସାର ୬ ଫୁଟ ଓ ଉଚ୍ଚତା ୬ ଫୁଟ ୪ ଇଞ୍ଚ ଅଟେ । ଏହି କୁଇଟି ଅଶ୍ୱ ସୁଦୀର୍ଘ ୬୦୦ ବର୍ଷ ହେଲା ଝଡ଼, ପାଣି ଓ ପବନ ଖାଇ ମୁକ୍ତ ଆକାଶ ତଳେ ପଡ଼ିରହି ସୁଦ୍ଧା ସେହିପରି ଅକ୍ଷୁଣ୍ଣ ରହିଥିବାର ଦେଖିଲେ ସେକାଳର ଶିଳ୍ପୀମାନେ କିପରି ସ୍ଥାପତ୍ୟ ବିଦ୍ୟାରେ ଅସୀମ ପାରଦର୍ଶିତା ଲାଭ କରିଥିଲେ ତାହା ସହଜରେ ଅନୁମିତ ହୁଏ ।

(ଗ) ଗଜସିଂହ—ପ୍ରତ୍ୟେକ ମନ୍ଦିରର ବିମାନ 'ରହା ପାଗ'ର ମଧ୍ୟ-ଭାଗରେ ଗଜସିଂହର ପ୍ରସ୍ତରମୂର୍ତ୍ତି ଥାଏ । ହାତୀ ନିଜର ଶୁଣ୍ଢରେ ମନୁଷ୍ୟଟି ଧରି ବସିଥାଏ । ସେହି ହାତୀର ପିଠି ଉପରକୁ ଏକ ସିଂହ କୀପ୍ରକ୍ ସହିତ ମାଡି ବସିଥାଏ।

(ଘ) ସିଂହ --କେତେକ ମନ୍ଦିରରେ ସିଂହର ପାଷାଣମୟୀ ମୂର୍ତ୍ତି ଦେଖା-ଯାଏ । ମନ୍ଦିରର ପୂର୍ବଦ୍ୱାର ଓ ଭୋଜନଅଭରର ପୂର୍ବଦ୍ୱାରକୁ 'ସିଂହଦ୍ୱାର' କୁହାଯାଏ। ଏହି 'ସିଂହଦ୍ୱାର'ର ଉଭୟ ପାର୍ଶ୍ୱରେ ଦୁଇଗୋଟି ପ୍ରକାଣ୍ଡ ସିଂହ ମୂର୍ତ୍ତି ଥାଏ । କୋଣାର୍କ ମନ୍ଦିରର ସ୍ଥାନେ ସ୍ଥାନେ ପକ୍ଷଯୁକ୍ତ ସିଂହ ଓ ଅନ୍ୟ କେତେକ ସ୍ଥଳରେ ଶୃଙ୍ଗବିଶିଷ୍ଟ ସିଂହର ପ୍ରସ୍ତରମୂର୍ତ୍ତି ମଧ୍ୟ ଦେଖାଯାଏ ।

(ଙ) ଓଲଟା ଗଜସିଂହ .—କୋଣାର୍କର ବଡ଼ ଦେଉଳରେ ଆଉ ଏକ ଅଦ୍ଭୁତ ରକମର ଗଜସିଂହ ଦେଖାଯାଏ । ଗୋଟିଏ ଉନ୍ମତ୍ତ ସିଂହମୂର୍ତ୍ତି ପଛ ଗୋଡ଼ରେ ହାତୀ ଉପରେ ଠିଆ ହୋଇଅଛି । ଏହି ସିଂହର ମୁଖରେ ଲଗାମ ରହିଅଛି । ଜଣେ ସ୍ତ୍ରୀ ସିଂହ ପିଠି ଉପରେ ବସି ସେହି ଲଗାମ ଧରିଅଛି । ଲଗାମ ଦେହରୁ ତଳକୁ ଶିକୁଳିମାଳ ଝୁଲି ପଡ଼ିଛି । ସିଂହର ନାକ ଓ କାନ ଏପରି ହୋଇଅଛି ଯେ, ତାହାକୁ ଦେଖିଲେ ଭୟ ଲାଗେ । ଏହି ମୂର୍ତ୍ତିର ନାମ ଛୁଡ଼ା ଉଡ଼ା ଗଜସିଂହ ବା ଓଲଟ ଗଜସିଂହ। ଏପରି ମୂର୍ତ୍ତି ଅନ୍ୟ କୌଣସି ମନ୍ଦିରରେ ଦେଖାଯାଏ ନାହିଁ ।

"ଉନ୍ମତ୍ତ ସିଂହର ପିଠି ଉପରେ ଲଗାମ ଧରି ସ୍ତ୍ରୀ ଜଣେ ବସିଥିବାର ଦେଖିଲେ ସ୍ୱତଃ ଜଣାପଡ଼େ ଯେ, ସେହି ଯୁଗରେ ସ୍ତ୍ରୀଲୋକମାନେ ଯେପରି ବୀର ଭାବରେ

ଉତ୍ଖୋଦିତ ହେଉଥିଲେ, ସ୍ତ୍ରୀମାନେ ମଧ୍ୟ ସେମାନଙ୍କର ସହଜଜାତ କୋମଳ ଜନନୀ ଓ ପତ୍ନୀଭାବସତ୍ତ୍ୱେ, ମଧ୍ୟେ ମଧ୍ୟେ ବୀର ଭାବର ଉନ୍ମାଦନା ଅନୁଭବ କରୁଥିଲେ । ଅବଶ୍ୟ ଏହି ଦୃଶ୍ୟ କାଳ୍ପନିକ ସତ୍ୟ; ତଥାପି କଳ୍ପନା ମଧ୍ୟ ବାସ୍ତବ-ସ୍ୱଜ୍ୟର ଅନୁଭୂତିର ଅପେକ୍ଷା ରଖେ ।" (କୋଣାର୍କ)

(ଚ) ବାଘ—ଉତ୍କଳର ଜଙ୍ଗଲରେ ବହୁସଂଖ୍ୟକ ବାଘ ଦେଖାଯାନ୍ତି । କିନ୍ତୁ ପ୍ରାଚୀନ ଶିଳ୍ପୀମାନେ କୌଣସି ମନ୍ଦିର ଦେହରେ ବ୍ୟାଘ୍ରର ପ୍ରସ୍ତରମୂର୍ତ୍ତି ଖୋଦିତ କରୁନାହାନ୍ତି । କେବଳ ଉଦୟଗିରିର ଗୋଟିଏ ଗୁମ୍ଫାକୁ ବ୍ୟାଘ୍ରଗୁମ୍ଫା କୁହାଯାଏ । ସେହି ଗୁମ୍ଫାର ଉପର ପ୍ରସ୍ତର ଦେହରେ ବ୍ୟାଘ୍ରର ଆଖି, ନାକ, ତୁଣ୍ଡ ଓ ମୁହଁର ଆକାର ଦେଖାଯାଏ ।

(ଛ) ହରିଣ—ହରିଣ ବାୟୁଙ୍କର ବାହନ । ବାୟୁଙ୍କର ପ୍ରସ୍ତରମୂର୍ତ୍ତି ସଙ୍ଗେ ହରିଣର ପ୍ରସ୍ତରମୂର୍ତ୍ତି ମଧ୍ୟ ଅଧିକାଂଶ ମନ୍ଦିରରେ ଦେଖାଯାଏ । କେତେକ ମନ୍ଦିରରେ ଯୂଥ ଯୂଥ ହରିଣ ଏବଂ ହରିଣ ଶିକାରର ଚିତ୍ର ଦେଖାଯାଏ । ରାଣୀହଂସପୁରର ଗୋଟିଏ ଶିକାର ଦୃଶ୍ୟରେ ଥିବା ହରିଣର ପକ୍ଷ ଥିବାର ଦେଖାଯାଏ ।

(ଜ) ଷଣ୍ଢ ବା ବୃଷଭ—ଶିବଙ୍କ ବାହନ ବୃଷଭର ପକ୍ଷିତସ୍ମ ପୂର୍ବରୁ ଦିଆଯାଇଅଛି । ଏହା ପ୍ରତ୍ୟେକ ଶିବମନ୍ଦିରରେ ଦେଖାଯାଏ । ଭୁବନେଶ୍ୱର ମନ୍ଦିରର ନାଟମନ୍ଦିରକୁ ଲଗି (ଉତ୍ତର ଦିଗରେ) ଗୋଟିଏ ପୀଢ଼ ଦେଉଳ ମଧ୍ୟରେ ଯେଉଁ ବୃହଦାକାର ବୃଷଭ ଦେଖାଯାଏ, ସେପରି ମୂର୍ତ୍ତି ସମଗ୍ର ଉତ୍କଳରେ ଦେଖାଯାଏ ନାହିଁ । ଏହିପରି ଅନ୍ୟ ଏକ ବୃଷଭ ମୂର୍ତ୍ତି ବୋଲଗଡ଼ ଥାନା ଅନ୍ତର୍ଗତ 'ବାଙ୍କୋଇ' ଗ୍ରାମର ଶିବମନ୍ଦିରରେ ଦେଖାଯାଏ । ଏହି ବୃଷଭର ଉଚ୍ଚତା ପ୍ରାୟ ୫ ଫୁଟ; ଏହାର କାନ, ଆଖି, ଚୁଳ, ପିଠି ଶିଙ୍ଗ, ଗୋଡ଼, ଖୁରା ପଗ, ଲଙ୍ଗୁଳ, ଶୋଇବା ଓ ଗୋଡ଼ ଭାଙ୍ଗିବାର ଠାଣି ପ୍ରଭୃତି ଦେଖିଲେ ପ୍ରାଚୀନ ଶିଳ୍ପୀମାନେ ଜୀବଜନ୍ତୁଙ୍କର ପ୍ରକୃତ ଆକୃତି ଦେଖି କିପରି ମୂର୍ତ୍ତି ନିର୍ମାଣ କରୁଥିଲେ, ତାହା ସହଜରେ ଜଣାଯାଏ ।

(ଝ) ହନୁମାନ—ଅନେକ ମନ୍ଦିର ଦେହରେ ଛୋଟ ଓ ବଡ଼ ହନୁମାନ ବା ବାନର ମୂର୍ତ୍ତି ଦେଖାଯାଏ । ପୁରୀ ଜଗନ୍ନାଥ ମନ୍ଦିରର ଦକ୍ଷିଣଦ୍ୱାରକୁ ଲଗି ଯେଉଁ କପାଟ ହନୁମାନ ମୂର୍ତ୍ତି ଅଛି, ତାହାହିଁ ଉତ୍କଳର ଅତି ବଡ଼ ପ୍ରସ୍ତରମୂର୍ତ୍ତି ।

(ଞ) ସାପ— ଶିବ, ନାଗକନ୍ୟା ଓ କୃଷ୍ଣଙ୍କର ଅନନ୍ତଶୟନ ମୂର୍ତ୍ତିରେ ସାପର ପ୍ରସ୍ତରମୂର୍ତ୍ତି ସୁନ୍ଦରରୂପେ ନିର୍ମିତ ହୋଇଥିବାର ଦେଖାଯାଏ ।

(ଟ) ମୟୂର—କାର୍ତ୍ତିକେୟଙ୍କ ବାହନ ମୟୂରର ଚିତ୍ର ପ୍ରତ୍ୟେକ ଶିବମନ୍ଦିରରେ ଦେଖାଯାଏ । ଖଣ୍ଡିଏ ପ୍ରସ୍ତରରେ କାର୍ତ୍ତିକେୟ ଓ ଅନ୍ୟାନ୍ୟ ପ୍ରତିମୂର୍ତ୍ତିଙ୍କ ସଙ୍ଗେ ମୟୂରର ପ୍ରତିମୂର୍ତ୍ତି ଅତି ସ୍ପଷ୍ଟଭାବରେ ନିର୍ମିତ ହୋଇଥାଏ ।

(ଠ) ହଂସ—ସରସ୍ୱତୀଙ୍କ ବାହନ ହଂସର ଚିତ୍ର ଉତ୍କଳୀୟ ମନ୍ଦିରମାନଙ୍କରେ କ୍ୱଚିତ୍ ଦେଖାଯାଏ ।

(ଡ) ଶୁଆ—ଅଳ୍ପ କେତେକ ମନ୍ଦିରରେ ଶୁଆମାନଙ୍କର ପାଷାଣ ମୂର୍ତ୍ତି ଦେଖାଯାଏ ।

(ଢ) ମୂଷା—ପ୍ରତ୍ୟେକ ଶିବମନ୍ଦିରରେ ଗଣେଶଙ୍କ ପାଦତଳେ କିମ୍ବା ତାଙ୍କ ପାଶ୍ୱର୍ରେ ମୂଷାର ପ୍ରତିମୂର୍ତ୍ତି ଦେଖାଯାଇଥାଏ । ଭୁବନେଶ୍ୱରର ଗଣେଶ ମୂର୍ତ୍ତି ନିକଟରେ ଥିବା ମୂଷିକ ମୂର୍ତ୍ତି ଅତି ବଡ଼ ଅଟେ ।

(ଣ) ଜିରାଫ୍—କୋଣାର୍କର ଜଗମୋହନର ଦକ୍ଷିଣ ପାର୍ଶ୍ୱରେ ଗୋଟିଏ ଜିରାଫର ପ୍ରତିମୂର୍ତ୍ତି ଦେଖାଯାଏ । ଏପରି ମୂର୍ତ୍ତି ଅନ୍ୟ କୌଣସି ମନ୍ଦିରରେ ଦେଖାଯାଏ ନାହିଁ ।

୨୦ଶ । ପୁଷ୍ପଲତାର ଶିଳ୍ପ—ପ୍ରାୟ ପ୍ରତ୍ୟେକ ମନ୍ଦିରର କାନ୍ଥରେ ଭିନ୍ନ ଭିନ୍ନ ପ୍ରକାର ପୁଷ୍ପ ଓ ବୃକ୍ଷଲତାର ଖୋଦିତ ଚିତ୍ର ଦେଖାଯାଏ । ଏସବୁ ଚିତ୍ର ମନ୍ଦିରର ଶୋଭା ବର୍ଦ୍ଧନ କରେ । ଲତା ଚିତ୍ର ଚାରି ପ୍ରକାର ।

(୧) ଫୁଲ ଲତା—ଯେଉଁ ଲତାରେ ଫୁଲ କାମ ଅଧିକ ହୋଇଥାଏ ।
(୨) ଲଟିଲତା—ଯେଉଁ ଲତାରେ ଲଟୀ ପରି ଫୁଲ, ଲତା ଓ ପତ୍ର ଥାଏ ।
(୩) ପତ୍ରଲତା—ଯେଉଁ ଲତାରେ ପ୍ରଚୁର ପତ୍ର କେବଳ ଦେଖାଯାଏ ।
(୪) ବନଲତା—ଯାହାର ଚିତ୍ର ମୋଟା ଓ ଗହଳ ଥାଏ ।

ଏହି ସବୁ ଲତାର ଗଠନପ୍ରଣାଳୀ ପ୍ରାଚୀନ ଶିଳ୍ପଶାସ୍ତ୍ରରେ ବର୍ଣ୍ଣିତ ଅଛି ।

ଶିକୁଳି—ଲତା ବ୍ୟତୀତ ଭିନ୍ନ ଭିନ୍ନ ମନ୍ଦିରରେ ଅତି ସରୁ ଓ ସୂକ୍ଷ୍ମ ଶିକୁଳିର ଖୋଦିତ ଚିତ୍ର ଦେଖାଯାଏ । କେତେକ ମନ୍ଦିରର କାନ୍ଥରେ ଲମ୍ବ ଚାରି ଗୋଟି "କୀର୍ତ୍ତି-ମୁଖ" ଖୋଦିତ ହୋଇ ସେହି ପ୍ରତ୍ୟେକ କୀର୍ତ୍ତିମୁଖ ଗହ୍ୱରରୁ ଲମ୍ବ ଗୋଟି ଶିକୁଳୀ ବାହାରି ପରସ୍ପର ସଙ୍ଗେ ସଂଯୁକ୍ତ ହୋଇଥାଏ ।

ବୃକ୍ଷ—ପ୍ରାଚୀନ ବୌଦ୍ଧ ଶିଳ୍ପରେ 'ବୋଧି ଦ୍ରୁମ'ର ଚିତ୍ର ଦେଖାଯାଇଥାଏ । ରାଣୀହଂସ ପୁରରେ ମଧ୍ୟ କେତେକ ବୃକ୍ଷର ଖୋଦିତ ଚିତ୍ର ଦେଖାଯାଏ ।

ପୁଷ୍ପ—ପୁଷ୍ପ ମଧ୍ୟରେ ଶତ ଦଳ ଓ ଓଲଟ ପଦ୍ମର ଭାସ୍କର କାର୍ଯ୍ୟ ପ୍ରାୟ ସବୁ ଶ୍ରେଣୀର ପ୍ରାଚୀନ ମନ୍ଦିରରେ ଦେଖାଯାଏ । କୋଣାର୍କ ମନ୍ଦିରରେ ମନ୍ଦିରର ପ୍ରତ୍ୟେକ ସ୍ଥାନରେ ପଦ୍ମ ପୁଷ୍ପର ବିଭିନ୍ନ ଅବସ୍ଥାର ଯେପରି ଖୋଦିତ ଚିତ୍ର ବହୁଳ ଭାବରେ ଦୃଷ୍ଟି-ଗୋଚର ହୁଏ, ତାହା ଉତ୍କଳର ଅନ୍ୟ କୌଣସି ସ୍ଥାନରେ ପରିଦୃଷ୍ଟ ହୁଏ ନାହିଁ ।

୬୧ଶ । ଅନ୍ୟ କେତେକ ବିଶିଷ୍ଟ ଦୃଶ୍ୟର ପ୍ରତିମୂର୍ତ୍ତି—ଅଧିକାଂଶ ପ୍ରାଚୀନ ମନ୍ଦିରରେ ନିମ୍ନ କେତେ ଗୋଟି ବିଶିଷ୍ଟ ଶିଳ୍ପକାର୍ଯ୍ୟ ଦେଖାଯାଏ ।

(କ) ଭୁବନେଶ୍ୱର ମନ୍ଦିରରେ—

(୧) ପାଣ୍ଡବମାନଙ୍କର ମହାପ୍ରସ୍ଥାନ ଦୃଶ୍ୟ—ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ମୁଖଶାଳାର ଦକ୍ଷିଣ କାନ୍ଥ ଉପର 'ବନ୍ଧିନୀ'ରେ ଏହି ଦୃଶ୍ୟ ଦେଖାଯାଏ । ପାଞ୍ଚଭାଇ ଦ୍ରୌପଦୀଙ୍କ ସହ ଗୋଟିଏ ସ୍ଥାନର ଚିତ୍ର ମଧ୍ୟ ଏଠାରେ ଦେଖିବାକୁ ମିଳେ ।

(୨) ଗୁରୁଶିଷ୍ୟଙ୍କ ଦୃଶ୍ୟ—ଜଣେ ଋଷି କେତେକ ଶିଷ୍ୟଙ୍କୁ ଗୋଟିଏ ବୃକ୍ଷଚ୍ଛାୟାରେ ବସାଇ ଶିକ୍ଷା ଦେଉଅଛନ୍ତି ।

**(ଖ) ଜଗନ୍ନାଥ ମନ୍ଦିରରେ—**

(୧) ଯାତ୍ରୀଙ୍କ ଦୃଶ୍ୟ— କେତେକ ଯାତ୍ରୀ ମୃଦଙ୍ଗ ଓ ପତାକ ଧରି ନାମ ସଂକୀ-ର୍ତ୍ତନପୂର୍ବକ ଗୋଟିଏ ମନ୍ଦିର ଅଭିମୁଖରେ ଯାତ୍ରା କରୁଅଛନ୍ତି ।

(୨) ଋଷିମାନଙ୍କର ଦୃଶ୍ୟ—କେତେକ ଋଷି ଏକତ୍ର ବସି ଯଜ୍ଞ ବା ହୋମ କରିବା ପାଇଁ ସମସ୍ତ ଉପାଦାନ ସଂଗ୍ରହ କରି ବସିଅଛନ୍ତି ।

(୩) ଅପ୍ସରାଙ୍କ ଦୃଶ୍ୟ—ଅପ୍ସରାମାନେ ଦେବାରାଧନା ପାଇଁ ପୁଷ୍ପ, ଚନ୍ଦନ ଓ ଭୋଗସାମଗ୍ରୀ ଧରି ଦଣ୍ଡାୟମାନ ଅଛନ୍ତି । ସେମାନଙ୍କ ଦେହରେ ପକ୍ଷ ଲଗି ରହିଛି । ସେମାନଙ୍କର ଶରୀରସ୍ଥ ଚିକ୍କଣ ବସନ ଓ ମସ୍ତକର ଫୁଲମାଳ ପ୍ରଭୃତି ଦେଖିଲେ ପ୍ରକୃତ ସଜୀବ ସ୍ତ୍ରୀମାନେ ହଠାତ୍ ପାଷାଣ ପାଲଟି ଯାଇଥିବାର ଜଣାଯାଏ ।

(୪) ଦୋଳଯାତ୍ରା ଦୃଶ୍ୟ—ସେବକମାନେ ଠାକୁରଙ୍କୁ ଦୋଳମଣ୍ଡପରେ ରଖି ପୂଜା କରୁଥିବାର ଦୃଶ୍ୟ ଖୋଦିତ ହୋଇଅଛି ।

(ଗ) କୋଣାର୍କ ମନ୍ଦିରରେ—

(୧) ସୀତା-ବିବାହ ଦଶ୍ୟ—ଖଣ୍ଡିଏ ପ୍ରସ୍ତରଖଣ୍ଡର ସୀତାଙ୍କ ବିବାହମଣ୍ଡପର ଯାବତୀୟ ଦୃଶ୍ୟ ଖୋଦିତ ହୋଇଅଛି । ଏହି ଦୃଶ୍ୟ ମଧ୍ୟରେ କେତେ ସୁନ୍ଦର ମନ-ହର ଖୋଦିତ ଚିତ୍ର ଦୃଷ୍ଟିଗୋଚର ହୁଏ । ମାତ୍ର ଶ୍ରୀରାମଚନ୍ଦ୍ରଙ୍କ ବିବାହ ବାଡରେ ମର୍ତ୍ତ୍ୟ-ମାନଙ୍କର ଚିତ୍ର ଦେଖି ଦର୍ଶକ ଠିକ୍ ଅବଧାରଣ କରି ପାରନ୍ତି ନାହିଁ ।

(୨) ରାଜ-ଦରବାର୍—ଜଣେ ରାଜା ନିଜର ପାତ୍ର, ମନ୍ତ୍ରୀ ଓ ଅନ୍ୟାନ୍ୟ ସଭାସଦ୍‌ମାନଙ୍କ ସହିତ ବସିଅଛନ୍ତି । ଗୋଟିଏ ହାତୀ ସୁସଜ୍ଜିତ ହୋଇ ଠିଆ ହୋଇଅଛି । ଦେବେଳେ ସ୍ତ୍ରୀ ଚାମର ଆଲଟ ଧରି ବହୁଅଛନ୍ତି ।

(୩) ଅସ୍ତ୍ରକୌଶଳ ଦୃଶ୍ୟ—ଧନୁଶର ଧରି ଜଣେ ବୀରପୁରୁଷ ଗୋଟିଏ ପାହାଡ଼ ପ୍ରତି ଶର ନିକ୍ଷେପ କରୁଅଛନ୍ତି । ଶର ଉକ୍ତ ପାହାଡ଼କୁ ଭେଦି ଯାଇଅଛି ।

(୪) ତିନିଦେବତାଙ୍କ ପ୍ରତିମୂର୍ତ୍ତି—ଖଣ୍ଡିଏ ପ୍ରସ୍ତରରେ ଶିବ, ବିଷ୍ଣୁ, ବ୍ରହ୍ମା ଓ ଆଉ ଦୁଇଗୋଟି ଦେବତାଙ୍କର ପ୍ରତିମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ ।

ପ୍ରାଚୀତୀରର ଏକ ଦୃଶ୍ୟ—ପ୍ରାଚୀନଦୀ ତୀରବର୍ତ୍ତୀ ସୋମେଶ୍ୱର ମନ୍ଦିରରେ ଲଳିତା ନାମକ ଏକ ସ୍ତ୍ରୀମୂର୍ତ୍ତି ଦେଖାଯାଏ । ଏହି ମୂର୍ତ୍ତିର ବାମ ହସ୍ତରେ ଧନୁ ଓ ଡାହାଣ ହସ୍ତରେ ଆକର୍ଣ୍ଣବିସ୍ତୃତ ଶର ଥିବାର ଦେଖାଯାଏ । ଏ ସମ୍ବନ୍ଧରେ ପ୍ରାଚୀ ମାହାତ୍ମ୍ୟରେ ଲିଖିତ ଅଛି—

"ଇକ୍ଷୁ କୋଦଣ୍ଡ ବାମକରେ
ଲକ୍ଷ୍ୟରେ ଶର ଭକ୍ଷ କରେ ।" (୧୯ଶ ଅଧ୍ୟାୟ)

ଏହି ପ୍ରତିମୂର୍ତ୍ତିରୁ ସ୍ପଷ୍ଟ ଜଣାଯାଏ ଯେ, ସେକାଳରେ ସ୍ତ୍ରୀମାନେ ମଧ୍ୟ ଧନୁ, ଶର ପ୍ରଭୃତି ଅସ୍ତ୍ର ବ୍ୟବହାର କରି ଜାଣିଥିଲେ ।

୨୨ଶ । **ପାର୍ଶ୍ୱମନ୍ଦିର**—ପ୍ରାୟ ସବୁ ଶ୍ରେଣୀର ବଡ଼ ମନ୍ଦିରରେ ପାର୍ଶ୍ୱ ଦେବତାଙ୍କ ପାଇଁ ପୃଥକ୍ ମନ୍ଦିର ରହିଥାଏ । ଛୋଟ ଦେଉଳରେ ପୃଥକ୍ ମନ୍ଦିର ନ ଥାଇ ବିମାନ ଗାତ୍ରରେ ଗୋଟିଏ 'କୁମ୍ଭ' ବା 'ଠଣା' କରି ସେଠାରେ ପାର୍ଶ୍ୱ ଦେବତାଙ୍କୁ ରଖାଯାଏ । ପାର୍ଶ୍ୱମନ୍ଦିରଦ୍ୱାରା ଦୁଇଗୋଟି କାର୍ଯ୍ୟ ସାଧିତ ହୁଏ । ପ୍ରଥମତଃ ଏହା ବଡ଼ ଦେଉଳର ସୌନ୍ଦର୍ଯ୍ୟ ବର୍ଦ୍ଧିତ କରାଏ । ଦ୍ୱିତୀୟତଃ ଏହା ବିମାନର ବାଡ଼କୁ ଦୃଢ଼ କରି ରଖେ । ପୂର୍ବଦିଗରେ ମୁଖଶାଳା ଯେପରି ବିମାନକୁ ଦୃଢ଼ କରେ, ସେହିପରି ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଦିଗରେ ଥିବା ପାର୍ଶ୍ୱମନ୍ଦିରଗୁଡ଼ିକ ବିମାନକୁ ଦୃଢ଼ କରିଥାଏ । ପାର୍ଶ୍ୱମନ୍ଦିର ଅଭାବରେ ବିମାନ ଦୁର୍ବଳ ହେବା ସଙ୍ଗେ ସଙ୍ଗେ ଅସୁନ୍ଦର ଦେଖାଯାଏ ।

୨୩ଶ । **ଦେବଳ ମନ୍ଦିର**—ପୁରୀ, ଭୁବନେଶ୍ୱର ଓ ଯାଜପୁର ପ୍ରଭୃତି ସ୍ଥାନରେ ଥିବା ବଡ଼ ଦେଉଳର ବେଢ଼ା ମଧ୍ୟରେ ଅନ୍ୟାନ୍ୟ ଦେବଦେବୀଙ୍କର ଏକାଧିକ

ମନ୍ଦିର ଦେଖାଯାଏ । ଏଗୁଡ଼ିକୁ ବେଢ଼ା ମନ୍ଦିର କହନ୍ତି । ପୁରୀର ଲକ୍ଷ୍ମୀ ଓ ଭୁବନେଶ୍ୱରର ପାର୍ବତୀ ମନ୍ଦିରରେ ବଡ଼ ଦେଉଳ ପରି ଚାରିଗୋଟି ଭାଗ (ବିମାନ, ମୁଖଶାଳା, ନାଟମନ୍ଦିର, ଭୋଗମଣ୍ଡପ) ଦେଖାଯାଏ । ଅନ୍ୟ ବେଢ଼ା ମନ୍ଦିରଗୁଡ଼ିକରେ କେବଳ ବିମାନ ଓ ମୁଖଶାଳା କିମ୍ବା ଏକମାତ୍ର ବିମାନ ରହିଥାଏ ।

୨୪ଶ । ବେଢ଼ା ପ୍ରାଚୀର ସବୁ ବଡ଼ ମନ୍ଦିରର ଗୋଟିଏ ଗୋଟିଏ ବେଢ଼ା ପ୍ରାଚୀର ଅଛି । ଅତି ପ୍ରାଚୀନ ଯୁଗର ପ୍ରାଚୀ ନଦୀତୀରବର୍ତ୍ତୀ ଶୈବମନ୍ଦିରଗୁଡ଼ିକରେ ମଧ୍ୟ ପୁରୁଣା ଇଟାନିର୍ମିତ ବେଢ଼ା ପ୍ରାଚୀର ଥିଲା । ବର୍ତ୍ତମାନ ସେସବୁ ଭାଙ୍ଗି ଗଦା ଗଦା ହୋଇ ପଡ଼ି ରହିଅଛି । କୋଣାର୍କ ମନ୍ଦିରର ବେଢ଼ା ପ୍ରାଚୀର ମଧ୍ୟ ଭାଙ୍ଗିଯାଇଅଛି । ପୁରୀ ଓ ଭୁବନେଶ୍ୱର ମନ୍ଦିରର ବେଢ଼ା ପ୍ରାଚୀର ଅତି ମୋଟା ପ୍ରସ୍ତରରେ ଗଠିତ ହୋଇଥିଲା । ଏହି ବେଢ଼ା ପ୍ରାଚୀରରେ କୌଣସି ଶିଳ୍ପକାର୍ଯ୍ୟ ଦେଖାଯାଏ ନାହିଁ । ପ୍ରତ୍ୟେକ ବେଢ଼ା ପ୍ରାଚୀରରେ ଏକାଧିକ ଦ୍ୱାର ଥାଏ । ତନ୍ମଧ୍ୟରୁ—

**ଭୁବନେଶ୍ୱରରେ**—ତିନି ଗୋଟି ଦ୍ୱାର, ପୂର୍ବ, ଉତ୍ତର, ଦକ୍ଷିଣ ।
**ପୁରୀରେ**—ଚାରି ଗୋଟି ଦ୍ୱାର ପୂର୍ବ, ଉତ୍ତର, ପଶ୍ଚିମ ଓ ଦକ୍ଷିଣ ।
**କୋଣାର୍କରେ**—ଗୋଟିଏ ମାତ୍ର ଦ୍ୱାର, ପୂର୍ବ ଦିଗରେ ।

ପ୍ରତ୍ୟେକ ମନ୍ଦିରର ପୂର୍ବଦ୍ୱାରକୁ ସିଂହଦ୍ୱାର କୁହାଯାଏ । ଏହି ଦ୍ୱାରର ଦୁଇ ପାର୍ଶ୍ୱରେ ଦୁଇ ଗୋଟି ସିଂହ କିମ୍ବା ଦୁଇ ଜଣ ସୁସଜ୍ଜିତ ସଶସ୍ତ୍ର ସୈନିକଙ୍କର ପ୍ରସ୍ତରମୂର୍ତ୍ତି ଦେଖାଯାଏ । ପୁରୀର ଜଗନ୍ନାଥ ମନ୍ଦିର ବେଢ଼ା ପ୍ରାଚୀରକୁ ମେଘନାଦ ପ୍ରାଚୀର କୁହାଯାଏ । ଏହି ପ୍ରାଚୀରରେ ଥିବା ଚାରି ଦ୍ୱାରକୁ ଚାରି ଗୋଟି ପୃଥକ୍ ନାମରେ ଅଭିହିତ କରାଯାଏ ।

| | |
|---|---|
| ପୂର୍ବ ଦ୍ୱାର=ସିଂହଦ୍ୱାର | ଉତ୍ତର ଦ୍ୱାର=ହସ୍ତୀ ଦ୍ୱାର |
| ପଶ୍ଚିମ ଦ୍ୱାର=ଖଞ୍ଜା ଦ୍ୱାର | ଦକ୍ଷିଣ ଦ୍ୱାର=ଅଶ୍ୱ ଦ୍ୱାର |

ଦେବମନ୍ଦିରର ପୂର୍ବଦ୍ୱାର, ପଶ୍ଚିମ କିମ୍ବା ଦକ୍ଷିଣ ଦିଗକୁ ଖୋଲାଯିବା ବିଧି ଶିଳ୍ପଶାସ୍ତ୍ରରେ ଥିଲେ ସୁଦ୍ଧା ଉତ୍କଳର ଅଧିକାଂଶ ମନ୍ଦିରର ପୂର୍ବଦ୍ୱାର କେବଳ ପୂର୍ବଦିଗକୁ ଖୋଲା ଥାଏ ।

୨୫ଶ । ଅରୁଣ ସ୍ତମ୍ଭ—ଦେବମନ୍ଦିରର ସିଂହଦ୍ୱାର ସମ୍ମୁଖରେ ଅରୁଣସ୍ତମ୍ଭ ରହିବାର ବିଧି ଶିଳ୍ପଶାସ୍ତ୍ରରେ ବର୍ଣ୍ଣିତ ଅଛି । ଏହି ସ୍ତମ୍ଭ ଦକ୍ଷିଣଭାରତୀୟ ପ୍ରତ୍ୟେକ

ମନ୍ଦିର ନିକଟରେ ଥିବାର ଦେଖାଯାଏ । ଏହି ଅଞ୍ଚଳରେ ଏହି ସ୍ତମ୍ଭକୁ 'ଘଣ୍ଟସ୍ତମ୍ଭ' କହନ୍ତି । କାରଣ ଏହାର ଉପରଭାଗରେ ଦୁଇ ତିନିଖଣ୍ଡ କାଠ ଦେଇକରି ଦେଢେ-ଗୁଣ୍ଡଏ ଛୋଟ ଛୋଟ ପିତଳ ଘଣ୍ଟି ବନ୍ଧାଯାଇଥାଏ । ଉତ୍କଳରେ ପୁରୀ, ସାକ୍ଷିଗୋପାଳ ଓ ଯାଜପୁର ବ୍ୟତୀତ ଅନ୍ୟ କୌଣସି ମନ୍ଦିର ନିକଟରେ ଅରୁଣସ୍ତମ୍ଭ ଦେଖାଯାଏ ନାହିଁ । ପୁରୀର ଅରୁଣସ୍ତମ୍ଭ ପୂର୍ବେ କୋଣାର୍କ ମନ୍ଦିରର ବେଢ଼ା ମଧ୍ୟରେ ଥିଲା । ମରହଟ୍ଟା ସ୍ୱତ୍ୱ କାଳରେ ଏହା ପୁରୀକୁ ଆନୀତ ହୋଇଥିବାର କିମ୍ବଦନ୍ତୀ ଶୁଣାଯାଏ । ଏହାର ଉଚ୍ଚତା ପ୍ରାୟ ୩୪ ଫୁଟ ଏବଂ ଏହା ସମଷୋଡ଼ଶଭୁଜ ଥିବାରୁ ଏହାକୁ ରୁଦ୍ରକାନ୍ତ ଅରୁଣସ୍ତମ୍ଭ କୁହାଯାଏ । ଏହି ସ୍ତମ୍ଭ ଉପରେ ସୂର୍ଯ୍ୟ ସାରଥି ଅରୁଣ ଯୋଡ଼ହସ୍ତ ହୋଇ ବସିଥାଏ ।



## ଉତ୍କଳୀୟ ଗୃହନିର୍ମାଣ ପ୍ରଣାଳୀ ଓ ଶିଳ୍ପଚାତୁରୀ

ବସ୍ତୁଶିଳ୍ପର ଅନ୍ୟ ଗୋଟିଏ ଅଙ୍ଗ ଗୃହନିର୍ମାଣ । ଏ ବିଷୟ ମଧ୍ୟ ପ୍ରାଚୀନ ଶିଳ୍ପଶାସ୍ତ୍ରରେ ବିଶେଷରୂପେ ବର୍ଣ୍ଣିତ ଅଛି । ଉଦୟଗିରିରେ ଥିବା 'ହାତୀଗୁମ୍ଫା' ଶିଳାଲିପିରେ କଳିଙ୍ଗ ରାଜଧାନୀର ବିସ୍ତୃତ ବର୍ଣ୍ଣନା ଏବଂ ଖାରବେଳଙ୍କର ମହାବିଜୟ ପ୍ରାସାଦର ପରିଚୟ ଦିଆଯାଇଛି । ତତ୍ପୂର୍ବରୁ ପ୍ରାଚୀନ କଳିଙ୍ଗବାସୀ କିପରି ଘର ନିର୍ମାଣ କରୁଥିଲେ, ତହିଁର ପରିଚୟ ବା ନମୁନା ମିଳେ ନାହିଁ । ଆଜିକାଲି ପରି ପକ୍କା, ଦୋମହଲା ଘର ସେ କାଳରେ ଥିଲା କି ନାହିଁ ଜଣାଯାଏ ନାହିଁ । କିନ୍ତୁ ଉଦୟଗିରିର ରାଣୀହଂସପୁରରେ ଥିବା ଏକପ୍ରସ୍ଥ ଓ ଦ୍ୱିପ୍ରସ୍ଥ ଘର ଏବଂ ଗୁମ୍ଫାଗୁଡ଼ିକୁ ଦେଖିଲେ ଏ ଦେଶର ପ୍ରାଚୀନ ଶିଳ୍ପୀମାନେ ଏପରି ଗୃହନିର୍ମାଣ କରିବାରେ ବିଶେଷ ଜ୍ଞାନଲାଭ କରିଥିଲେ ବୋଲି କୁହାଯାଇପାରେ । ସାଧାରଣ ଲୋକମାନେ କେବଳ ମାଟି, କାଠ ଓ ବାଉଁଶ ପ୍ରଭୃତି ଉପାଦାନରେ ନିଜର ବାସଗୃହ ନିର୍ମାଣ କରୁଥିଲେ । ଉତ୍କଳର ସ୍ୱାଧୀନ ରାଜାମାନଙ୍କ ସମୟରେ ଏହି ଶ୍ରେଣୀ ମାଟିଘର, ମେରଦାଘର ଓ ଅଠଘର ପ୍ରଭୃତି ଅତି ଦୃଢ଼ ଥିବାର ଜଣାଯାଏ । ମାଟିର ପ୍ରାଚୀର ମଧ୍ୟରେ 'ଗଡ଼' ଓ ଦୁର୍ଗ ପ୍ରଭୃତି ନିର୍ମାଣ କରି ସେକାଳର ସାମନ୍ତ ରାଜା ଓ ସୈନ୍ୟମାନେ ମଧ୍ୟ ବାସ କରୁଥିଲେ ।

ଉତ୍କଳରୁ ସ୍ୱାଧୀନତା ଲୋପ ହେବା ପରେ ସାଧାରଣ ଧନୀ ଓ ମଧ୍ୟବିତ୍ତ ଲୋକମାନେ ମଧ୍ୟ ମାଟିଘର କରି ରହିବା ଶ୍ରେୟସ୍କର ମନେ କରୁଥିଲେ । ସେକାଳରେ ମୋଗଲ ଓ ମରହଟ୍ଟା ଶାସକମାନେ ଲୋକମାନଙ୍କ ପ୍ରତି ଯେପରି ଅତ୍ୟାଚାର କରୁଥିଲେ, ସେହି ଅତ୍ୟାଚାରକୁ ଭୟ କରି ସବୁ ଶ୍ରେଣୀର ଲୋକ ଛୋଟ ଛୋଟ କୁଡ଼ିଆ କରି ରହିବାକୁ ବାଧ୍ୟ ହେଉଥିଲେ । ସେହି କାରଣରୁ ମଧ୍ୟଯୁଗର ଅଧିକାଂଶ ପଲ୍ଲୀଗୃହ ମାଟି, କାଠ ଓ ବାଉଁଶରେ ନିର୍ମିତ ଥିବାର ଦେଖାଯାଏ ଏବଂ ଏ ଶ୍ରେଣୀର-ଘର ଗୁଡ଼ିକରେ କୌଣସି ଶିଳ୍ପକାର୍ଯ୍ୟ ଆଦୌ ନାହିଁ !

ଆଜିକାଲି ଉତ୍କଳର ବିଭିନ୍ନ ପୁରପଲ୍ଲୀରେ ଯେଉଁ କୋଠାଘର ପକ୍କାଘର ଦେଖାଯାଏ, ସେଗୁଡ଼ିକ ବୈଦେଶିକ ଶିଳ୍ପ ଅନୁସାରେ ନିର୍ମିତ ହୋଇଅଛି । ସେଗୁଡ଼ିକରେ କୌଣସି ଉତ୍କଳୀୟ ଶିଳ୍ପଚାତୁରୀ ନାହିଁ । ଦେଶରେ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ଯେତେ ପ୍ରଚାର ହେଉଛି ଏବଂ ଦେଶବାସୀଙ୍କ ମଧ୍ୟରୁ ଆଦର୍ଶ ଜାତୀୟ ଭାବ ଯେତେ ଶୀଘ୍ର ଦୂର ହେଉଛି, ସେହି ଅନୁସାରେ ଏ ଦେଶର ନୂତନ ବାସଗୃହ ଓ ରାଜପ୍ରାସାଦ ପ୍ରଭୃତି ବୈଦେଶିକ ଶିଳ୍ପଶୈଳୀରେ ନିର୍ମିତ ହେଉଅଛି । ତଦ୍ଦ୍ୱାରା ବୈଦେଶିକ ଶିଳ୍ପର ପ୍ରସାର ସଙ୍ଗେ ସଙ୍ଗେ ଦେଶୀୟ ଶିଳ୍ପର ଲୋପ ଘଟୁଛି ! ମୁଷ୍ଟିମେୟ ସହରବାସୀଙ୍କ ବାସଗୃହକୁ ବାଦ୍ ଦେଲେ ଏ ଦେଶର ଅସଂଖ୍ୟ ପଲ୍ଲୀଗୃହ ପ୍ରାଚୀନ ଶିଳ୍ପଶାସ୍ତ୍ରର ନିୟମାନୁସାରେ ନିର୍ମିତ ହୋଇଥିବାର ଦେଖାଯାଏ । ଏ 'ସଭ୍ୟଯୁଗରେ' ମଧ୍ୟ ପଲ୍ଲୀବାସୀ ନିଜର ଦେବମନ୍ଦିର ଓ ପ୍ରତିମା ଗଠନ ସମୟରେ ଯେପରି ପ୍ରାଚୀନ ଶିଳ୍ପଶାସ୍ତ୍ରର ନିୟମଗୁଡ଼ିକୁ ପାଳନ କରନ୍ତି, ଠିକ୍ ସେହିପରି ନିଜର ବାସଗୃହ ନିର୍ମାଣ ସମୟରେ ସମସ୍ତ ପ୍ରକାର ନିୟମ ଓ ନିର୍ମାଣପ୍ରଣାଳୀକୁ ଅକ୍ଷରେ ଅକ୍ଷରେ ପାଳନ କରନ୍ତି । ନିମ୍ନରେ ଗୃହନିର୍ମାଣର କେତେକ ନିୟମାବଳୀ ବର୍ଣ୍ଣିତ ହେବ ।

୧ । ଭୂମି ନିର୍ବାଚନ—ଶିଳ୍ପଶାସ୍ତ୍ର ଅନୁସାରେ ଲୋକମାନେ ବାସ କରିବା ଭୂମି ଚାରି ଶ୍ରେଣୀରେ ବିଭକ୍ତ ଅଟେ ।

(କ) ବ୍ରାହ୍ମଣଜାତୀୟ ଭୂମି—ଶୁକ୍ଳବର୍ଣ୍ଣ, କଷାୟ ଓ ଅଶ୍ୱଗନ୍ଧ
(ଖ) କ୍ଷତ୍ରିୟ ଜାତୀୟ ଭୂମି—ରକ୍ତବର୍ଣ୍ଣ, ଅମ୍ଳ ଓ ରକ୍ତଗନ୍ଧ
(ଗ) ବୈଶ୍ୟଜାତୀୟ ଭୂମି—ପୀତବର୍ଣ୍ଣ, ତିକ୍ତ ଓ କ୍ଷାର ଗନ୍ଧ
(ଘ) ଶୂଦ୍ରଜାତୀୟ ଭୂମି—କୃଷ୍ଣବର୍ଣ୍ଣ, ମଧୁ ଓ ବିଷ୍ଠା ଗନ୍ଧ

୨ ସ୍ଥାନନିର୍ଣ୍ଣୟ, ୩ ମାସନିର୍ଣ୍ଣୟ, ୪ ଭୂମିଭାଗପରୀକ୍ଷା, ୫ ଶଙ୍କୁ ଦେବା ନିୟମ, ୬ ଉପାଦାନ ସଂଗ୍ରହ, ୭ ଗୃହନିର୍ମାଣ କାର୍ଯ୍ୟ, ୮ ଗୃହପ୍ରତିଷ୍ଠା, ୯ ଗୃହ-ପ୍ରବେଶ, ୧୦ ହୋମ, ଯଜ୍ଞ ଓ ବ୍ରାହ୍ମଣ ଭୋଜନ ପ୍ରଭୃତି ।

ପ୍ରତ୍ୟେକ ନୂତନ ଗୃହନିର୍ମାଣ ସମୟରେ ଏହି ନିୟମଗୁଡ଼ିକୁ ପାଳନ କରିବାକୁ ହେବ ।

ନିମ୍ନ ଲେଖିତ ସ୍ଥାନ ଗୃହନିର୍ମାଣ ପାଇଁ ନିଷେଧ କରାଯାଇଛି—

୧ । କୌଣସି ମନ୍ଦିରର ସମ୍ମୁଖରେ ବା ପାର୍ଶ୍ୱରେ ଥିବା ସ୍ଥାନ ।

୨ । ଯେଉଁ ସ୍ଥାନରେ ଭୂତ ପ୍ରେତ ଥିବାର ଲୋକମାନେ କହନ୍ତି ।

୩ । ଶ୍ମଶାନ ଭୂମିରେ, ୪ ରାଜମାର୍ଗ, ୫ ପୁରୁଣାମନ୍ଦିର ବା ଗିର୍ଜା ଥିବା ସ୍ଥାନ, ୬ ଯେଉଁ ସ୍ଥାନରେ ସାପଗାଡ଼ କିମ୍ବା ଉଇ ହୁଙ୍କା ଥାଏ, ୭ ମ୍ଳେଚ୍ଛମାନେ ଯେଉଁ ସ୍ଥାନରେ ବାସ କରନ୍ତି ।

୮ । ଯେଉଁ ସ୍ଥାନରେ ପୂର୍ବେ ଯୋଗୀ ବା ଋଷିମାନେ ବାସ କରୁଥିଲେ ।

୯ । ଯେଉଁ ସ୍ଥାନରେ ପୂର୍ବେ ଯୁଦ୍ଧକ୍ଷେତ୍ର ଥିଲା ଏବଂ ୧୦ ସମସ୍ତ ସନ୍ଧସନ୍ଧିଆ ସ୍ଥାନରେ ବାସଗୃହ କରିବା ଅନୁଚିତ । ଏହି ଲେଖିତ ସ୍ଥାନରେ ବାସଗୃହ କଲେ ଗୃହକର୍ତ୍ତା ମରନ୍ତି ହୁଏ । ତାହାର ସବୁ ସମ୍ପତ୍ତି ନଷ୍ଟ ହୁଏ ଏବଂ ସେ ମୁଷ୍ଟିଭିକ୍ଷା କରିବାକୁ ବାଧ୍ୟ ହୁଏ । ଇତ୍ୟାଦି ।

ଗୃହନିର୍ମାଣ ସମ୍ବନ୍ଧରେ ଆହୁରି ଅସଂଖ୍ୟ ନିୟମ ଶିଳ୍ପଶାସ୍ତ୍ରରେ ବର୍ଣ୍ଣିତ ଅଛି। ସେଗୁଡ଼ିକ ଏଠାରେ ଉଦ୍ଧୃତ କରି ପ୍ରସ୍ତାବର କଳେବର ବୃଦ୍ଧି କରିବା ନିଷ୍ପ୍ରୟୋଜନ।



## ଉତ୍କଳରେ ଜୈନ ଓ ବୌଦ୍ଧ ଶିଳ୍ପସ୍ଥାପତ୍ୟ

### ୧ । ଜୈନ ଶିଳ୍ପ—

ଉତ୍କଳର ପ୍ରଧାନ ଜୈନକେନ୍ଦ୍ର ପୁରୀ ଜିଲ୍ଲାର ଭୁବନେଶ୍ୱର ନିକଟବର୍ତ୍ତୀ "ଖଣ୍ଡଗିରି" ଓ "ଉଦୟ ଗିରି" ପାହାଡ଼ରେ ଥିଲା । ଶେଷୋକ୍ତ ପାହାଡ଼ର "ରାଣୀ-ହଂସପୁର" ବା "ରାଣୀଗୁମ୍ଫା"ରେ ଜୈନ ଧର୍ମର ସର୍ବଶ୍ରେଷ୍ଠ ଉତ୍କଳୀୟ ପୃଷ୍ଠପୋଷକ

ମହାମେଘବାହନକ ଖାରବେଳ ନିଜ ପଟ୍ଟମହିଷୀଙ୍କୁ ନେଇ ଶେଷଜୀବନ କଟାଇଥିଲେ ।
ଏହି ପାହାଡ଼ରେ ତାହାଙ୍କର "ହାତୀଗୁମ୍ଫା ଶିଳାଲିପି" ଦେଖାଯାଏ । ଏଠାରେ ସେହି
ଦୁଇ ପାହାଡ଼ର ବିଶେଷ ବର୍ଣ୍ଣନା ଓ ତନ୍ମଧ୍ୟସ୍ଥ ଗୁମ୍ଫାଗୁଡ଼ିକର ପରିଚୟ ଦିଆଯିବ ।
( ୨୩ଶ ଚିତ୍ର )

ଖଣ୍ଡଗିରି—ଖଣ୍ଡିଏ ପଥରରେ ଗୋଟିଏ ଅତି ବଡ଼ ଗୁମ୍ଫା ଖୋଳାଯାଇ-
ଥିବାରୁ ଏହାର ନାମ "ଖଣ୍ଡଗିରି" ହୋଇଥିବାର ସ୍ଥାନୀୟ ଲୋକମାନେ କହନ୍ତି ।
ସଂସ୍କୃତ ପୁରାଣଗୁଡ଼ିକରେ ଏହାକୁ "ଖଣ୍ଡାଚଳ" କହୁଥିବାର ମଧ୍ୟ ବର୍ଣ୍ଣିତ ଅଛି ।
ଏତାଧିକ ଖଣ୍ଡ ପଥର ଏକତ୍ର ମିଶିଥିବାରୁ ଏହି ପର୍ବତର ନାମ "ଖଣ୍ଡଗିରି" ହୋଇ-
ଥିବାର ସମ୍ଭବ ଦେଖାଯାଏ । ଖଣ୍ଡଗିରିର ଅନ୍ୟ ଏକ ନାମ "କୁମାରୀ ପର୍ବତ" ।

ପୁରୀ ଜିଲ୍ଲାର ଖୋର୍ଦ୍ଧା ସବ୍‌ଡିଭିଜନରେ ଭୁବନେଶ୍ୱରଠାରୁ ପ୍ରାୟ ୪ନ
ମାଇଲ ଉତ୍ତରପଶ୍ଚିମ ଦିଗରେ ଖଣ୍ଡଗିରି ଅବସ୍ଥିତ । ଏହାର ପୂର୍ବରେ ଉଦୟଗିରି
ପାହାଡ଼ । ଉଦୟଗିରି ଓ ଖଣ୍ଡଗିରି ମଧ୍ୟଦେଇ ଗୋଟିଏ ପକ୍କା ସଡ଼କ ଭୁବନେଶ୍ୱର-
ଠାରୁ ଚନ୍ଦକାଯାଏ ବ୍ୟାପିଛି ।

ଖଣ୍ଡଗିରିର ଉଚ୍ଚତା ପ୍ରାୟ ୨୩ ଫୁଟ ଓ ତାହା କୁଣ୍ଡା ପଥରରେ ପୂର୍ଣ୍ଣ
ଦେଖାଯାଏ । ଏହି ପାହାଡ଼ରେ ନିମ୍ନ ୧୯ଟି ଗୁମ୍ଫା ଓ ମନ୍ଦିର ପ୍ରଭୃତି ଦେଖାଯାଏ ।

(୧) ତତ୍ତ୍ୱ ଗୁମ୍ଫା (କ) (୭) ନବମୁନି ଗୁମ୍ଫା (୧୩) ଜୈନମନ୍ଦିର
(୨) ତତ୍ତ୍ୱ ଗୁମ୍ଫା (ଖ) (୮) ବାରଭୁଜା " (୧୪) ଦେବସଭା
(୩) ଖୋଲ ଗୁମ୍ଫା (୯) ତ୍ରିଶୂଳ " (୧୫-୧୯) ଲଙ୍ଗୀଗୁମ୍ଫାଗୁଡ଼ିକ
(୪) ତେନ୍ତୁଲିଆ ଗୁମ୍ଫା (୧୦) ଲଲାଟେନ୍ଦୁ "
(୫) ଖଣ୍ଡଗିରି ଗୁମ୍ଫା (୧୦) ଅନନ୍ତ "
(୬) ଧାନ ଘର ଗୁମ୍ଫା (୧୨) ଆକାଶ ଗଙ୍ଗା

ଉପର୍ଯ୍ୟୁକ୍ତ ଗୁମ୍ଫା ଓ ମନ୍ଦିର ମଧ୍ୟରୁ ନିମ୍ନଲିଖିତ ସ୍ଥାନରେ ଜୈନକୀର୍ତ୍ତିମାନ
ଦେଖାଯାଏ ।

(୭) ନବମୁନି ଗୁମ୍ଫା—ସଡ଼କଠାରୁ ପର୍ବତର ଉପରକୁ ଯାଉଁ ଯାଉଁ ବାମ
ଦିଗରେ ଅବସ୍ଥିତ ଗୋଟିଏ ବଡ଼ ଗୁମ୍ଫାର ନାମ 'ନବମୁନି ଗୁମ୍ଫା' । ଏହି ଗୁମ୍ଫାଟି ଦୁଇ
ଭାଗରେ ବିଭକ୍ତ । ଗୁମ୍ଫାର ସମ୍ମୁଖ ବାରନ୍ଦା ଓ ଦୁଇ ଭାଗର ମଧ୍ୟବର୍ତ୍ତୀ କାନ୍ଥ ଭାଙ୍ଗି-

ଯାଇଛି । ଦକ୍ଷିଣ ଦିଗର ଗୁମ୍ଫାରେ ପ୍ରାୟ ଏକ ଫୁଟ ଉଚ୍ଚ ଓ ଅତି ସୁନ୍ଦର ଚାରୁକାର୍ଯ୍ୟ-ପୂର୍ଣ୍ଣ ୧୦ଟି ଜୈନ ତୀର୍ଥଙ୍କର ସ୍ଥିତମୂର୍ତ୍ତି ପଶ୍ଚିମ କାନ୍ଥ ଦେହରେ ଖୋଦାଯାଇଛି । ପ୍ରତ୍ୟେକ ତୀର୍ଥଙ୍କରତଳେ ଗୋଟିଏ ଗୋଟିଏ ଦେବୀମୂର୍ତ୍ତି ମଧ୍ୟ ଅଛି । ଏଗୁଡିକ ତୀର୍ଥଙ୍କରମାନଙ୍କର ଶାସନଦେବୀ ବୋଲି ଉକ୍ତ ଗେଜେଟିଅରର ଲେଖକ ଲେଖିଛନ୍ତି, କିନ୍ତୁ ଏଗୁଡିକ ପ୍ରକୃତରେ ଜୈନଶାସନଦେବୀ ନୁହନ୍ତି । ଶାକ୍ତଧର୍ମର ମାତୃକା ମୂର୍ତ୍ତି ଥିବାର ସମ୍ଭବ ଅଟେ । ଏଗୁଡିକ କୌଣସି ଜୈନଧର୍ମ ବିଦ୍ୱେଷୀମାନଙ୍କଦ୍ୱାରା ନିର୍ମିତ ହୋଇଥିବାର ସମ୍ଭବ । ଏଠାରେ ଥିବା ପାର୍ଶ୍ୱନାଥଙ୍କ ସ୍ଥିତମୂର୍ତ୍ତି ଅନ୍ୟାନ୍ୟ ମୂର୍ତ୍ତି ଅପେକ୍ଷା ଅତି ସୁନ୍ଦର ଦେଖାଯାଏ ।

(୯) ତ୍ରିଶୂଳ ଗୁମ୍ଫା—ବାରଭୁଜୀ ଗୁମ୍ଫାର ଦକ୍ଷିଣ ଦିଗରେ ଅଛି ଏକ ଅତି ବଡ଼ ଗୁମ୍ଫା ( ୨୨ଫୁଟ ଲମ୍ବା, ୭ ଫୁଟ ଚୌଡ଼ା ଓ ୮ ଫୁଟ ଉଚ୍ଚ ) ଅଛି । ଏହି ଗୁମ୍ଫାର ଗୋଟିଏ ବାରଣ୍ଡା ଓ ଭିତର ଘର ଦେଖାଯାଏ । ବାରଣ୍ଡାର ଦକ୍ଷିଣ କାନ୍ଥରେ ଗୋଟିଏ ତ୍ରିଶୂଳ ଚିହ୍ନ ଖୋଦାଯାଇଥିବାରୁ ଏହି ଗୁମ୍ଫାର ନାମ "ତ୍ରିଶୂଳ ଗୁମ୍ଫା" ଦିଆଯାଇଛି । ଭିତର ଗୁମ୍ଫାର ଦକ୍ଷିଣ, ପଶ୍ଚିମ ଓ ଉତ୍ତର କାନ୍ଥକୁ ଲାଗି ପଥରରେ ବସିବା ପାଇଁ ଉଚ୍ଚ ପିଢ଼ା ବା ବେଞ୍ଚ ଖୋଳାଯାଇଛି । ଏହି ବେଞ୍ଚଠାରୁ ପ୍ରାୟ ୪।୫ ଇଞ୍ଚ ଉଚ୍ଚରେ ସେହି ଦକ୍ଷିଣ ପଶ୍ଚିମ ଓ ଉତ୍ତର କାନ୍ଥରେ ୨୪ଗୋଟି ଜୈନ ତୀର୍ଥଙ୍କରମାନଙ୍କର ସ୍ଥିତମୂର୍ତ୍ତି ଖୋଦା-ଯାଇଅଛି ।

ତ୍ରିଶୂଳ ଗୁମ୍ଫାରେ ଖୋଳାଯାଇଥିବା ତୀର୍ଥଙ୍କର ସ୍ଥିତମୂର୍ତ୍ତିଗୁଡିକୁ ସେମାନଙ୍କର ଚିହ୍ନ ବା 'ବାହନ' ଦେଖିଲେ ସ୍ପଷ୍ଟ ଚିହ୍ନି ହୁଏ । ଏହି ଚିହ୍ନଗୁଡିକ ପ୍ରତ୍ୟେକ ମୂର୍ତ୍ତିର ତଳଭାଗରେ ଥାଏ । ନିମ୍ନରେ ପ୍ରତ୍ୟେକ ତୀର୍ଥଙ୍କର ମୂର୍ତ୍ତିର ବିଶେଷ ପରିଚୟ ଦିଆଗଲା :—

| | ତୀର୍ଥଙ୍କର ନାମ | ଅବସ୍ଥା | ଚିହ୍ନ ବା ବାହନ | |
|---|---|---|---|---|
| ୧ | ଋଷଭ ଦେବ | ଛିଡ଼ା ( କାୟୋତ୍ସର୍ଗ ) | ବୃଷଭ | ଏ ଚାରୋଟି ମୂର୍ତ୍ତି ଗୁମ୍ଫାର ଦକ୍ଷିଣ କାନ୍ଥରେ ଖୋଦିତ । |
| ୨ | ଅଜିତ ନାଥ | ଐ ( ଐ ) | ହସ୍ତୀ | |
| ୩ | ସମ୍ଭବନାଥ | ପଦ୍ମାସନ | ଅଶ୍ୱ | |
| ୪ | ଅଭିନନ୍ଦନ | ଐ | ମର୍କଟ | |

| | ତୀର୍ଥଙ୍କର ନାମ | ଅବସ୍ଥା | ଚିହ୍ନ ବା ବାହନ |
|---|---|---|---|
| ୫ | ସୁମତିନାଥ | ପଦ୍ମାସନ | ହଂସ |
| ୬ | ପଦ୍ମପ୍ରଭୁ | ” | ପଦ୍ମ |
| ୭ | ସୁପାର୍ଶ୍ବନାଥ | ” | ସ୍ୱସ୍ତିକ |
| ୮ | ଚନ୍ଦ୍ରପ୍ରଭୁ | ” | ଚନ୍ଦ୍ର |
| ୯ | ସୁବିଧିନାଥ | ” | ମକର (ମୟୂର) |
| ୧୦ | ଶୀତଳନାଥ | ଦଣ୍ଡା-କାୟୋତ୍ସର୍ଗ | ଶ୍ରୀବତ୍ସ |
| ୧୧ | ପାର୍ଶ୍ବନାଥ | ” | ସର୍ପ |
| ୧୨ | ବସୁପୂଜ୍ୟ | ” | ମହିଷ |
| ୧୩ | ବିମଳନାଥ | ” | ବରାହ |
| ୧୪ | ଅନନ୍ତନାଥ | ପଦ୍ମାସନ | ଭାଲୁ |
| ୧୫ | ଧର୍ମନାଥ | ” | ବଜ୍ର |
| ୧୬ | ଶାନ୍ତିନାଥ | ” | ହରିଣ |
| ୧୭ | କୁନ୍ଥୁନାଥ | ” | ଛେଳି |
| ୧୮ | ଅରହନାଥ | ” | ନନ୍ଦ୍ୟାବର୍ତ୍ତ (ମୀନ) |
| ୧୯ | ମଲ୍ଲିନାଥ | ” | କଳଶ |
| ୨୦ | ନାମିନାଥ | ” | ନୀଳପଦ୍ମ |
| ୨୧ | ମୁନିସୁବ୍ରତ | ” | କଇଁଛ |
| ୨୨ | ନେମିନାଥ | ” | ଶଙ୍ଖ |
| ୨୩ | ଶ୍ରୀୟାଂଶନାଥ | କାୟୋତ୍ସର୍ଗ | ଗଣ୍ଡାର |
| ୨୪ | ମହାବୀର | ” | ସିଂହ |

୫ମଠାରୁ ୨୦ଶ ମୂର୍ତ୍ତି ଗୁମ୍ଫାର ପଶ୍ଚିମ ପାର୍ଶ୍ବରେ ଖୋଦିତ ।

୨୧ଶଠାରୁ ୨୪ଶ ମୂର୍ତ୍ତି ଗୁମ୍ଫାର ଉତ୍ତର ପାର୍ଶ୍ବରେ ଖୋଦିତ ।

୨୩ଶ । ତୀର୍ଥଙ୍କର ପାର୍ଶ୍ବନାଥଙ୍କ ପ୍ରତିମୂର୍ତ୍ତି ଏହି ଗୁମ୍ଫାରେ ୧୧ଶ ସ୍ଥାନରେ ରଖାଯାଇଛି ଏବଂ ୧୧ଶ ତୀର୍ଥଙ୍କର ଶ୍ରୀୟାଂଶନାଥଙ୍କୁ ୨୩ଶ ସ୍ଥାନରେ ରଖାଯାଇଛି । ଜୈନମାନେ ପାର୍ଶ୍ବନାଥଙ୍କୁ ସର୍ବଦା ଅତି ପ୍ରସିଦ୍ଧ ମନେ କରୁଥିବାରୁ ବୋଧହୁଏ ତାହାଙ୍କୁ ଏପରି ମଧ୍ୟଭାଗରେ ସ୍ଥାନ ଦିଆଯାଇଛି ।

ଏଠାରେ ଥିବା ପ୍ରତିମୂର୍ତ୍ତିଗୁଡିକର ଆକାର ଓ ଗଠନ ପ୍ରଭୃତି ଅନ୍ୟାନ୍ୟ ଗୁମ୍ଫାର ପ୍ରତିମୂର୍ତ୍ତି ଅପେକ୍ଷା ଅତି ସୁନ୍ଦର ଓ ଅତି ବଡ ଦେଖାଯାଏ । ୧୯ଶ ତୀର୍ଥଙ୍କର

ପାର୍ଶ୍ୱନାଥଙ୍କ ପାଦ ତଳେ ବେଞ୍ଚ ଉପରେ ଏବଂ ୬ଷ୍ଠ ଓ ୯ମ ତୀର୍ଥଙ୍କର ତଳେ ସେହି ବେଞ୍ଚ ଉପରେ ତିନୋଟି ଲେଖା ମୁଗ୍ଧନ ପଥରରେ ତିଆର ହୋଇଥିବା ଆଦିନାଥଙ୍କ ପ୍ରତିମୂର୍ତ୍ତି ରଖାଯାଇଛି । ଏହି ଗୁମ୍ଫାରେ କୌଣସି ଲିପି ଥିବାର ଦେଖାଯାଏ ନାହିଁ ।

(୧୦) ଲଲାଟେନ୍ଦ୍ର—ଖଣ୍ଡଗିରିର ଦକ୍ଷିଣ ପୂର୍ବଦିଗରେ ଥିବା ଗୋଟିଏ ଭଙ୍ଗା ଗୁମ୍ଫାକୁ 'ଲଲାଟେନ୍ଦୁ ଗୁମ୍ଫା' କହନ୍ତି । ସମ୍ଭବତଃ ଏହି ଗୁମ୍ଫା କେଶରୀ ବଂଶର ରଜା ଲଲାଟେନ୍ଦୁ କେଶରୀଙ୍କ ସମୟରେ ଖୋଳାଯାଇଥିଲା । ଏହି ଗୁମ୍ଫାର ଦୁଇ ସ୍ତର ମଧ୍ୟରୁ ଉପର ସ୍ତର ଭାଙ୍ଗି ଯାଇଛି ଏବଂ ତଳ ସ୍ତରର କାନ୍ଥରେ ଜୈନ ପ୍ରତିମୂର୍ତ୍ତିଗୁଡ଼ିକ ଖୋଦିତ ହୋଇଛି । ଏହି ପ୍ରତିମୂର୍ତ୍ତି ମଧ୍ୟରୁ ପାର୍ଶ୍ୱନାଥଙ୍କ ପ୍ରତିମୂର୍ତ୍ତି ଅତି ବଡ଼ ଦେଖାଯାଏ ।

(୧୧) ଅନନ୍ତ ଗୁମ୍ଫା—ପ୍ରାୟ ୨୩ ଫୁଟ ଲମ୍ବା ଓ ୭ ଫୁଟ ଓସାର ଏବଂ ଅର୍ଦ୍ଧଚନ୍ଦ୍ରାକାର ଛାତବିଶିଷ୍ଟ ଗୋଟିଏ ଗୁମ୍ଫା ଖଣ୍ଡଗିରିର ସମ୍ପୂର୍ଣ୍ଣ ଉତ୍ତର ଦିଗରେ ଦେଖାଯାଏ । ଏହି ଗୁମ୍ଫାଟି ଚାରି ଭାଗରେ ବିଭକ୍ତ । ଚତୁର୍ଥ ବଖରାର ପଶ୍ଚିମ କାନ୍ଥରେ ଜୈନ ଧର୍ମର ଆଠ ଗୋଟି ସନ୍ତକ ମଧ୍ୟରୁ ୭ଗୋଟି ସନ୍ତକ ଖୋଦିତ ହୋଇଅଛି । * ପ୍ରଥମ ସନ୍ତକ 'ସ୍ୱସ୍ତିକ'ର ନିମ୍ନଭାଗରେ ଗୋଟିଏ ତୀର୍ଥଙ୍କର ମୂର୍ତ୍ତି ଖୋଳାଯାଇଛି । ଏହା ବୋଧ ହୁଏ ପାର୍ଶ୍ୱନାଥଙ୍କ ପ୍ରତିମୂର୍ତ୍ତି ହେବ ।

ଗୁମ୍ଫାର ସମ୍ମୁଖଦ୍ୱାର କାନ୍ଥ ଉପରେ ଆଉ କେତେକ ଖୋଦିତ ମୂର୍ତ୍ତି ଦେଖାଯାଏ । ଏହି ମୂର୍ତ୍ତି ମଧ୍ୟରୁ ନିମ୍ନ କେତୋଟି ମୂର୍ତ୍ତିର ପରିଚୟ ସ୍ପଷ୍ଟ ଜଣାଯାଏ ।

ବାମ ଦିଗରୁ ୧ମ—ଗୋଟିଏ ଅତି ବଡ଼ ହାତୀର ଦୁଇ ପାର୍ଶ୍ୱରେ ଦୁଇଟି ଛୋଟ ହାତୀ ଖୋଦିତ ହୋଇଛି ।

୨ୟ—ସୂର୍ଯ୍ୟଦେବ ନିଜର ଦୁଇ ଭାର୍ଯ୍ୟା ସଂଜ୍ଞା ଓ ଛାୟାଙ୍କୁ ନେଇ ଅଶ୍ୱଯୁକ୍ତ ରଥାରୋହଣ କରିଛନ୍ତି । ଏହି ରଥ ସମ୍ମୁଖରେ ଗୋଟିଏ ବୃକ୍ଷର (?) ଶାଖା ଓ ଡାଳ ଧାର ଅଣ୍ଟ ମାଡ଼ି ବସିଛି ।

* ଜୈନମାନଙ୍କର ଆଠ ଗୋଟି ସନ୍ତକ ଯଥା—

| | |
|---|---|
| [୧] ସ୍ୱସ୍ତିକ | [୫] ମୀନ |
| [୨] ଦର୍ପଣ | [୬] ପୁଷ୍ପମାଳା |
| [୩] କଳସ | [୭] ପ୍ରଶ୍ନବାଚକ ଚିହ୍ନ |
| [୪] ଭଦ୍ରାସନ | [୮] ବର୍ଦ୍ଧମାନକ |

ତୃତୀୟ—ଲକ୍ଷ୍ମୀ ଦେବୀ ପଦ୍ମାସନରେ ବସି ଦୁଇ ହାତରେ ପଦ୍ମ ନାଡ଼କୁ ଧରିଛନ୍ତି। ତାହାଙ୍କର ଦୁଇ ଦିଗରେ ଦିଓଟି ହାତୀ କଳସରେ ତାଙ୍କ ମୁଣ୍ଡରେ ପାଣି ଢାଳୁଛନ୍ତି।

୪ର୍ଥ—ଗୋଟିଏ ବରଗଛ ମୂଳରେ ଜଣେ ଲୋକ ନିଜର ଭୃତ୍ୟମାନଙ୍କୁ ନେଇ ପୂଜା କରୁଛି। ଜଣେ ସ୍ତ୍ରୀ ପୁଷ୍ପମାଳା ନେଇ ଉକ୍ତ ଗଛର ଡାଳରେ ପିନ୍ଧାଉଅଛି। ଅନ୍ୟ ଏକ ସ୍ତ୍ରୀ ଗୋଟିଏ ଗଡ଼ୁରେ ପାଣି ଏବଂ ଥାଳରେ ଭୋଗ ଧରି ଦଣ୍ଡାୟମାନା।

ପ୍ରୋକ୍ତ କାରୁକାର୍ଯ୍ୟର ଉପରିଭାଗରେ ଆଉ କେତୋଟି ଅତି ଅସ୍ପଷ୍ଟ ଚିତ୍ର ଖୋଦିତ ହୋଇଥିବାର ଦେଖାଯାଏ। ଫାଟକର ଉପରିଭାଗଗୁଡ଼ିକ ମଧ୍ୟ ସେହିପରି ଖୋଦିତ ହୋଇଛି।

**ଜୈନ ମନ୍ଦିର**—ଖଣ୍ଡଗିରି ପାହାଡ଼ ଉପରେ ଛୋଟ ବଡ଼ ଚାରି ପାଞ୍ଚଗୋଟି ମନ୍ଦିର ଦେଖାଯାଏ। ତନ୍ମଧ୍ୟରୁ ପ୍ରଧାନ ବା ବଡ଼ ମନ୍ଦିରଟି ପୂର୍ବପଶ୍ଚିମ ହୋଇ ସମତଳ ସ୍ଥାନର ମଧ୍ୟଭାଗରେ ଅବସ୍ଥିତ। ଏହାର ଉତ୍ତରରେ ଏବଂ ପୂର୍ବଦିଗରେ ଯଥାକ୍ରମେ ଦିଓଟି ଛୋଟ ଛୋଟ ମନ୍ଦିର ଅଛି। ପ୍ରଥମ ମନ୍ଦିରର ଦ୍ୱାର ପୂର୍ବକୁ ଖୋଲିଛି ଏବଂ ତାହାର ନିମ୍ନ କେତେକ ଭାଗ ଦେଖାଯାଏ। (୨୪ଶ ଚିତ୍ର)

(୧) **ଜଗମୋହନ**—ଏଠାରେ ଗୋଟିଏ ସିଂହାସନ ଉପରେ ତୀର୍ଥଙ୍କର ମୂର୍ତ୍ତିମାନ ରଖାଯାଇଅଛି। ଜଗମୋହନର ଗୋଟିଏ ମାତ୍ର ଦ୍ୱାର ପୂର୍ବକୁ ଖୋଲିଛି। ଉତ୍ତର ଓ ଦକ୍ଷିଣ କାନ୍ଥରେ କୌଣସି ଦ୍ୱାର କିମ୍ବା ଝରକା ନାହିଁ। କେବଳ ଚାରି ଗୋଟି ଫାଙ୍କ ବା 'ଜାଲି' ଦେଇ ଭିତରକୁ ଆଲୋକ ଓ ବାୟୁ ପ୍ରବେଶ କରେ। ଜଗମୋହନର ବାହ୍ୟାକୃତି ଉତ୍କଳୀୟ ପୀଢ଼ ଦେଉଳ ପରି ଦେଖାଯାଏ; କିନ୍ତୁ ସାଧାରଣ ପୀଢ଼ ଦେଉଳଠାରୁ ଏହା ଛୋଟ ଓ ଏଥିର ଆମଳକଶିଳାର ଚାରି କୋଣରେ ଚାରୋଟି ପ୍ରସ୍ତର ସ୍ତମ୍ଭ ବା ବୁରୁଜ ଅଛି। ଏହି ବୁରୁଜଗୁଡ଼ିକୁ ଦେଖିବା ମାତ୍ରେ ଏହାକୁ ଜୈନମନ୍ଦିର ବୋଲି ସ୍ପଷ୍ଟ ଜଣା ହୁଏ। ଆଧୁନିକ ଯୁଗରେ ନିର୍ମିତ ହୋଇଥିବାରୁ ଏହି ମନ୍ଦିରରେ କୌଣସି ଶିଳ୍ପକଳା ଦେଖାଯାଏ ନାହିଁ। ଯେଉଁ କେତୋଟି ଋଷି ଓ ବାହନ ମୂର୍ତ୍ତି ମନ୍ଦିରର ଉପର ଛାତରେ ରଖାଯାଇଛି, ସେଗୁଡ଼ିକ ମଧ୍ୟ କୌଣସି କାରୁକାର୍ଯ୍ୟ ଦ୍ୱାରା ମଣ୍ଡିତ ହୋଇ ନାହିଁ।

(୨) **ମୁଖଶାଳା**—ଜଗମୋହନ ଓ ନାଟମନ୍ଦିର ମଧ୍ୟରେ ଛୋଟ ମୁଖଶାଳା ଅଛି। ମୁଖଶାଳା ଓ ଜଗମୋହନ ମଧ୍ୟରେ ଗୋଟିଏ ପାଞ୍ଚ ହାତ ମୁଖଶାଳାର ଉପର

ଛାତ ପୀଢ଼ ଦେଉଳ ପରି ନିର୍ମିତ ହୋଇଅଛି । ଏଠାରେ ମଧ୍ୟ କୌଣସି ଶିଳ୍ପକାର୍ଯ୍ୟ ଦେଖାଯାଏ ନାହିଁ ।

୩ । **ନାଟ ମନ୍ଦିର**—ମୁଖଶାଳାର ପୂର୍ବକୁ ଲାଗି ନାଟ ମନ୍ଦିର ଅବସ୍ଥିତ । ଏହାର ପୂର୍ବଦିଗକୁ ଦ୍ୱାର ଖୋଲିଛି । ଉତ୍ତର ଓ ଦକ୍ଷିଣ ପାର୍ଶ୍ୱରେ ଚାରୋଟି ଫାଙ୍କା ବା ଝାଞ୍ଜି ଦେଇ ଭିତରକୁ ଆଲୋକ ଓ ବାୟୁ ପ୍ରବେଶ କରେ । ଏଠା ନାଟମନ୍ଦିରର ଦକ୍ଷିଣ ଭାଗରେ ଆଉ ଗୋଟିଏ ସିଂହାସନ ରଖାଯାଇଛି । ଏହି ସିଂହାସନ ଉପରେ ଗୋଟିଏ ଛାତ ନିର୍ମିତ ହୋଇଛି । ଦୂରରୁ ଦେଖିଲେ ଏହା ଏକ ଛୋଟ ରଥ ବା ମଣ୍ଡପ ପରି ଦେଖାଯାଏ । ନାଟମନ୍ଦିରର ଉପରି ଛାତ ପୀଢ଼ ଦେଉଳ ପରି ନିର୍ମିତ ଏବଂ ସେଠାରେ ମଧ୍ୟ କୌଣସି କାରୁକାର୍ଯ୍ୟ ନାହିଁ । ନାଟ ମନ୍ଦିରର ଦକ୍ଷିଣ ଦିଗରେ ପୂର୍ବେ ଗୋଟିଏ ଦ୍ୱାର ଥିବାର ଅନୁମିତ ହୁଏ । ଅଜକାଲି ସେହି ଦ୍ୱାର ବନ୍ଦ ହୋଇ ସେଠାରେ ଚାରୋଟି ଫାଙ୍କ ରଖାଯାଇଛି । କିନ୍ତୁ ପୂର୍ବେ ଯେଉଁଠାରେ ଦ୍ୱାର ଥିଲା, ସେହି ଦ୍ୱାରକୁ ଲାଗି ବାହାର ଦିଗରେ ଝାଂଟି ପାଉଛି ଦେଖାଯାଏ ।

**ଉତ୍ତରଦିଗର ମନ୍ଦିର**—ବଡ଼ ମନ୍ଦିରର ଉତ୍ତର ଭାଗରେ ଆଉ ଗୋଟିଏ ଛୋଟ ମନ୍ଦିର ଅଛି । ଏହା ଦୁଇ ଭାଗରେ ବିଭକ୍ତ । (୧) ଜଗମୋହନ ଓ **ନାଟମନ୍ଦିର** । ଜଗମୋହନର ଆକୃତି ଅତି ଛୋଟ । ଜଣେ ଲୋକ ମୁଣ୍ଡ ଟେକି ଛିଡ଼ା ହୋଇ ପାରିବ ନାହିଁ କିମ୍ବା ୪ଜଣ ସ୍ୱଚ୍ଛନ୍ଦରେ ତହିଁ ଭିତରେ ବସି ପାରିବେ ନାହିଁ । ଏହାର ମଧ୍ୟ-ଭାଗରେ ପଛ କାନ୍ଥକୁ ଲାଗି ଛୋଟ ସିଂହାସନ ଉପରେ ତୀର୍ଥଙ୍କର ମୂର୍ତ୍ତି ରଖାଯାଇଛି । ଜଗମୋହନର ଦ୍ୱାର ପୂର୍ବକୁ ଖୋଲିଛି ।

୨ । **ନାଟମନ୍ଦିର**—ଜଗମୋହନର ପୂର୍ବରେ ଅବସ୍ଥିତ । ଏହା ଗୋଟିଏ ମଣ୍ଡପ ପରି ନିର୍ମିତ । ଏଥିରେ ଜଣେ ଲୋକ ଠିଆହୋଇ ରହିବା ଭଳି ସୁବିଧା ଅଛି ।

ଜଗମୋହନ ଓ ନାଟମନ୍ଦିରର ବାହ୍ୟ ଦୃଶ୍ୟ ପୀଢ଼ ଦେଉଳ ପରି । ସେଠାରେ କୌଣସି ଶିଳ୍ପକାର୍ଯ୍ୟ ନାହିଁ ।

**ପୂର୍ବଦିଗର ମନ୍ଦିର**—ବଡ଼ଦେଉଳର ପୂର୍ବରେ ଆଉ ଏକ ଅତି ଛୋଟ ମନ୍ଦିର ଅଛି । ଏହାର ଗୋଟିଏ ମାତ୍ର କୋଠରୀ । ଏହି କୋଠରୀ ମଧ୍ୟରେ ପଶ୍ଚିମ କାନ୍ଥକୁ ଲାଗି ଛୋଟିଆ ସିଂହାସନ ଉପରେ ତୀର୍ଥଙ୍କର ମୂର୍ତ୍ତି ରଖାଯାଇଛି । ଏହି ମନ୍ଦିରର ଦ୍ୱାର ପୂର୍ବଦିଗକୁ ଖୋଲିଛି । ଏହାର ଆକୃତି ପୀଢ଼ ଦେଉଳ ସଦୃଶ । ମନ୍ଦିରଗୁଡ଼ିକରେ

କୌଣସି ଚାତୁକାର୍ଯ୍ୟ ନାହିଁ । ୧୯୩୬ ଖ୍ରୀଷ୍ଟାବ୍ଦରେ କଲିକତାର ଦିଗମ୍ବର ଜୈନସଂଘ ନିଜ ବ୍ୟୟରେ ଏହି ମନ୍ଦିରଗୁଡ଼ିକର ଚଟାଣ, ସିଂହାସନ, ପାଉଛ ପ୍ରଭୃତିରେ ମର୍ମର ପ୍ରସ୍ତର ଛାଉଣି କରିଥିଲେ । ମନ୍ଦିର ଥିବା ଉଚା ଚଟାଣ ମଧ୍ୟ ସେହି ପ୍ରସ୍ତରଦ୍ୱାରା ଛାଉଣି ହୋଇଅଛି ।

ଆଧୁନିକ ଯୁଗର ଜୈନ ମନ୍ଦିର କଟକରେ ମ୍ୟୁନିସିପାଲିଟି ଅଫିସ ନିକଟରେ ଲାଗି ଗୋଟିଏ ଜୈନ ମନ୍ଦିର ଅଛି । (ଏହି ମନ୍ଦିର ଥିବା ସ୍ଥାନକୁ ହାଟ ପଡ଼ିଆ କୁହାଯାଏ ।) ଏହା ୧୮୮୪ ଖ୍ରୀଷ୍ଟାବ୍ଦରେ ପାଉଦାର ବଂଶଧରମାନଙ୍କଦ୍ୱାରା ପ୍ରଥମେ ସ୍ଥାପିତ ହୋଇଥିଲା । ତହିଁ ମନ୍ଦିରଟି ଭାଙ୍ଗି ଯାଇଥିବାରୁ ଗତ ୧୩୧୬ ସାଲ ଅର୍ଥାତ୍ ୧୯୦୯ ଖ୍ରୀଷ୍ଟାବ୍ଦରେ ଏହି ବଂଶର ସୁନାବାଈ ନାମକ ଜଣେ ଧର୍ମପ୍ରାଣା ମହିଳା ନିଜ ବ୍ୟୟରେ ବର୍ତ୍ତମାନ ମନ୍ଦିର ନିର୍ମାଣ କରିଥିଲେ ।

କଟକର ଜୈନ ମନ୍ଦିର—ଏଠା ମନ୍ଦିର ଆଧୁନିକ ଯୁଗରେ ନିର୍ମିତ ହୋଇ-ଥିବାରୁ ଏଥିରେ ପ୍ରକୃତ ଶିଳ୍ପକାର୍ଯ୍ୟ ଦେଖାଯାଏ ନାହିଁ । ମନ୍ଦିରଟି ତିନି ଭାଗରେ ବିଭକ୍ତ ।

(୧) ବିମାନ (ରେଖଦେଉଳ)
(୨) ମୁଖ ଶାଳା } ଏଗୁଡ଼ିକ ପୀଢ଼ ଦେଉଳ ।
(୩) ନାଟ ମନ୍ଦିର

ପରବର୍ତ୍ତୀ ଭୋଗମଣ୍ଡପକୁ ବାଦ୍ ଦେଲେ ସମୁଦାୟ ମନ୍ଦିରର ବାହ୍ୟରୂପ ସାଧାରଣ ଉତ୍କଳୀୟ ମନ୍ଦିର ପରି ଦେଖାଯାଏ । ପ୍ରଥମ ଭାଗରେ ଉତ୍କଳୀୟ ମନ୍ଦିର ପରି ଭୂପତନ, ପୀଠ, ବାଢ଼, ରେଖ, ବେକି ଆମଳକଶିଳା ଓ କଳଶ ପ୍ରଭୃତି ଏଥିରେ ଅଛି । କଳଶ ଉପରେ ଖଣ୍ଡିଏ ପତାକା ଏବଂ କଳଶର ଚାରି କୋଣରେ ଆମଳକଶିଳା ଉପରେ ଚାରିଗୋଟି ଛୋଟ ଛୋଟ ସ୍ତମ୍ଭ ଦେଖାଯାଏ । ଏହି ସ୍ତମ୍ଭଗୁଡ଼ିକୁ ଦେଖିଲେ ଉତ୍କଳୀୟ ମନ୍ଦିରଠାରୁ ଜୈନ ମନ୍ଦିରକୁ ପୃଥକ୍ କରାଯାଇ ପାରେ ।

ପାର୍ଶ୍ୱ ଦେବତା—ଉତ୍କଳୀୟ ମନ୍ଦିର ପରି ଏହି ମନ୍ଦିରରେ କୌଣସି ପାର୍ଶ୍ୱ ଦେବତା ରଖା ଯାଇ ନାହିଁ ।

ଅଶ୍ଳୀଳ ମୂର୍ତ୍ତି—ଏଠା ମନ୍ଦିରର ବାହାରରେ ଦୁଇଗୋଟି ଅଶ୍ଳୀଳ ମୂର୍ତ୍ତି ଓ ଦୁଇଗୋଟି ଋଷିପ୍ରତିମା ଦେଖାଯାଏ ।

ଦିଗମୂର୍ତ୍ତି—ଉତ୍କଳୀୟ ମନ୍ଦିରଗୁଡ଼ିକରେ ଯେପରି ଗଜ, ସିଂହ, ଓଳଟା ଗଜ ସିଂହ ପ୍ରଭୃତି ମୂର୍ତ୍ତି ମନ୍ଦିରର ଉପର ଛାତର ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଦିଗର ମଧ୍ୟଭାଗରେ ରଖାଯାଏ ଏଠାରେ, ମଧ୍ୟ ସେପରି ମୂର୍ତ୍ତି ଅଛି । କିନ୍ତୁ ଏଗୁଡ଼ିକ ସାଧାରଣ ଚୂନ ଓ ଇଟାରେ ନିର୍ମିତ ଥିବାରୁ ସ୍ପଷ୍ଟ ବା ପରିଷ୍କାର ଚିହ୍ନାଇ ଶକ୍ତି ହୁଏ ନାହିଁ ।

ଭିତର—ଏହି ମନ୍ଦିରର ଭିତର ଭାଗ ଉତ୍କଳୀୟ ମନ୍ଦିର ପରି ଦେଖାଯାଏ । ଏହାର ଦ୍ୱାର ପୂର୍ବଦିଗକୁ ଖୋଲା ହୋଇଛି । ନାଟ ମନ୍ଦିରର ପୂର୍ବ, ଉତ୍ତର ଓ ଦକ୍ଷିଣ ଦିଗରେ ତିନୋଟି ଦ୍ୱାର । ଏହାର ପଶ୍ଚିମରେ ମନ୍ଦିରର ମୁଖଶାଳା । ମୁଖଶାଳା ଓ ନାଟମନ୍ଦିର ମଧ୍ୟରେ କୌଣସି ଦ୍ୱାର ନାହିଁ; କେବଳ ଖୋଲା ରହିଛି । ମୁଖଶାଳା ଓ ଜଗମୋହନ ମଧ୍ୟରେ ଗୋଟିଏ ଦ୍ୱାର ଅଛି । ଜଗମୋହନର କୌଣସି ଝରକା ନାହିଁ; କିନ୍ତୁ ଉତ୍ତର ଓ ଦକ୍ଷିଣ କାନ୍ଥରେ କେତୋଟି ଜାଲି ଦେଇ ଆଲୁଅ ଭିତରକୁ ପ୍ରବେଶ କରେ । ନାଟମନ୍ଦିରର ଉପର ଛାତ ଓ କାନ୍ଥ ଦେହରେ କେତେକ ଚିତ୍ର ଅଛି । ଏହି ଚିତ୍ରଗୁଡ଼ିକ ତୀର୍ଥଙ୍କରମାନଙ୍କର ପୂର୍ବଇତିହାସ ଓ ସେମାନଙ୍କର ଜନ୍ମପୂର୍ବରୁ ସେହି ସେହି ଦେଶର ରାଜା ପ୍ରଭୃତି ଦେଖିଥିବା ସ୍ୱପ୍ନବୃତ୍ତାନ୍ତର ବର୍ଣ୍ଣନା ବୋଲି ସ୍ଥାନୀୟ ପାରଉଆମାନେ କହନ୍ତି ।

ଜଗମୋହନରେ ଗୋଟିଏ ଅତି ବଡ଼ ସିଂହାସନ ଅଛି । ଏହି ସିଂହାସନର ଉପରେ ଧାଡ଼ ଧାଡ଼ ହୋଇ ତୀର୍ଥଙ୍କର ମୂର୍ତ୍ତିମାନ ରଖାଯାଇଅଛି । ଏଥିରୁ କେତେକ ତୀର୍ଥଙ୍କର ଖଡ଼୍ଗାସନ ବା କାୟୋତ୍ସର୍ଗ ରୂପରେ ଆଉ କେତେକ ପଦ୍ମାସନରେ ଦେଖାଯାନ୍ତି । କାନ୍ଥର ଚିତ୍ର ଓ ଜଗମୋହନର ତୀର୍ଥଙ୍କର ମୂର୍ତ୍ତି ବ୍ୟତୀତ ଏହି ମନ୍ଦିରରେ ଅନେକଗୁଡ଼ିଏ ଜୈନ ତୀର୍ଥସ୍ଥାନର ଫଟୋଗୁଡ଼ିକ ରଖାଯାଇଅଛି । ଏଗୁଡ଼ିକ ଭାରତର ବିଭିନ୍ନ ସ୍ଥାନରୁ ସଂଗୃହୀତ ହୋଇଥିଲା । ଏଠା ଜୈନମାନେ ଦିଗମ୍ବର ଶାଖାର ଜୈନ ଥିବାରୁ ସେମାନଙ୍କର ତୀର୍ଥଙ୍କର ମୂର୍ତ୍ତିଗୁଡ଼ିକ ଉଲଗ୍ନ ଦେଖାଯାନ୍ତି । ଏଥିରୁ ଅନେକ ତୀର୍ଥଙ୍କର ଉତ୍କଳର ନିମ୍ନ କେତେକ ସ୍ଥାନରୁ ସଂଗୃହୀତ ହୋଇଥିବାର ଜଣାଯାଏ । କଟକର ଜଗତ୍‌ସିଂହପୁର, ଚୌଦ୍ୱାର, ଯାଜପୁର ପ୍ରଭୃତି ସ୍ଥାନରୁ, ପୁରୀର ପ୍ରାଚୀତୀର ଓ କୁଶଭଦ୍ରା ନଦୀକୂଳରୁ ।

ନୀଳଗିରି—ଖଣ୍ଡଗିରିର ପାଦଦେଶରେ ଥିବା ସରକାରୀ ଡାକବଙ୍ଗଳାଠାରୁ କିଛି ଦୂର ଦକ୍ଷିଣପଶ୍ଚିମଦିଗକୁ ଗଲେ ସେଠାରେ ଗୋଟିଏ ଛୋଟ ପାହାଡ଼ରେ

ଦେତୋଟି ଗୁମ୍ଫା ଦେଖାଯାଏ । ଏହି ପାହାଡ଼କୁ ନୀଳଗିରି କୁହାଯାଏ । ନୀଳଗିରି ଉପରେ ନିମ୍ନ ଦେତୋଟି ଗୁମ୍ଫା ଓ କୁଣ୍ଡ ଅଛି ।

୧ । ଭଗ୍ନଗୁମ୍ଫା

୨ । ଚୋଟିଏ ମଣ୍ଡପ । ଏହାର ଛାତ ନାହିଁ ।

୩ । ଆଉ ଏକ ଗୁମ୍ଫା—ଏହାର ଦ୍ୱାର ଦକ୍ଷିଣ ଦିଗକୁ ଖୋଲା ଯାଇଛି । ଏହା ଦୁଇ ଭାଗରେ ବିଭକ୍ତ । ଦୁଇ ବଖରାର ମଧ୍ୟବର୍ତ୍ତୀ କାନ୍ଥ ଆଧୁନିକ ଯୁଗରେ ନିର୍ମିତ ଅଟେ ।

୪ । ଆହୁରି ଦକ୍ଷିଣକୁ ଗଲେ ଅନ୍ୟ ଏକ ଗୁମ୍ଫା ଦେଖାଯାଏ । ଏହି ଗୁମ୍ଫାର ଅତି ନିକଟରେ ୫ ଶ୍ୟାମା କୁଣ୍ଡ ଓ ୬ ରାଧାକୁଣ୍ଡ ଅଛି । ନୀଳଗିରିର ପ୍ରୋକ୍ତ ଗୁମ୍ଫା-ଗୁଡିକ କେବେ କାହା ଦ୍ୱାରା ଖୋଳାଯାଇଥିଲା, ତାହା ସ୍ଥିର କରିବାର ସୁବିଧା ନାହିଁ । ତେବେ ଏହି ପାହାଡ଼ର ଅବସ୍ଥିତି ଓ ଗୁମ୍ଫାଗୁଡିକର ଆକୃତି ଦେଖିଲେ ଏଗୁଡିକ ମଧ୍ୟ ଏଠାର ଅନ୍ୟାନ୍ୟ ଗୁମ୍ଫା ସଙ୍ଗେ ଖୋଳା ହୋଇଥିବାର ସମ୍ଭବ ।

ଉଦୟଗିରି—ଖଣ୍ଡଗିରିର ଗୁମ୍ଫାଗୁଡିକରେ ଯେଉଁ ତୀର୍ଥଙ୍କର ପ୍ରତିମୂର୍ତ୍ତି, ଜୈନଯନ୍ତ୍ରକର ଚକ୍ର ଓ ଆଉ କେତୋଟି ଦୃଶ୍ୟ ଖୋଳାଯାଇଛି, ସେଗୁଡିକୁ ଦେଖିଲେ ଜୈନ ଧର୍ମର ଆଧ୍ୟାତ୍ମିକ ବା ଧର୍ମଭାବ ଦେଖାଇବା ପାଇଁ ସେହି ଗୁମ୍ଫାଗୁଡିକ ଖୋଳା-ଯାଇଥିବାର ସ୍ପଷ୍ଟ କୁହାଯାଇପାରେ । କିନ୍ତୁ ଧର୍ମଭାବ ସଙ୍ଗେ ସଙ୍ଗେ ରାଜନୈତିକ, ପାରିବାରିକ ଏବଂ ଶିଳ୍ପସ୍ଥାପତ୍ୟ ଓ ସଭ୍ୟତାର ବିଶେଷତ୍ୱ ଦେଖାଇବା ପାଇଁ ଖଣ୍ଡଗିରି ନିକଟବର୍ତ୍ତୀ ଆଉ ଏକ ପାହାଡ଼ର ଗୁମ୍ଫାଗୁଡିକ ଖୋଳାଯାଇଥିବାର ଜଣାଯାଏ। ଏହି ପାହାଡ଼କୁ ଉଦୟଗିରି କୁହାଯାଏ । ଏହା ଉପରେ ଛିଡା ହୋଇ ପ୍ରାତଃକାଳରେ ପୂର୍ବ ଦିଗକୁ ଦେଖିଲେ ସୂର୍ଯ୍ୟଦେବ ଭୂଗର୍ଭରୁ ଉଦୟ ହେଉଥିବାର ଦେଖାଯାନ୍ତି । ଏହି କାରଣରୁ ଏହାର ନାମ ଉଦୟଗିରି ହୋଇଥିବାର ସ୍ଥାନୀୟ କିମ୍ବଦନ୍ତୀ ଅଛି । ଏହି ପାହାଡ଼ର ଅନ୍ୟ ଏକ ନାମ 'କୁମାରୀ ପର୍ବତ' । ଏହାର ଉଚ୍ଚତା ପ୍ରାୟ ୧୧୦ ଫୁଟ ଏବଂ ଏଥିରେ ୪୪ ଗୋଟି ଗୁମ୍ଫା ଖୋଳାଯାଇଛି । ତନ୍ମଧ୍ୟରୁ ନିମ୍ନଗୁଡିକ ପ୍ରଧାନ ଅଟେ ।

(୧)ରାଣୀ ହଂସପୁର ବା ରାଣୀ ନହର, (୨–୩)ସଙ୍ଗୀତକାର ଓ ବାଜା-କାରଙ୍କ ଗୁମ୍ଫା (୪) ଛୋଟ ହାତୀ ଗୁମ୍ଫା (୫) ଅଳକାପୁରୀ ବା କୁବେର ଗୁମ୍ଫା (୬) ଜୟବିଜୟ ଗୁମ୍ଫା (୭) ଠାକୁରାଣୀ ଗୁମ୍ଫା (୮) ପନସା ଗୁମ୍ଫା (୯) ପାତଳପୁରୀ ଗୁମ୍ଫା (୧୦) ମଞ୍ଚାପୁରୀ ଗୁମ୍ଫା (୧୧) ଗଣେଶ ଗୁମ୍ଫା (୧୨) ଧାନଘର ଗୁମ୍ଫା (୧୩) ହାତୀଗୁମ୍ଫା

(୧୪) ସର୍ପଗୁମ୍ଫା (୧୫) ବାଘଗୁମ୍ଫା (୧୬) ହରିଦାସ ଗୁମ୍ଫା (୧୭) ଜମ୍ବେଶ୍ୱର ଗୁମ୍ଫା (୧୮) ଜଗନ୍ନାଥ ଗୁମ୍ଫା (୧୯) ରୋଷେଇ ଗୁମ୍ଫା ।

ଉଦୟଗିରିର ସବୁ ଗୁମ୍ଫା ମଧ୍ୟରୁ କେତୋଟି ପ୍ରଧାନ ଅଟେ—

୧ମ । ରାଣୀହଂସ ପୁର—ଉଦୟଗିରିର ସବୁ ଗୁମ୍ଫାଠାରୁ ଏହା ଅତି ବଡ଼ ଓ କାରୁକାର୍ଯ୍ୟପୂର୍ଣ୍ଣ । ଏହିଠାରେ ତଳ ଓ ଉପର ଦୁଇ କୁଳପ୍ରସ୍ଥ ଓ ଦୁଇ ଧାଡ଼ି ଗୁମ୍ଫା ପ୍ରସ୍ତର ଦେହରେ ଖୋଳାଯାଇଛି । ପ୍ରତ୍ୟେକ ଧାଡ଼ିରେ ଅତି ଦଶ ଗୋଟି ଗୁମ୍ଫା ଅଛି ଏବଂ ଏଗୁଡ଼ିକ ଅର୍ଦ୍ଧବୃତ୍ତାକାର କମ୍ବା ଦକ୍ଷିଣ, ପଶ୍ଚିମ ଓ ଉତ୍ତର ଦିଗରେ ବ୍ୟାପିଛି । ପୂର୍ବଦିଗ ଖୋଲା ରହିଛି । ପ୍ରତ୍ୟେକ ଗୁମ୍ଫାର ସମ୍ମୁଖରେ ପ୍ରଶସ୍ତ ବାରଣ୍ଡା ଓ ବାହାର କାନ୍ଥରେ ଅନେକ ସୁନ୍ଦର ଦୃଶ୍ୟର ଚିତ୍ର ସେହି ପ୍ରସ୍ତର ଦେହରେ ଖୋଳା-ଯାଇଛି । ଖଣ୍ଡଗିରି ଗୁମ୍ଫା ପରି ଏଠାରେ କୌଣସି ତୀର୍ଥଙ୍କର ମୂର୍ତ୍ତିମୂର୍ତ୍ତି ଦେଖାଯାଉ ନ ଥିବାରୁ ଏଗୁଡ଼ିକ ମନୁଷ୍ୟ ବାସୋପଯୋଗୀ 'ଗୃହ'ରୂପେ ବ୍ୟବହାର କରୁଥିବାର ଅନୁମିତ ହୁଏ । ଏଠାରେ ଥିବା ଅନ୍ୟାନ୍ୟ ଦୃଶ୍ୟର ବର୍ଣ୍ଣନା ପରେ ଦିଆଯିବ ।

(୨୫ଶ ଚିତ୍ର)

୨ୟ । ହାତୀଗୁମ୍ଫା—ଏହି ଗୁମ୍ଫାଟି ରାଣୀହଂସ ପୁରର ପଶ୍ଚିମରେ ପ୍ରାୟ ୨୫୦ ଫୁଟ ଦୂରରେ ଅବସ୍ଥିତ । ଏହାର ଲମ୍ବା ୫୬ ଫୁଟ, ଚୌଡ଼ା ୨୮ ଫୁଟ ଏବଂ ଉଚ୍ଚତା ପ୍ରାୟ ୧୨ ଫୁଟ । ଗୋଟିଏ ଅତି ବଡ଼ ହାତୀ ରହିବା ଭଳି ପ୍ରଶସ୍ତ ସ୍ଥାନ ଏହି ଗୁମ୍ଫାରେ ଦେଖାଯାଏ । ପୂର୍ବେ ଏହି ଗୁମ୍ଫାର ଭିତରଭାଗ ୩୪ ଗୋଟି କୋଠରୀରେ ବିଭକ୍ତ ହୋଇଥିବାର ଅନୁମିତ ହୁଏ; କିନ୍ତୁ ଆଜକାଲି ଏହା ଗୋଟିଏ ଅତି ବଡ଼ ଖୋଲା ଗୁମ୍ଫା ପରି ଦେଖାଯାଏ । ଏହାର କୌଣସି ପାଚେରୀ, ଦ୍ୱାରବା କି ଅନ୍ୟ କୌଣସି କାରୁ ସଜ୍ଜା ନାହିଁ । ଗୁମ୍ଫାର ଭିତର କାନ୍ଥରେ କେତୋଟି ଲିପି ଦେଖାଯାଏ । ଏଗୁଡ଼ିକ ବୋଧହୁଏ ଜୈନ ସନ୍ନ୍ୟାସୀମାନଙ୍କର ନାମ ଅଟେ ।

ଏହି ଗୁମ୍ଫାର ବିଶେଷତ୍ୱ ମଧ୍ୟରେ ଏହାର ଉପର ପ୍ରସ୍ତରକୁ ଉତ୍ତମରୂପେ ଚିକ୍କଣ କରାଯାଇ ସେଠାରେ ଖାରବେଳଙ୍କ ଇତିହାସ-ପ୍ରସିଦ୍ଧ 'ହାତୀଗୁମ୍ଫା ଲିପି' ଖୋଦାଯାଇଛି । ଏହି ଲିପି ଏବେ ଓଡ଼ିଶା ତାହାଁକି, ସମଗ୍ର ଭାରତ ଏବଂ ଏସିଆର ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମନରେ ବିସ୍ମୟ ଘଟାଇଅଛି । ଏହି ଲିପିରୁ କଳିଙ୍ଗର ଅମର ଇତିହାସ ଜାଣି ହୁଏ ।

୩ୟ । ଛୋଟ ହାତୀଗୁମ୍ଫା—ଏହି ଗୁମ୍ଫାର ଭିତର କାନ୍ଥରେ ଦୁଇଟି ହାତୀର ଚିତ୍ର ଖୋଳାଯାଇଛି । ଅନ୍ୟ ଏକ ହାତୀର ମୁଣ୍ଡ ନାହିଁ—କେବଳ ଦେହ ଓ ଗୋଡ଼-ଗୁଡ଼ିକ ଦେଖାଯାଏ ।

୪ର୍ଥ । ଅଳକାପୁରୀ ବା ସ୍ୱର୍ଗପୁରୀ ଗୁମ୍ଫା—ଏହି ଗୁମ୍ଫାର କାନ୍ଥଗୁଡ଼ିକରେ ପକ୍ଷଯୁକ୍ତ ସିଂହ, ମନୁଷ୍ୟମୁଣ୍ଡଯୁକ୍ତ ପଶୁ, ଗୋଟିଏ ହାତୀ, ଅନ୍ୟ ଏକ ପୃଷ୍ଠହାତୀ ଉପରେ ଛତା ଟାଣିଛି ଏବଂ ଆଉ ଗୋଟିଏ ହାତୀ ଉକ୍ତ ବୃକ୍ଷହାତୀକି ପଙ୍ଖା ପକାଉଛି ।

୫ମ । ଜୟ ବିଜୟ ଗୁମ୍ଫା—ଦ୍ୱାରରେ ଦ୍ୱାରପାଳ ସଶସ୍ତ୍ର ହୋଇ ଦଣ୍ଡାୟମାନ । ଉପର କାନ୍ଥରେ ଯକ୍ଷଗଣଙ୍କ ଚିତ୍ର, ଗୋଟିଏ ବନ୍ଧନୀଯୁକ୍ତ ବୃକ୍ଷମୂଳରେ ସ୍ତ୍ରୀପୁରୁଷ ବସି ପୂଜା କରୁଛନ୍ତି ।

୬ଷ୍ଠ । ମଞ୍ଚପୁରୀ—ଏଥିରେ କେତୋଟି ଲିପି ଖୋଦିତ ହୋଇଛି ।

୭ମ । ସ୍ୱର୍ଗପୁରୀ—ଏଠାରେ ମଧ୍ୟ ଲିପି ଖୋଦିତ ହୋଇଛି ।

୮ମ । ଗଣେଶ ଗୁମ୍ଫା—ଏହାର ଭିତର କାନ୍ଥରେ ଗଣେଶଙ୍କ ପ୍ରତିମୂର୍ତ୍ତି ଖୋଳାଯାଇଛି । ପଦ୍ମ ଶୁଣ୍ଢରେ ଧରି ହାତୀ ଦୁଇଟି ଦେଖାଯାଏ । ବାରଣ୍ଡା କାନ୍ଥରେ ଦ୍ୱାରୀ ସଶସ୍ତ୍ର ହୋଇ ଦଣ୍ଡାୟମାନ । ଦ୍ୱାରୀ ଉପରେ ଗୋଟିଏ ବୃଷଭର ଚିତ୍ର ଅଛି । ଖିଲାଣ ଉପରେ ସ୍ତମ୍ଭଶୀର୍ଷରେ ଉପର ପ୍ରସ୍ତରରେ ଥିବା କେତେକ ଦୃଶ୍ୟର ନକଲ ଦେଖାଯାଏ । ଏ ଦୃଶ୍ୟଗୁଡ଼ିକୁ ପାର୍ଶ୍ୱନାଥଙ୍କ ଜୀବନୀର କେତେକାଂଶ ବୋଲି ପଣ୍ଡିତ-ମାନେ ସ୍ଥିର କରିଛନ୍ତି ।

ଏଠାରେ ଥିବା ପ୍ରାୟ ପ୍ରତ୍ୟେକ ଗୁମ୍ଫାରେ କୌଣସି ନା କୌଣସି ପ୍ରତିମୂର୍ତ୍ତି ବା ଦୃଶ୍ୟ ଖୋଳାଯାଇଛି । କେତୋଟି ଗୁମ୍ଫାରେ ସେପରି କୌଣସି ବିଶେଷ ଶିଳ୍ପ-ଚାତୁରୀ ନ ଥିଲେହେଁ ଉକ୍ତ ଗୁମ୍ଫାର ଆକୃତି ବା ଉପର ଛାତ କୌଣସି ଗୋଟିଏ ଜନ୍ତୁଙ୍କ ମୁଣ୍ଡ ବା ଆକୃତି ଅନୁସାରେ ଗଢ଼ାଯାଇଛି । ଯଥା—ସର୍ପଗୁମ୍ଫା । ଏହାର ମୁଣ୍ଡ ସାପର ଶୁଣ୍ଢ ବା ମୁଣ୍ଡ ପରି ନିର୍ମିତ । ବାଘ ଗୁମ୍ଫା—ବାଘର ଶୁଣ୍ଢ ଓ ଆଖି ପରି ଏହି ଗୁମ୍ଫାର ଉପରି ଛାତ ଦେଖାଯାଏ ।

ଉତ୍କଳର ଅନ୍ୟାନ୍ୟ ମନ୍ଦିରଗୁଡ଼ିକରେ ଯେପରି ଅଶ୍ଳୀଳ ଚିତ୍ର ଦେଖାଯାଏ, ଏଠାରେ ସେପରି କୌଣସି ଚିତ୍ର ନାହିଁ ।

**ଗୁମ୍ଫାର ଶ୍ରେଣୀବିଭାଗ**—ଖଣ୍ଡଗିରି ଓ ଉଦୟଗିରିରେ ଥିବା ଗୁମ୍ଫାଗୁଡ଼ିକୁ ନିମ୍ନ ଲିଖିତ ଶ୍ରେଣୀରେ ବିଭକ୍ତ କରାଯାଇ ପାରେ ।

(୧) ଖୋଲା ଗୁମ୍ଫା—ସାଧାରଣ ପର୍ବତ ଗହ୍ୱର ଅପେକ୍ଷା ଉନ୍ନତ ଧରଣର ଶିଳ୍ପ-ବିଶିଷ୍ଟ ଗୁମ୍ଫା ।

(୨) ଖୋଲା ଗୁମ୍ଫା— ତନ୍ମଧ୍ୟର କାନ୍ଥଗୁଡ଼ିକ କଟାଯାଇ ଭିତର ଭାଗଗୁଡ଼ିକ ଛୋଟ ଛୋଟ କୋଠରୀ ଆକାରରେ ନିର୍ମିତ ।

(୩) ଛତାବୃତ୍ତ ଗୁମ୍ଫା

(୪) ଗୋଟିଏ କୋଠରୀ ଓ ପାଟବିଶିଷ୍ଟ ଗୁମ୍ଫା

(୫) ଗୋଟିଏ କୋଠରୀ ଓ ପାଟବିଶିଷ୍ଟ ଗୁମ୍ଫା; କିନ୍ତୁ ତହିଁର ଉପରଭାଗ ସାଧାରଣ କୋଠାଘର ଛାତ ପରି ନିର୍ମିତ ।

(୬) ଗୋଟିଏ ବାରଣ୍ଡା ଯୁକ୍ତ ଏକ କୋଠରୀ ଗୁମ୍ଫା

(୭) ଏକାଧିକ କୋଠରୀ ଏବଂ ସମବାରଣ୍ଡାଯୁକ୍ତ ଗୁମ୍ଫା

(୮) ଏକାଧିକ କୋଠରୀ, ସମବାରଣ୍ଡା ଏବଂ ଗୋଟିଏ ପାର୍ଶ୍ୱ କୋଠରୀ-ବିଶିଷ୍ଟ ଗୁମ୍ଫା

(୯) ଉପର୍ଯ୍ୟୁକ୍ତ ଆକାରରେ ପାର୍ଶ୍ୱସ୍ଥ ଏକାଧିକ କୋଠରୀଯୁକ୍ତ ଗୁମ୍ଫା

(୧୦) ବାରଣ୍ଡା ନ ଥାଇ ଦ୍ୱିପ୍ରସ୍ଥ ଗୁମ୍ଫା

(୧୧) ବାରଣ୍ଡାଯୁକ୍ତ ଦ୍ୱିପ୍ରସ୍ଥ ଗୁମ୍ଫା

**ଗୁମ୍ଫାର ଆକାର**—ଉପର୍ଯ୍ୟୁକ୍ତ ଗୁମ୍ଫାଗୁଡ଼ିକର ବିଭିନ୍ନ ଆକାର ଦେଖାଯାଏ । ଅତି ଛୋଟ ତିନି ବର୍ଗଫୁଟଠାରୁ ଆରମ୍ଭ କରି ପ୍ରାୟ ୨୬ ଫୁଟ ଲମ୍ବ ଓ ୬ଫୁଟ ଚୌଡ଼ା-ବିଶିଷ୍ଟ ଗୁମ୍ଫା ମଧ୍ୟ ଏଠାରେ ଦେଖାଯାଏ । ଅତି ଛୋଟ ଗୁମ୍ଫାରେ ଜଣେ ସନ୍ନ୍ୟାସୀ ସଦାସନ କରି ବସିବା ସୁବିଧା ମଧ୍ୟ ନାହିଁ । ଅନ୍ୟ କେତୋଟି ଗୁମ୍ଫାର ଉଚ୍ଚତା ପ୍ରାୟ ୩।୪୍ ଓ ୬ ଫୁଟ ମଧ୍ୟ ଅଛି ।

**କାରୁକାର୍ଯ୍ୟ**—ଅଳ୍ପ କେତୋଟି ଅତି ଛୋଟ ଗୁମ୍ଫାଗୁଡ଼ିକର ଭିତର ଓ ବାହାର କାନ୍ଥରେ କୌଣସି କାରୁକାର୍ଯ୍ୟ ଦେଖାଯାଏ ନାହିଁ । ଏଗୁଡ଼ିକୁ ବାଦ୍ ଦେଲେ ଅଧିକାଂଶ ବଡ଼ ଗୁମ୍ଫାରେ ନାନାବିଧ ପ୍ରତିକୃତିର ଚିତ୍ର ଖୋଳାଯାଇଛି । ଖଣ୍ଡଗିରିର ଗୁମ୍ଫା ଭିତର କାନ୍ଥରେ ଅନେକଗୁଡ଼ିଏ ଜୈନ ତୀର୍ଥଙ୍କର ମୂର୍ତ୍ତିମାନ ଖୋଳାଯାଇଛି । ଗୁମ୍ଫା ବାହାର କାନ୍ଥରେ ମଧ୍ୟ କେତେକ ଦୃଶ୍ୟର ଛବି ଦେଖାଯାଏ । ଖଣ୍ଡଗିରିର

ଗୁମ୍ଫାଗୁଡ଼ିକ ଜୈନମନ୍ଦିର ଉଦ୍ଦେଶ୍ୟରେ ଖୋଦିତ ହୋଇଥିବାରୁ ଏଠାରେ ସେହି ଧର୍ମର ପୂର୍ବପୁରୁଷଙ୍କ ପ୍ରସ୍ତରମୂର୍ତ୍ତିମାନ ଖୋଦାଯାଇଥିବାର ଅନୁମିତ ହୁଏ । ଯେଉଁ ଅତି ଛୋଟ ଗୁମ୍ଫାଗୁଡ଼ିକରେ କୌଣସି ପ୍ରସ୍ତରମୂର୍ତ୍ତି ଖୋଳାଯାଇ ନାହିଁ, ସେଗୁଡ଼ିକର ତଳ ଚଟାଣ ଅନ୍ୟାନ୍ୟ ଗୁମ୍ଫା ଅପେକ୍ଷା କିଛି ଉଚ୍ଚ କରାଯାଇଛି ଏବଂ ସେହି ଚଟାଣରେ କାନ୍ଥକୁ ଲାଗି ଛୋଟ ଛୋଟ ବେଞ୍ଚ ସେହି ପ୍ରସ୍ତର ଦେହରେ ଖୋଳାଯାଇଛି । ଏଗୁଡ଼ିକ ସମ୍ଭବତଃ ଜୈନ ସନ୍ନ୍ୟାସୀମାନଙ୍କର ବାସସ୍ଥଳରୂପେ ବ୍ୟବହୃତ ହେଉଥିଲା ।

ଅଧିକାଂଶ ବଡ଼ ଗୁମ୍ଫାର ଚୌକାଠ ଉପରେ ଏବଂ ଆଗ କାନ୍ଥରେ ଅନେକ ଧରଣର କାରୁକାର୍ଯ୍ୟ ଦେଖାଯାଏ । ଏହି କାରୁକାର୍ଯ୍ୟ ଭୁବନେଶ୍ୱର ବା କୋଣାର୍କର ସୂର୍ଯ୍ୟମନ୍ଦିରରେ ଥିବା କାରୁକାର୍ଯ୍ୟ ପରି ତେତେ ସୂକ୍ଷ୍ମ ଓ ସୁନ୍ଦର ନ ହେଲେହେଁ ପ୍ରକୃତିବର୍ଣ୍ଣନରେ ଏଠାର ଶିଳ୍ପୀମାନେ ବିଶେଷ ଦକ୍ଷତା ଅର୍ଜନ କରିଥିଲେ ପରି ଜଣାଯାଏ । ସ୍ତ୍ରୀ ଓ ପୁରୁଷମାନଙ୍କର ସମସ୍ତ ପ୍ରକାର ମନୋଭାବ, ଯଥା—ଦୁଃଖ, ସୁଖ, ଆନନ୍ଦ, ଆକାଂକ୍ଷା ଓ ହତାଶ ପ୍ରଭୃତି ବେଶ୍ ସୁନ୍ଦରରୂପେ ଦେଖାଇ ପାରିଛନ୍ତି । ଏକାଧିକ ସ୍ଥାନରେ ଯେଉଁ ଯୂଥ ଯୂଥ ହାତୀ, ହରିଣ ଓ ହଂସ ପ୍ରଭୃତିର ଚିତ୍ର ଦିଆଯାଇଛି । ଏଗୁଡ଼ିକ ଦେଖିଲେ ଶିଳ୍ପୀର ପ୍ରାକୃତିକ ଜ୍ଞାନ ବେଶ୍ ଜଣାଯାଏ । ବୃକ୍ଷ, ଲତା, ପଦ୍ମ ପ୍ରଭୃତିର ଚିତ୍ର ତେତେ ସୂକ୍ଷ୍ମ ନ ହେଲେ ମଧ୍ୟ ମନୋହର ଦେଖାଯାଏ ।

କେତେକ ସ୍ଥାନରେ ମନୁଷ୍ୟ ଜୀବନର ପାରିବାରିକ ଚିତ୍ରଣ ମଧ୍ୟ ଭଲରୂପେ ଖୋଦିତ ହୋଇଥିବାର ଦେଖାଯାଏ । ପୁରୁଷମାନେ ଆଧୁନିକ ଓସ୍ତାଦଙ୍କ ଭଳି ପାଇକଚ୍ଛା (ଫେରିକଚ୍ଛା) ମାରି ଲୁଗା ପିନ୍ଧିଛନ୍ତି । ସମ୍ଭ୍ରାନ୍ତ ସ୍ତ୍ରୀମାନେ ଅତି ସୂକ୍ଷ୍ମ ଲୁଗା ପିନ୍ଧିଛନ୍ତି । ସ୍ତ୍ରୀ ଓ ପୁରୁଷଙ୍କ ଦେହରେ ନାନାବିଧ ଅଳଙ୍କାର ଦେଖିବାକୁ ପାଉ । ସେମାନଙ୍କର କାନରେ 'କର୍ଣ୍ଣଫୁଲ' ଗୁଡ଼ିକ ଅତି ସ୍ପଷ୍ଟଭାବରେ ଦେଖାଯାଏ । ଏଠା ପୁରୁଷମାନଙ୍କ ମୁଣ୍ଡରେ ପଗଡ଼ି ଦେଖାଯାଏ ।

ଅନେକ ରକମର ସାମରିକ, ମନୋରଞ୍ଜକ ଓ ଗୃହୋପକରଣ ମଧ୍ୟ ଏହି ଚିତ୍ରଗୁଡ଼ିକରେ ଦେଖିବାକୁ ପାଉଁ । ଯୁଦ୍ଧାସ୍ତ୍ର, ଖଣ୍ଡା, ଢାଲ, ଧନୁ, ଶର, ଦୋଚାଲାଘର, ଦ୍ୱାରଯୁକ୍ତ ଗୁମ୍ଫା, ବସିବାକୁ ଆସନ, ଶେଯ, ଝୁଲିଆ, ଗଦି, ଥାଳ, ଝରି, ବାଦ୍ୟଯନ୍ତ୍ର, ଛତା ପ୍ରଭୃତିର ଚିତ୍ର ସ୍ଥାନେ ସ୍ଥାନେ ଖୋଳାଯାଇଅଛି । ଆଧ୍ୟାତ୍ମିକ ଜୀବନର କେତେକ ଚିତ୍ର ଏଠାରେ ଦେଖିବାକୁ ପାଉଁ । ଗୋଟିଏ ମନ୍ଦିର ସମ୍ମୁଖରେ ମଣ୍ଡପ, ବେଦୀ, ଧର୍ମାଚରଣ, ଦର୍ଶକବୃନ୍ଦ, ଯୋଗୀ ବା ସନ୍ନ୍ୟାସୀ ପ୍ରଭୃତି ଦେଖାଯାନ୍ତି ।

ଖଣ୍ଡଗିରିର ଗୁମ୍ଫାଗୁଡ଼ିକରେ ଖୋଦିତ ହୋଇଥିବା ତୀର୍ଥଙ୍କର ମୂର୍ତ୍ତିଗୁଡ଼ିକ ବାସ୍ତବରେ ଜୈନ ଶିଳ୍ପର ଅତି ପ୍ରାଚୀନ ନିଦର୍ଶନ ବୋଲି କୁହାଯାଇପାରେ । ଏହି ତୀର୍ଥଙ୍କର ମୂର୍ତ୍ତିଗୁଡ଼ିକ ସଙ୍ଗେ ସେମାନଙ୍କର ବାହନ ଓ ଅନ୍ୟାନ୍ୟ ପ୍ରତିମୂର୍ତ୍ତିଗୁଡ଼ିକ ଯେପରି ସେହି ପ୍ରସ୍ତର ଦେହରେ ଖୋଳାଯାଇଛି, ଏହା ଦେଖିଲେ ସେକାଳର ଉତ୍କଳୀୟ ଶିଳ୍ପୀମାନେ ପର୍ବତ ଓ ପଥର ଦେହରେ ଏତେଗୁଡ଼ିଏ ଚିତ୍ର ଖୋଳିବା ପାଇଁ କିପରି ଦକ୍ଷତା ଲାଭ କରିଥିଲେ, ତାହା ଜାଣିହୁଏ ।

ଉପର୍ଯ୍ୟୁକ୍ତ ପାରିବାରିକ, ବୃକ୍ଷଲତା ଓ ପଶୁପକ୍ଷୀଙ୍କ ଚିତ୍ର ସଙ୍ଗେ ସଙ୍ଗେ ଉଦୟଗିରିର ସ୍ୱର୍ଗପୁରୀ ପୁରୀର ଅତି ବାନ୍ଧରେ ଆଉ କେତେକ ବିଶିଷ୍ଟ ଘଟଣାର ଚିତ୍ର ଦେଖାଯାଏ । ଏହି ଚିତ୍ରଗୁଡ଼ିକ ସ୍ୱର୍ଗପୁରୀ ପୁରୀର ନିମ୍ନ ପ୍ରକୋଷ୍ଠର ଦ୍ୱାରର ଉପରିଭାଗ ଓ ବାନ୍ଧରେ ଦେଖିବାକୁ ପାଉ । ସେହି ଚିତ୍ରର ବିଶେଷ ପରିଚୟ ନିମ୍ନରେ ଦିଆଗଲା :—

(୧) ପାହାଡ଼ ଦୃଶ୍ୟ—ଯୂଥ ଯୂଥ ହାତୀ ଅତି ଲମ୍ବା ଲମ୍ବା ପୁଷ୍ପ ଓ ଫଳପୂର୍ଣ୍ଣ ବୃକ୍ଷ ନିକଟରେ ଛିଡ଼ା ହୋଇଛନ୍ତି । ନିକଟରେ କେତୋଟି ଛୋଟ ପାହାଡ଼ ଅଛି । ଉକ୍ତ ପାହାଡ଼ ଉପରେ ଗୋଟିଏ ଛୋଟ ଗୁମ୍ଫା, କେତୋଟି ମାଙ୍କଡ଼ ଓ ଦୁଇ ଜଣ ସ୍ତ୍ରୀ ଅଛନ୍ତି ।

(୨) ପୂଜା ଦୃଶ୍ୟ—କେ ପ୍ରକୋଷ୍ଠ ଦକ୍ଷିଣ ଭାଗର ବାନ୍ଧରେ ଯେଉଁ ଖୋଦିତ ଚିତ୍ର ଦେଖାଯାଏ, ତାହା ଚାରି ଭାଗରେ ବିଭକ୍ତ । ଏହି ଚାରି ଭାଗର ଲମ୍ବା ପ୍ରାୟ ୧୯ ଫୁଟ । ଏଥିରୁ ୧ମ ଭାଗରେ—ଗୋଟିଏ ଗଛମୂଳରେ ଜଣେ ଠିଆ ଦ୍ୱାରପାଳ ଦଣ୍ଡାୟମାନ । ତାହାର ଅତି ନିକଟରେ ଜଣେ ସ୍ତ୍ରୀ ଓ ପୁରୁଷ ଦେଖାଯାନ୍ତି । ସ୍ତ୍ରୀଟି ହାତ ଯୋଡ଼ିଛି ଏବଂ ପୁରୁଷ ପାଇଜାମା ପରି ଲୁଗା ପିନ୍ଧିଛି । ଦୁହେଁ ହାତ ଯୋଡ଼ିଛନ୍ତି ଏବଂ ଦୁହିଙ୍କର ଅତି ବଡ଼ ଚକ୍ଷୁ ଦେଖାଯାଏ । ସେ ଦୁହିଙ୍କ ଲଗି ଅନ୍ୟ ଏକ ସ୍ତ୍ରୀ ଗୋଟିଏ ହାତରେ ଭକ୍ଷ ଭୋଗ ଓ ଅନ୍ୟ ହାତରେ ଗୋଟିଏ ଥାଳ ଧରି ଛିଡ଼ା ହୋଇଛି । ଏହି ସ୍ତ୍ରୀର ସମୁଦାୟ ଦେହ ଦେଖାଯାଏ ନାହିଁ । କେବଳ ଅଣ୍ଟାଠାରୁ ଉପରିଭାଗ ମାତ୍ର ଖୋଳାଯାଇଛି ।

୨ୟ ଭାଗ—ଉପର୍ଯ୍ୟୁକ୍ତ ସ୍ତ୍ରୀପୁରୁଷ ଏବଂ ତାହାଙ୍କ ଓ ଆଉ ଦୁଇ ଜଣ ସ୍ତ୍ରୀଙ୍କ ମଧ୍ୟରୁ ଜଣେ ଭକ୍ଷ ଭୋଗ ନିଜ ହାତରେ ଧରିଛି । ପ୍ରଥମ ସ୍ତ୍ରୀପୁରୁଷ ଆଧ୍ୟାତ୍ମିକ ଭାବାପନ୍ନ ହୋଇ ନୃତ୍ୟ କରୁଥିବାର ଦେଖାଯାନ୍ତି ।

୩ୟ ଭାଗ -ଗୋଟିଏ ମଣ୍ଡପ ତଳେ ଜଣେ ସ୍ତ୍ରୀ ନୃତ୍ୟ କରୁଛନ୍ତି । ତାହାର ହାତଗୁଡ଼ିକ ଦୁଇ ଦିଗରେ ବିସ୍ତାରିତ ହୋଇଛି; ଅନ୍ୟ ଚାରି ଜଣ ସ୍ତ୍ରୀ ଢୋଲ, ମୃଦଙ୍ଗ ଗିତାର ଓ ବଂଶୀ ବଜାଉଛନ୍ତି ।

୪ର୍ଥ ଭାଗ—ଜଣେ ସ୍ତ୍ରୀ ତାହାର ସ୍ୱାମୀ, ଅନ୍ୟ ଏକ ପୁରୁଷ ଏବଂ ଆଉ ଦୁଇ ଜଣ ସ୍ତ୍ରୀ ଭୋଗ ଧରିଛନ୍ତି । ଏଠାରେ ଗୋଟିଏ ଗଛ ମୂଳରେ ଜଣେ ବାଳକ ଛିଡ଼ା ହୋଇଛି ।

ଏତ ସ୍ତମ୍ଭର ପ୍ରଧାନ ବା ମଧ୍ୟ ଦୋଠର ବାମରେ ଥିବା ଦୃଶ୍ୟଗୁଡ଼ିକ ଅତି ବଡ଼ ଓ ବସ୍ତୃତ ଥିବାର ଦେଖାଯାଏ । ଏହା ୧୧ ଭାଗରେ ବିଭକ୍ତ । ଏହିଠାରେ ବାରଣ୍ଡା ଛାତ ପୂର୍ବରୁ ଭାଙ୍ଗିଯାଇଥିବାରୁ ଏଗୁଡ଼ିକର ପାଣି ପବନ ଯୋଗୁଁ ବିଶେଷ କ୍ଷତି ହୋଇ ଯାଇଛି । ଏଠାରେ ୧୧ ଭାଗରେ ଥିବା ଦୃଶ୍ୟ—

୧ମ । ଗୋଟିଏ ଗଛମୂଳରେ ଦ୍ୱିତଳ ପ୍ରାସାଦ । ତଳସ୍ତମ୍ଭରେ ଦୁଇଗୋଟି ଦ୍ୱାର । ସେହି ଦ୍ୱାରଦେଇ ତିନିଜଣ ସ୍ତ୍ରୀ ବାହାରକୁ ଦେଖୁଛନ୍ତି । ଉପର ସ୍ତମ୍ଭରେ ଗୋଟିଏ ମାତ୍ର ଦ୍ୱାର ଏବଂ ସେହି ଦ୍ୱାର ଦେଇ ଜଣେ ପୁରୁଷ ଦେଖୁଅଛି ।

୨ୟ । ଏହି ଭାଗର ଦୃଶ୍ୟଗୁଡ଼ିକ ଅତି ଅସ୍ପଷ୍ଟ ଦେଖାଯାଏ ।

୩ୟ । ଏଠାରେ ୬ଜଣ ବ୍ୟକ୍ତିଙ୍କର ସାମାନ୍ୟ ଚିହ୍ନମାନ ଦେଖାଯାଏ । ଏଥି ମଧ୍ୟରୁ ଜଣେ ଛତା ଟେଣିଛି, ଆଉ ଜଣେ ଘୋଡ଼ା ସବାର ହଉଛି ।

୪ର୍ଥ । ୧୦ ଜଣ ବ୍ୟକ୍ତିଙ୍କ ଅସ୍ପଷ୍ଟ ଚିହ୍ନ ଦେଖାଯାଏ । ତନ୍ମଧ୍ୟରୁ ଜଣେ ଗଣ୍ଡା ଧରିଛି ଏବଂ ଅନ୍ୟ ଜଣ ଗୋଟିଏ ହାତୀରେ ଚଢ଼ିଛନ୍ତି ।

୫ମ । ୬ଜଣଙ୍କର ଅସ୍ପଷ୍ଟ ଛବି ଦେଖାଯାଏ । ଜଣେ ଏଠାରେ ବିଶିଷ୍ଟ ବ୍ୟକ୍ତିଙ୍କ ଉପରେ ଛତା ଟେଣିଛି ।

୬ଷ୍ଠ । ଏଠାରେ ମଧ୍ୟ ଜଣେ ଲୋକ ଅନ୍ୟ ବ୍ୟକ୍ତି ଉପରେ ଛତା ଟେଣିଛି ।

୭ମ । ୬ଜଣଙ୍କ ଅସ୍ପଷ୍ଟ ଛବି ଦେଖାଯାଏ । ଏଥି ମଧ୍ୟରୁ ଜଣେ ଗଣ୍ଡା ଧରିଛି; ଅନ୍ୟ ଜଣେ ଲୋକ ଏଠାରେ ପ୍ରଧାନ ବ୍ୟକ୍ତିଙ୍କୁ ଯୋଡ଼ହସ୍ତ ହୋଇ ଦେଖୁଛି ।

୮ମ । ୯ ଜଣ ବ୍ୟକ୍ତିଙ୍କ ଦୃଶ୍ୟ ଦେଖାଯାଏ । ଦୁଇ ଜଣ ପାଲ୍କି ଲୋକଙ୍କୁ ନେଇ ଜଣେ ଲୋକ ଚାଲିଛି । ଅନ୍ୟ ଜଣେ ଲୋକ ଏଠାରେ ପ୍ରଧାନ ବ୍ୟକ୍ତିଙ୍କୁ ନମସ୍କାର କରୁଛି । ଦୁଇ ଜଣ ସ୍ତ୍ରୀ ଭକ୍ତିପୂର୍ବକ କେତେକ ପଦାର୍ଥ ଦାନ କରୁଛନ୍ତି, ଦୁଇ ଜଣ ସ୍ତ୍ରୀ ଆଣ୍ଠୁ ମାଡ଼ି ବସିଛନ୍ତି ।

୯ମ } ଏ ଦୁଇଟି ଦୃଶ୍ୟ ଫାଟକ ଉପରେ ଦେଖାଯାଏ । ଗୋଟିଏ ଘୋଡ଼ା
୧୦ମ } ନିକଟରେ ତିନି ଜଣ ପୁରୁଷ ଦଣ୍ଡାୟମାନ । ସେଥିରୁ ଜଣେ କେତର ମୁଣ୍ଡ ଉପରେ ଅନ୍ୟ ଜଣେ (ଭୃତ୍ୟ) ଛତା ଟେକିଛି ଏବଂ ସେହି ବିଶିଷ୍ଟ ବ୍ୟକ୍ତିଙ୍କ ପଛରେ ଦୁଇ ଜଣ ତରବାରିଧାରୀ ଅଛନ୍ତି ।

୧୧ଶ । ଶେଷୋକ୍ତ ଦୃଶ୍ୟରେ ଛ ଜଣ ସ୍ତ୍ରୀ ଦେଖାଯାନ୍ତି । ଏଥିମଧ୍ୟରୁ ତିନିଜଣ ଗୋଟିଏ ମାଠିଆ ମୁଣ୍ଡରେ ଧରି ଛିଡ଼ା ହୋଇଛନ୍ତି । ୪ର୍ଥ ଜଣକ ହାତ ଯୋଡି ଛିଡ଼ା ହୋଇଛି । ଦୁଇ ଜଣ ସ୍ତ୍ରୀ ଅଣ୍ଟୁ ମାଡି ବସିଛନ୍ତି । ଜଣେ ଗୋଟିଏ ପାତ୍ର ଧରିଛି, ଅନ୍ୟ ଜଣକର ପାତ୍ର ( ? ) ଭାଙ୍ଗିଯାଇଛି ।

ଉପର୍ଯ୍ୟୁକ୍ତ ସମସ୍ତ ଦୃଶ୍ୟରୁ ଜଣାଯାଏ ଯେ, କୌଣସି ମହାପୁରୁଷ ଗୋଟିଏ ଗ୍ରାମର ପ୍ରଧାନ ସାହିଦେଇ ଯାଉଛନ୍ତି ଏବଂ ତାହାଙ୍କ ଦର୍ଶନଲାଭ ପାଇଁ ଗ୍ରାମବାସୀ ଉତ୍କଣ୍ଠିତ ହେଉଛନ୍ତି । ଏଠାର ପ୍ରଧାନ ବ୍ୟକ୍ତି ଜୈନ ଧର୍ମର ପ୍ରଧାନ ତୀର୍ଥଙ୍କର ପାର୍ଶ୍ୱନାଥ ବୋଲି କେତେକ ପଣ୍ଡିତ ଅନୁମାନ କରନ୍ତି ।

"ସ୍ୱର୍ଗ ହଂସପୁର"ର ଉପରିସ୍ଥ କାନ୍ଥରେ ମଧ୍ୟ ସେପରି କେତେ ଗୋଟିର ଦୃଶ୍ୟ ଦେଖାଯାଏ ।

୧ମ । ଜଣେ ଗନ୍ଧର୍ବ ବା ବିଦ୍ୟାଧର ଗୋଟିଏ ହାତରେ ପୁଷ୍ପମାଳ ଓ ଅନ୍ୟ ହାତରେ ଭୋଗ ଧରିଛି । ତାହାର ପିନ୍ଧା ଲୁଗା ତଳକୁ ଓହ୍ଲାଇଛି ଏବଂ ଦେହର ଚାଦର ପବନରେ ଉପରକୁ ଉଡି ଯାଉଛି ।

୨ୟ । ହସ୍ତୀ ଦୃଶ୍ୟ—ଗୋଟିଏ ପାହାଡ଼ ଉହାଡ଼ରୁ ଦୁଇଟି ହାତୀ ଆସୁଛନ୍ତି । ପ୍ରଥମ ହାତୀଟି ପଛ ଗୋଡ଼ ମାଡି ବସିଛି । ଏ ଦିଓଟି ହାତୀ ସମ୍ମୁଖରେ ଅନେକ ବ୍ୟକ୍ତି ଦେଖାଯାନ୍ତି; ଗୋଟିଏ ସ୍ତ୍ରୀ ଦକ୍ଷିଣ ହସ୍ତରେ ଖଣ୍ଡିଏ ଦଉଡ଼ା ଧରିଛି, ଜଣେ ପୁରୁଷ ହାତରେ କାଚ୍ଛ (?) ଧରି ଛିଡ଼ା ହୋଇଛି । ତାହା ପାଖରେ ଗୋଟିଏ କୁକୁର ଦେଖାଯାଏ । ଆଉ ଜଣେ ସ୍ତ୍ରୀ ପ୍ରଥମ ସ୍ତ୍ରୀର ବାମ ହାତ ଧରିଛି । ତୃତୀୟ ସ୍ତ୍ରୀଟି ଖଣ୍ଡିଏ ଦଉଡିକୁ ଦୁଇ ହାତରେ ଧରି ଟେକିଛି । ଏ ସମସ୍ତଙ୍କ ପଛରେ ଆଉ ତିନି ଜଣ ସ୍ତ୍ରୀ ଛିଡ଼ା ହୋଇଛନ୍ତି । ତଳେ ଦୁଇ ଜଣ ପୁରୁଷ ଓ ଗୋଟିଏ ଗଛ ମଧ୍ୟ ଦେଖାଯାଏ ।

୩ୟ । ଅପହୃତ ଦୃଶ୍ୟ (?)—ଗୋଟିଏ ଦ୍ୱାର ଫାଟକ ମଧ୍ୟରୁ ଜଣେ ସ୍ତ୍ରୀ ଓ ପୁରୁଷ ଦେଖାଯାନ୍ତି । ପୁରୁଷଟି ସ୍ତ୍ରୀ ଦେହକୁ ଲାଗି ବଡ଼ ଉନ୍ମନା ଦେଖାଯାଏ । ଦୁହେଁ ଦୁହିଙ୍କ



୧୮—ଖିଚିଙ୍ଗ କୀଚକେଶ୍ୱରୀ ମନ୍ଦିର



୧୯—ମୁକ୍ତେଶ୍ବର ମନ୍ଦିରର ଚୈତ୍ୟ ଝରକା

ଧସ୍ତାଧସ୍ତି ହୋଇଛନ୍ତି । ସ୍ତ୍ରୀର କାନ, ବେକ, ଅଣ୍ଟା ଓ ପାଦରେ ଅଳଙ୍କାର ଦେଖାଯାଏ । ଏ ଦୁଇଜଣଙ୍କ ପୃଷ୍ଠଦେଶରେ ଆଉ ଜଣେ ସ୍ତ୍ରୀ ଓ ପୁରୁଷ ଦେଖାଯାନ୍ତି । ଉକ୍ତ ପୁରୁଷ ହାତରେ ଖଣ୍ଡା ଅଛି । ସେ ଦୁହିଁଙ୍କ ପଛରେ ଗୋଟିଏ ଘର ଅଛି । ପରେ ପ୍ରଥମା ସ୍ତ୍ରୀ ଓ ଦ୍ୱିତୀୟ ପୁରୁଷଙ୍କ ମଧ୍ୟରେ କଳି ହେଉଥିବାର ଦେଖାଯାଏ । ଦୁହିଁଙ୍କ ହାତରେ ଖଣ୍ଡା ଓ ତରବାରି, ପରକ୍ଷଣରେ ଜଣେ ପୁରୁଷ ଗୋଟିଏ ସ୍ତ୍ରୀକୁ ବଳପୂର୍ବକ ଉଠାଇ ନେଉଛି । ଉକ୍ତ ସ୍ତ୍ରୀର ବାମ ହାତରେ ଢାଲ ରହିଛି ଏବଂ ଡାହାଣ ହାତର ବର୍ଷୀଆଗ୍ରଠିରେ ବାଛି ଦେଖାଉଛି ।

୪ର୍ଥ । ଶିକାର ଦୃଶ୍ୟ— ଗୋଟିଏ ସୁସଜ୍ଜିତ ଘୋଡ଼ା ନିକଟରେ ଚାରି ଜଣ ସଶସ୍ତ୍ର ବ୍ୟକ୍ତି ଏବଂ ଜଣେ ବାଳକ ଦେଖାଯାନ୍ତି । ବାଳକର ପଛରେ ଜଣେ ରାଜପୁତ୍ର ଶିକାରୀ ବେଶରେ ଧନୁଶର ଧରିଛି । ତାହାର ବେକରେ ମାଳ, କାନରେ କର୍ଣ୍ଣଫୁଲ ଏବଂ ବାମ ଦିଗରେ ଗୋଟିଏ ଢାଲ ଅଛି । ନିକଟବର୍ତ୍ତୀ ଗୋଟିଏ ହରିଣକୁ ଉକ୍ତ ଶିକାରୀ ଲକ୍ଷ କରୁଛି । ହରିଣ ନିଜର ଛୁଆକୁ ଦୁଇଟି ଧରି ଗୋଟିଏ ବୃକ୍ଷଲତା-ଶୋଭିତ ଜଙ୍ଗଲରେ ଚରୁଛି । ଶିକାର ପରେ ଉକ୍ତ ଶିକାରୀ ଅଶୋକ ବୃକ୍ଷ ତଳେ ଥିବା ଜଣେ ସ୍ତ୍ରୀ ସଙ୍ଗେ କଥାବାର୍ତ୍ତା ହେଉଛି, ନିକଟରେ ଗୋଟିଏ ମୃତ ହରିଣ ।

୫ମ । ଭୋଜି ଦୃଶ୍ୟ—ଶିକାର ପରେ ପ୍ରୋକ୍ତ ରାଜପୁତ୍ର ଭୋଜ କରୁଛନ୍ତି । ଜଣେ ସ୍ତ୍ରୀ ବସିଛି, ତାହାର ଅତି ନିକଟରେ ଥିବା ଛବିଟି ନଷ୍ଟ ହୋଇଛି । ଉକ୍ତ ସ୍ତ୍ରୀର ବାଁ ଦିଗରେ ପାଞ୍ଚ ଜଣ ସ୍ତ୍ରୀ ଖାଦ୍ୟସାମଗ୍ରୀ ପରଶୁଛନ୍ତି, ଅନ୍ୟ ତିନି ଜଣ ସ୍ତ୍ରୀ ସମ୍ମୁଖରେ ପ୍ରଥମା ସ୍ତ୍ରୀଙ୍କୁ ନମସ୍କାର କରୁଛନ୍ତି । ଜଣେ ପୁରୁଷ କିଛି ଦୂରରେ ଭୋଜନାର୍ଥେ ବସିଛି ।

୬ଷ୍ଠ । ଏଠା ଦୃଶ୍ୟଗୁଡ଼ିକ ସମ୍ପୂର୍ଣ୍ଣରୂପେ ନଷ୍ଟ ହୋଇଯାଇଛି ।

୭ମ । ଏହା ମଧ୍ୟ ନଷ୍ଟ ହୋଇଛି; ତେବେ ଏଠାରେ ଜଣେ ସ୍ତ୍ରୀ ଓ ପୁରୁଷ ଥିବାର ଦେଖାଯାନ୍ତି ।

୮ମ । ଏହା ମଧ୍ୟ ନଷ୍ଟ ହୋଇଛି, ଏଠାରେ ଗୋଟିଏ ହାତୀ ଓ ଆଉ ଗୋଟିଏ ଜୀବ ଏବଂ ଦୁଇ ଜଣ ବ୍ୟକ୍ତି ଉକ୍ତ ହାତୀର ଦୁଇ ପାର୍ଶ୍ୱରେ ଦେଖାଯାନ୍ତି ।

୯ମ । ପ୍ରଥମୋକ୍ତ ଦୃଶ୍ୟରେ ଯେପରି ଜଣେ ଗନ୍ଧର୍ବ ପୁଷ୍ପମାଳା ସହ ଦଣ୍ଡାୟମାନ, ଏଠାରେ ମଧ୍ୟ ଠିକ୍ ସେହି ଦୃଶ୍ୟ ଦେଖାଯାଏ ।

ଉପର୍ଯ୍ୟୁକ୍ତ "ରାଣୀହଂସପୁର"ର ସମସ୍ତ ଦୃଶ୍ୟ ୨୩ଶ ତୀର୍ଥଙ୍କର ପାର୍ଶ୍ୱନାଥଙ୍କ ଜୀବନୀ ସମ୍ବନ୍ଧୀୟ ଦୃଶ୍ୟ ଅଟେ । ପାର୍ଶ୍ୱନାଥ କୁଶସ୍ଥଳୀ ରାଜପୁତ୍ରୀ ପ୍ରଭାବତୀଙ୍କୁ ଶଙ୍କୁ

ହସ୍ତରୁ ରକ୍ଷା କରି ନଳେ ସେହି କନ୍ୟାକୁ ବିବାହ କରିବା ଓ ପରେ ସନ୍ନ୍ୟାସଜୀବନ ଯାପିବା ଇତ୍ୟାଦି ଏହି କେତେକ ଦୃଶ୍ୟରେ ଖୋଦିତ ହୋଇଅଛି । ଭାରତର ଭିନ୍ନ ପ୍ରଦେଶରେ ଥିବା ଗୁମ୍ଫାଗୁଡ଼ିକରେ ଏତାଧିକ ଐତିହାସିକ ଘଟଣା ନେଇ ଦୃଶ୍ୟମାନ ଖୋଳାଯାଇଛି; କିନ୍ତୁ ସେ ସମସ୍ତ ଅପେକ୍ଷା ଉଦୟଗିରିର ରାଣୀହଂସପୁରରେ ଖୋଳା-ଯାଇଥିବା ପ୍ରତିମୂର୍ତ୍ତି ଓ ଦୃଶ୍ୟଗୁଡ଼ିକ ପ୍ରକୃତତତ୍ତ୍ୱବିତ୍ ପଣ୍ଡିତମାନଙ୍କୁ ଅନେକ ଆଶ୍ଚର୍ଯ୍ୟ ଭାବମର ଉପାଦାନ ଯୋଗାଇ ପାରୁଛି ।

ଗୁମ୍ଫା ନିର୍ମାଣ କାଳ · ଖଣ୍ଡଗିରି ଓ ଉଦୟଗିରିରେ ଖୋଳାଯାଇଥିବାର ଗୁମ୍ଫାଗୁଡ଼ିକ ଠିକ୍ କେଉଁ ସମୟରେ ନିର୍ମିତ ହୋଇଥିଲା—ଏହି ପ୍ରଶ୍ନର ଉତ୍ତର ଦେବା-ପାଇଁ ଆମ୍ଭମାନଙ୍କୁ ପ୍ରଥମେ 'ହାତୀଗୁମ୍ଫା ଶିଳାଲିପି'ର ସମୟ ସ୍ଥିର କରିବାକୁ ହୁଏ । ଏହି ଲିପି କଳିଙ୍ଗାଧିପତି ମହାରାଜାଧିରାଜ ଖାରବେଳଙ୍କଦ୍ୱାରା ଖୋଳାଯାଇ ଥିବାର ପୂର୍ବରୁ ସ୍ଥିର କରାଯାଇଛି । ଖାରବେଳ ଖ୍ରୀଷ୍ଟପୂର୍ବ ୧୯୭ ଅବ୍ଦରେ ଜନ୍ମଗ୍ରହଣ କରି ୧୮୨ ଅବ୍ଦରେ ଯୁବରାଜ ଓ ଖ୍ରୀଷ୍ଟପୂର୍ବ ୧୭୩ ଅବ୍ଦରେ କଳିଙ୍ଗ ରାଜସିଂହାସନରେ ଅଭିଷିକ୍ତ ହୋଇଥିବାର ସ୍ପଷ୍ଟ ଜଣାଯାଏ । ସେ ୧୩ ବର୍ଷକାଳ ଉକ୍ତ ସିଂହାସନ ଅଳଙ୍କୃତ କରି ଭାରତର ଅର୍ଦ୍ଧାଧିକ ରାଜ୍ୟ ଉପରି ଜୟ କଲେ, ସେ ବିଷୟ ପ୍ରୋକ୍ତ ଲିପିରୁ ଜଣାଯାଏ । ଅତଏବ ରାଜ୍ୟାଭିଷେକଠାରୁ ଆଉ ୧୩ ବର୍ଷ ଅର୍ଥାତ୍ ଖ୍ରୀଃ ପୂଃ ୧୬୦ ଅବ୍ଦ ପରେ ଏହି 'ହାତୀଗୁମ୍ଫା ଲିପି' ଖୋଳାଯାଇଥିବା ନିଃସନ୍ଦେହ । ଏତାଧିକ ଐତିହାସିକ ମଧ୍ୟ ହାତୀଗୁମ୍ଫା ଲିପିର ସମୟ ଖ୍ରୀଃ ପୂ ୧୬୦ ଓ ୧୫୦ ଅବ୍ଦ ମଧ୍ୟରେ ସ୍ଥିର କରନ୍ତି ।

ହାତୀଗୁମ୍ଫା ଶିଳାଲିପିରେ ଯେଉଁ ଅକ୍ଷର ବ୍ୟବହାର କରାଯାଇଛି, ତାହା ଖ୍ରୀ: ପୂ: ପ୍ରଥମ ଅବ୍ଦ ଅଗରୁ ଲେଖାଯାଉଥିବାର 'ବ୍ରାହ୍ମୀ' ଅକ୍ଷର ପରି ଦେଖାଯାଏ । ଏପରି ବ୍ରାହ୍ମୀ ଲିପି ଉଦୟଗିରି ଓ ଖଣ୍ଡଗିରିର ନିମ୍ନ ନଅ ଗୋଟି ଗୁମ୍ଫାରେ ମଧ୍ୟ ଦେଖାଯାଏ ।

ସ୍ୱର୍ଗପୁରୀ, ମଞ୍ଚପୁରୀ, ସର୍ପ, ବାଘ, ଯମେଶ୍ୱର, ହରିଦାସ (ଉଦୟଗିରିରେ),
ତିଓଟି ତତ୍ତ୍ୱଗୁମ୍ଫା ଓ ଅନନ୍ତଗୁମ୍ଫା (ଖଣ୍ଡଗିରିରେ)

ଅତଏବ ପ୍ରୋକ୍ତ ନଅ ଗୋଟି ଗୁମ୍ଫା ହାତୀଗୁମ୍ଫାର ସମସାମୟିକ, ଅର୍ଥାତ ଖ୍ରୀ: ପୂ: ୧୬୦ ଠାରୁ ୧୫୦ ଅବ୍ଦ ମଧ୍ୟରେ ଖୋଳାଯାଇଥିବ ।

ଖାରବେଳ ଉଦୟଗିରିରେ ନିଜ ପାଇଁ ଓ ନିଜର ପାଟରାଣୀଙ୍କ ପାଇଁ ଗୋଟିଏ ସ୍ୱର୍ଗୀନଗର ନିର୍ମାଣ କରିବାର ବହୁଦିନ ପୂର୍ବରୁ ଏହି ନିର୍ଜନ ପାହାଡ଼ ଜୈନସନ୍ନ୍ୟାସୀ-

ମାନଙ୍କ ଦ୍ୱାରା ପବିତ୍ର ହୋଇ ଦେଶ ବିଦେଶରେ ଖ୍ୟାତି ଲାଭ କରିଥିବ; ନଚେତ୍ ଖାରବେଳଙ୍କ ପରି ଜଣେ ଦୁର୍ଦ୍ଦାନ୍ତ ପ୍ରତାପୀ ଭାରତବିଖ୍ୟାତ ସମ୍ରାଟ୍ ଏହି ପାହାଡ଼କୁ ଆସି ଏଠାରେ ନିଜର ରାଜତ୍ୱର ୧୩ ବର୍ଷ ଏବଂ ଜୀବନର ଶେଷଭାଗ କଟାଇ ନ ଥିବେ । ତେଣୁ ଅନୁମିତ ହୁଏ, ଏହି ପାହାଡ଼ରେ ଖାରବେଳଙ୍କ ପୂର୍ବରୁ ପ୍ରାୟ ଖ୍ରୀ. ପୂ. ତୃତୀୟ ଅବ୍ଦଠାରୁ ଜୈନସନ୍ନ୍ୟାସୀମାନେ ବାସ କରୁଥିଲେ ଓ ଏଠାରେ ସେମାନଙ୍କର ଗୁମ୍ଫା-ମାନ ସେହି ସମୟରୁ ଖୋଳାଯାଇଥିଲା ।

ଉଦୟଗିରିର 'ହାତୀଗୁମ୍ଫା ଶିଳାଲିପି' ବ୍ୟତୀତ ଅନ୍ୟ କୌଣସି ଗୁମ୍ଫାର ଲିପିରେ କୌଣସି ସାଲ୍ ବା ସମୟ ଦିଆଯାଇ ନାହିଁ । ହାତୀଗୁମ୍ଫା ଲିପିରେ ମଧ୍ୟ ଠିକ୍ ସମୟ ବା ଅଙ୍କ ଥିବାର ଜଣାଯାଏ ନାହିଁ । ଏହି କାରଣରୁ ଏଠାର ଓ ଖଣ୍ଡଗିରିରେ ଥିବା ଗୁମ୍ଫାଗୁଡ଼ିକର ପ୍ରକୃତ ନିର୍ମାଣ କାଳ ସ୍ଥିର କରିବା ସହଜ ନୁହେଁ । ତଥାପି ଏହି ଗୁମ୍ଫାଗୁଡ଼ିକର କାରୁକାର୍ଯ୍ୟ ଓ ଗଠନପ୍ରଣାଳୀ ଦେଖି ପଣ୍ଡିତମାନେ ଏଗୁଡ଼ିକର ନିର୍ମାଣ କାଳ ନିମ୍ନମତେ ସ୍ଥିର କରିଅଛନ୍ତି ।

| | | | | |
|---|---|---|---|---|
| (୧) | ହାତୀଗୁମ୍ଫା | ଖ୍ରୀଷ୍ଟପୂର୍ବ | ୧୫୦ ଅବ୍ଦ | |
| (୨) | ଅନନ୍ତ ଗୁମ୍ଫା | ,, | ୧୫୦-୨୦୦ | ,, |
| (୩) | ରାଣୀହଂସ | ,, | ୨୦୦–୧୦୦ | ,, |
| (୪) | ଜୟ ବିଜୟ | ,, | ୨୦୦–୧୦୦ | ,, |
| (୫) | ଗଣେଶ | ,, | ୧୦୦-୧୫୦ | ,, |
| (୬) | ସ୍ୱର୍ଗଗୁମ୍ଫା | ,, | ୧୦୦-୧୫୦ | ,, |

ଇତ୍ୟାଦି

୨ । **ବୌଦ୍ଧ ଶିଳ୍ପ**—ଉତ୍କଳରେ ଅସଂଖ୍ୟ ବୌଦ୍ଧ ପ୍ରସ୍ତରମୂର୍ତ୍ତି ଦେଖାଯାଏ; କିନ୍ତୁ କୌଣସିଠାରେ ଖାଣ୍ଟି ବୌଦ୍ଧ ଗୁମ୍ଫା, ବିହାର, ସାଂଘାରାମ କିମ୍ବା ଚୈତ୍ୟ ପ୍ରଭୃତି ଆବିଷ୍କୃତ ହୋଇ ନାହିଁ । ଅଶ୍ୱମାର ନଲ୍ଟିଣେଇ ପାହାଡ଼ରେ, ଡେଲଙ୍ଗର ବିଶ୍ୱନାଥ ମୁଣ୍ଡିଆରେ ଏବଂ ଖଣ୍ଡଗିରି ଓ ଉଦୟଗିରିର କେତୋଟି ଗୁମ୍ଫାକୁ ବୌଦ୍ଧ ଗୁମ୍ଫା ବୋଲି କେତେକ ଲେଖକ ଅନୁମାନ କରନ୍ତି । କିନ୍ତୁ ଦକ୍ଷିଣ ଭାରତର ଅଧିକାଂଶ ସ୍ଥାନରେ ଆବିଷ୍କୃତ ବୌଦ୍ଧଗୁମ୍ଫା ନିକଟରେ ପ୍ରାଚୀନ ଇଟାରେ ନିର୍ମିତ ବୌଦ୍ଧ ଚୈତ୍ୟ ଓ ବିହାର ପ୍ରଭୃତି ଅଛି । ସେପରି କୌଣସି ବୌଦ୍ଧକୀର୍ତ୍ତି ଉତ୍କଳରେ ଦେଖାଯାଏ ନାହିଁ । କଟକର ଆସିଆ ପାହାଡ଼ର ଲଳିତଗିରି ପ୍ରଭୃତିରେ ଅଛି କେତେକ ପ୍ରାଚୀନ ଇଟାର

ପଡ଼େ ଦେଖାଯାଏ । ଏଗୁଡ଼ିକ ପ୍ରାଚୀନ ବୌଦ୍ଧ ବିହାର ହୋଇଥିବା ସମ୍ଭବ । ନିକଟରେ ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗ ଏସ୍ଥାନରେ ଖନନକାର୍ଯ୍ୟ କରିବାର ସୂଚନା ମିଳେ । ସେହି ଖନନକାର୍ଯ୍ୟ ଭୂଗର୍ଭରୁ କୌଣସି ବୌଦ୍ଧ ଶିଳ୍ପସ୍ଥାପତ୍ୟ ଆବିଷ୍କୃତ ହେଲେ ସେ ବିଷୟ ପରେ ଅବଗତ ହେବ । ଉତ୍କଳର ଅନ୍ୟ ସ୍ଥାନରେ ଯେଉଁ ବୌଦ୍ଧ ପ୍ରତିମୂର୍ତ୍ତିଗୁଡ଼ିକ ଆବିଷ୍କୃତ ହୋଇଛି, ସେ ବିଷୟ ପରବର୍ତ୍ତୀ ଅଧ୍ୟାୟରେ ବିସ୍ତୃତରୂପେ ବର୍ଣ୍ଣିତ ହେବ ।



## ଉତ୍କଳରେ ବିଭିନ୍ନ ଧର୍ମର ପ୍ରତିମୂର୍ତ୍ତି

ଧର୍ମ ଓ ଶିଳ୍ପ—ଉତ୍କଳର ବିଭିନ୍ନ ସ୍ଥାନରୁ ଯେଉଁ ଶତ ଶତ ଦେବ-ଦେବୀ ମୂର୍ତ୍ତି ଆବିଷ୍କୃତ ହୋଇଛି, ସେ ସମସ୍ତ କୌଣସି ଗୋଟିଏ ଗୋଟିଏ ଧର୍ମକୁ ଲକ୍ଷ୍ୟ କରି ବା ଧର୍ମର ଲକ୍ଷଣ କିମ୍ବା ଚିହ୍ନ ନେଇ ନିର୍ମିତ ହୋଇଥିବାର ଦେଖାଯାଏ । ପ୍ରତ୍ୟେକ ଧର୍ମାବଲମ୍ବୀ ନିଜର ଧର୍ମଗତ ଚିହ୍ନ ରଖି ଏହି ପ୍ରତିମୂର୍ତ୍ତିଗୁଡ଼ିକୁ ନିର୍ମାଣ କରି-ଥିଲେ । ପ୍ରାଚୀନ ଯୁଗରେ ଧର୍ମକୁ ଲୋକମାନଙ୍କୁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀ ବା ଗୋଷ୍ଠୀରେ ବାନ୍ଧି ରଖି ପାରୁଥିଲା । ପ୍ରତ୍ୟେକ ଗୋଷ୍ଠୀର ଲୋକଙ୍କୁ କେତେକ ନିର୍ଦ୍ଦିଷ୍ଟ ନିୟମ ପାଳନ କରିବାକୁ ହେଉଥିଲା । ଏହି ନିୟମାନୁସାରେ ସେମାନେ ନିଜର ଇଷ୍ଟ-ଦେବ ପ୍ରତିମୂର୍ତ୍ତିଗୁଡ଼ିକୁ ନିର୍ମାଣ କରୁଥିଲେ । ଆଜିକାଲି ମଧ୍ୟ ସେହି ଧର୍ମଗତ ସାଙ୍କେତିକ ଚିହ୍ନଗୁଡ଼ିକ ରହିଛି; କିନ୍ତୁ ଦେଶରେ ପାଶ୍ଚାତ୍ୟ ସଭ୍ୟତା ଯେତେ ଉଚ୍ଚ-ଭାବରେ ଗତି କରୁଛି, ଲୋକମାନଙ୍କ ହୃଦୟରୁ ପ୍ରାଚୀନ ଧର୍ମଭାବ ସେତେ ଶିଥିଳ ହୋଇ ଯାଉଥିବାର ଦେଖାଯାଏ ।

ବର୍ତ୍ତମାନ ଆମ ଦେଶରେ ଆବିଷ୍କୃତ ହୋଇଥିବା ପ୍ରତିମୂର୍ତ୍ତିଗୁଡ଼ିକୁ ନିମ୍ନ କେତେକ ଶ୍ରେଣୀରେ [ଧର୍ମବିଭାଗ] ବିଭକ୍ତ କରାଯାଇ ପାରେ—

| ଧର୍ମ | ପୂଜିତ ପ୍ରତିମୂର୍ତ୍ତି | ଅତି ପ୍ରାଚୀନ ମୂର୍ତ୍ତିର ପ୍ରାପ୍ତିସ୍ଥାନ | ଆନୁମାନିକ ସମୟ |
| --- | --- | --- | --- |
| ୧ମ । ସୂର୍ଯ୍ୟଧର୍ମ | ସୂର୍ଯ୍ୟଦେବ | ଅଯୋଧ୍ୟା ( ନୀଳଗିରି ) | ଖ୍ରୀଷ୍ଟପୂର୍ବ ପ୍ରାୟ ୧୦୦୦ ବର୍ଷ |
| ସୂର୍ଯ୍ୟଗଣ | ଅଗ୍ନି | ଅଯୋଧ୍ୟା | |
| | ଯମ | ବାଲେଶ୍ୱର | |

| ଧର୍ମ | ପୂଜିତପ୍ରଭମୂର୍ତ୍ତି | ଅତିପ୍ରାଚୀନମୂର୍ତ୍ତିର୍‌ପ୍ରାପ୍ତିସ୍ଥାନ | ଅନୁମାନିକ ସମୟ |
|---|---|---|---|
| | ସ୍କନ୍ଦ | ଧଡ଼ୁଅ ଗ୍ରାମ | |
| | ସୁବ୍ରମଣ୍ୟ | ମଣିନାଗେଶ୍ୱର | |
| ୨ୟ । ନାଗଧର୍ମ— | ନାଗମାଣ | ଦେଶାଗ୍ନ ଗଡ଼ | ଖ୍ରୀ. ପୂ. ୮୦୦ ବର୍ଷ |
| ନାଗଗଣ | ସ୍କନ୍ଦଷଷ୍ଠୀ<br>ମାନସା | ଛୁଣ୍ଡର (ବାଲେଶ୍ୱର) | |
| ୩ୟ । ଜୈନଧର୍ମ— | ପାର୍ଶ୍ୱନାଥ | କୋଶାଲ (ବାଲେଶ୍ୱର) | ଖ୍ରୀ.ପୂ. ୮୦୦ ବର୍ଷ |
| | ନବଗ୍ରହାର୍ଚ୍ଚିତ ପାର୍ଶ୍ୱନାଥ ମୃଣ୍ଡାଲ | | |
| | ମହାବୀର | ଖିଣୀବନ୍ଧ (ମୟୂରଭଞ୍ଜ) | ,, ୪୦୦ ,, |
| ୪ର୍ଥ । ଶୈବ ଧର୍ମ— | ହରଗୌରୀ<br>(ଶିବଗୌରୀ)<br>ଚତୁର୍ଭୁଜ ଶିବ<br>ନଟେଶ୍ୱରକ ଶିବ | ଦେଶାଗ୍ନଗଡ଼ ( ,, ) | ,, ୬୦୦ ,, |
| ଶୈବଗଣ— | କାର୍ତ୍ତିକେୟ<br>ଗଣେଶ<br>କ୍ଷେତ୍ରପାଳ | ଧଡ଼ୁଅ ଗ୍ରାମ | |
| ୫ମ । ବୌଦ୍ଧଧର୍ମ— | ଗୋତମ ଓ ଶାକ୍ୟସିଂହ—ମାଣଣ୍ଡି | (ମୟୂରଭଞ୍ଜ) | ଖ୍ରୀ.ପୂ. ୪୦୦ |
| | ଯୋଗୀ ବୁଦ୍ଧ | କୋସବା | |
| | ଧ୍ୟାନୀ ବୁଦ୍ଧ | ଅଯୋଧ୍ୟା | |
| ବୌଦ୍ଧଗଣ— | ତାରା | ଖିଣୀବନ୍ଧ | |
| | ବଜ୍ରତାରା | ଅଯୋଧ୍ୟା | |
| ୬ଷ୍ଠ । ବୈଷ୍ଣବଧର୍ମ— | ବାସୁଦେବ<br>ଲକ୍ଷ୍ମୀନାରାୟଣ | } ବନସାହି (ନୀଳଗିରି) | ୪୧୫ ଖ୍ରୀଷ୍ଟାବ୍ଦ |
| ୭ମ । ଶାକ୍ତଧର୍ମ— | ସପ୍ତମାତୃକା | ସୋରେ (ବାଲେଶ୍ୱର) | ୪୧୫ ଖ୍ରୀଷ୍ଟାବ୍ଦ |
| ଚଣ୍ଡିଗଣ— | ଚାମୁଣ୍ଡି | ଦେଉଳି | |
| | କମଳା | ମଣିନାଗେଶ୍ୱର | |
| | ମହିଷାସୁରମର୍ଦ୍ଦିନୀ | ହରସୁର | ଇତ୍ୟାଦି |

ପ୍ରୋକ୍ତ ତାଲିକାରୁ ସ୍ପଷ୍ଟ ଜଣାଯାଏ ଯେ, ଉତ୍କଳରେ ଖ୍ରୀଷ୍ଟପୂର୍ବ ପ୍ରାୟ ୧୦୦୦ ବର୍ଷ ତଳେ ମୂର୍ତ୍ତି ପୂଜା ଚଳୁଥିଲା । ପ୍ରଥମ ଯୁଗୀୟମୂର୍ତ୍ତି ମୟୂରଭଞ୍ଜର 'ଝାଡ଼ଖଣ୍ଡ'

ଜଙ୍ଗଲ ପ୍ରଦେଶରେ ଶାକଦ୍ୱୀପ (ମଧ୍ୟଏସିଆ)ରୁ ଆସିଥିବା ସୌର ବ୍ରାହ୍ମଣ ( The Magas or Scythic Brahmans ) ମାନଙ୍କଦ୍ୱାରା ସ୍ଥାପିତ ହୋଇଥିଲା । ଏହି ସୌର ବ୍ରାହ୍ମଣମାନେ ହିଁ ପ୍ରଥମେ ସୂର୍ଯ୍ୟ-ପୂଜା ଭାରତରେ ପ୍ରତିଷ୍ଠା କରିଥିଲେ । ସେମାନେ ସୂର୍ଯ୍ୟମୂର୍ତ୍ତିର ପ୍ରଥମ ଉପାସକ ଥିଲେ ।

ଝାଡ଼ଖଣ୍ଡରେ ପ୍ରତିଷ୍ଠିତ ହେବା ପରେ ସୂର୍ଯ୍ୟ ଧର୍ମ କଟକବର୍ତ୍ତୀ ନୀଳଗିରି ଓ ବାଲେଶ୍ୱର ଜିଲ୍ଲାର ବେଳେଳ ଗ୍ରାମରେ ଏବଂ ପରିଶେଷରେ ପୁରୀ ଜିଲ୍ଲାର କୋଣାର୍କ ଯାଏ ବ୍ୟାପିଥିଲା । କାଳକ୍ରମେ ରାଜପୋଷକତା ପାଇଁ ଏହି ଧର୍ମର ପ୍ରତିମୂର୍ତ୍ତି ଓ ଦେବମନ୍ଦିର ସ୍ଥାନେ ସ୍ଥାନେ ସ୍ଥାପିତ ହେଲା । ସମଗ୍ର ଉତ୍କଳରେ କୋଣାର୍କର ସୂର୍ଯ୍ୟ-ମନ୍ଦିର ଅଦ୍ୱିତୀୟ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ !

ପ୍ରାଚୀନ ଓ ଆଧୁନିକ ପ୍ରତିମୂର୍ତ୍ତିର ପ୍ରଭେଦ—ଉପରେ ଯେଉଁ ପ୍ରତିମୂର୍ତ୍ତି-ଗୁଡ଼ିକର ନାମ ଦିଆଗଲା, ସେପରି ପ୍ରତିମୂର୍ତ୍ତି ଅଳକାଳି ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରେ ଦେଖାଯାଏ; କିନ୍ତୁ ପ୍ରାଚୀନ ଓ ଆଧୁନିକ ପ୍ରତିମୂର୍ତ୍ତିଗୁଡ଼ିକୁ ଦେଖିଲେ ନିମ୍ନ କେତୋଟି ପ୍ରଭେଦ ଥିବାର ଦେଖାଯାଏ ।

୧ । ଛୋଟ ହେଉ କିମ୍ବା ବଡ଼ ହେଉ, ପ୍ରତ୍ୟେକ ପ୍ରତିମୂର୍ତ୍ତି ପ୍ରାଚୀନ ଶିଳ୍ପ-ଶାସ୍ତ୍ରର ନିୟମ ଅନୁସାରେ ନିର୍ମିତ ହୋଇଥିବାର ଦେଖାଯାଏ; କିନ୍ତୁ ପ୍ରାଚୀନ ମୂର୍ତ୍ତି-ଗୁଡ଼ିକରେ ଆଧୁନିକ ମୂର୍ତ୍ତି ପରି କାରୁକାର୍ଯ୍ୟ ଦେଖାଯାଏ ନାହିଁ ।

୨ । ପ୍ରାଚୀନ ମୂର୍ତ୍ତିଗୁଡ଼ିକର ଗଠନପ୍ରଣାଳୀ ଆଧୁନିକ ମୂର୍ତ୍ତି ପରି ସୂକ୍ଷ୍ମ ଦେଖାଯାଏ ନାହିଁ ।

୩ । ଆଧୁନିକ ମୂର୍ତ୍ତିଗୁଡ଼ିକର ଉପରିଭାଗରେ ଯେପରି 'ପ୍ରଭା' ଦେଖାଯାଏ, ସେପରି ପ୍ରଭା ପ୍ରାଚୀନ ମୂର୍ତ୍ତିଗୁଡ଼ିକରେ ନାହିଁ । ପ୍ରତ୍ୟେକ ପ୍ରାଚୀନ ମୂର୍ତ୍ତି ଖଣ୍ଡା ପଥରରେ ପ୍ରସ୍ତର ଦେହରେ ଖୋଳାଯାଇଥିବାର ଦେଖାଯାଏ ।

୪ । ପ୍ରାଚୀନ ମୂର୍ତ୍ତିଗୁଡ଼ିକର ମୁଣ୍ଡରେ ଯେଉଁ 'କିରୀଟ' ଥାଏ, ସେ ଗୁଡ଼ିକ ପ୍ରାଚୀନ ଶାକଦ୍ୱୀପବାସୀଙ୍କ ପଗଡ଼ି(Scythian Cap) ଭଳି ଦେଖାଯାଏ, କିନ୍ତୁ ଆଧୁନିକ ପ୍ରତିମୂର୍ତ୍ତିର କିରୀଟଗୁଡ଼ିକ ଅତି ସୂକ୍ଷ୍ମ ଓ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ଦେଖାଯାଏ ।

୫ । ଦେଶବାସୀଙ୍କ ମଧ୍ୟରେ ହିନ୍ଦୁ ହିନ୍ଦୁ ଧର୍ମଭାବ ଯେତେ ଦୂର ବଢ଼ିଯାଉ ଥିଲା, ଆଧୁନିକ ଯୁଗର ପ୍ରତିମୂର୍ତ୍ତିଗୁଡ଼ିକ ସେତେଦୂର ସୁନ୍ଦର ଓ ସୂକ୍ଷ୍ମ କାରୁକାର୍ଯ୍ୟ ଦ୍ୱାରା ମଣ୍ଡିତ ହୋଇ ନିର୍ମିତ ହୋଇଥିଲା । ଏହି କାରୁକାର୍ଯ୍ୟ ଦାକ୍ଷିଣାତ୍ୟ ଶିଳ୍ପଶାସ୍ତ୍ରର ଅନୁକରଣରୁ ହୋଇଥିବ ବୋଲି ପଣ୍ଡିତ ସ୍ଥିର କରନ୍ତି ।

ପ୍ରତିମୂର୍ତ୍ତି ଗୁଡ଼ିକରେ ଧର୍ମଗତ ସାଂକେତିକ ଚିହ୍ନ—ପୂର୍ବେ କୁହାଯାଇ-ଥିବା ପ୍ରତ୍ୟେକ ଧର୍ମର ପ୍ରତିମୂର୍ତ୍ତିଗୁଡ଼ିକୁ ସେମାନଙ୍କ ଧର୍ମଗତ ସାଙ୍କେତିକ ଚିହ୍ନଦ୍ୱାରା ପୃଥକ୍ କରାଯାଇ ପାରେ । ନିମ୍ନରେ କେତୋଟି ପ୍ରସିଦ୍ଧ ମୂର୍ତ୍ତିର ସଂକ୍ଷିପ୍ତ ପରିଚୟ ଦିଆଯିବ ।

୧ । ସୂର୍ଯ୍ୟମୂର୍ତ୍ତି—ସୂର୍ଯ୍ୟଦେବ ସପ୍ତାଶ୍ୱଯୁକ୍ତ ଏବଂ ଏକଚକ୍ରବିଶିଷ୍ଟ "ମକର-ଧ୍ୱଜ" ନାମକ ରଥରେ ଛିଡ଼ା ହୋଇଥିବାର ଦେଖାଯାନ୍ତି । ଖିଚିଙ୍ଗରୁ ଆବିଷ୍କୃତ ଗୋଟିଏ ସୂର୍ଯ୍ୟମୂର୍ତ୍ତି ଓଲଟା ପଦ୍ମାସନ ଉପରେ ଚକାମାଣ୍ଡି ବସିଥିବାର ଦେଖାଯାଏ । ସୂର୍ଯ୍ୟଙ୍କ ଦୁଇ ହାତରେ ଦୁଇ ଗୋଟି ପ୍ରସ୍ଫୁଟିତ ପଦ୍ମ ଫୁଲ ଅଛି । କେତୋଟି ମୂର୍ତ୍ତିର ଚାରି ଗୋଟି ହାତ ଥାଏ । ମୁଣ୍ଡରେ ରତ୍ନଖଚିତ କିରୀଟ ଏବଂ ବେକରେ ରତ୍ନହାର । ବାମପାର୍ଶ୍ୱରେ ସଂଜ୍ଞା ଏବଂ ଡାହାଣପାର୍ଶ୍ୱରେ ନିକ୍ଷୁଭା ମୂର୍ତ୍ତି ଦଣ୍ଡାୟମାନ । ସୂର୍ଯ୍ୟଙ୍କ ସାରଥି ଘୋଡ଼ାର ଲଗାମ ଧରି ମଧ୍ୟ ଘୋଡ଼ା ଉପରେ ବସିଥାଏ । ପ୍ରାଚୀନ ସୂର୍ଯ୍ୟମୂର୍ତ୍ତିଗୁଡ଼ିକରେ ପ୍ରଭା ନାହିଁ । ଆଧୁନିକ ମୂର୍ତ୍ତିଗୁଡ଼ିକରେ ପ୍ରଭା ଓ କୀର୍ତ୍ତିମୁଖ ଏବଂ ଏହାଛଡ଼ା ପାର୍ଶ୍ୱ ସହଚର ପରି ଦେଖାଯାନ୍ତି । ପ୍ରତ୍ୟେକ ସୂର୍ଯ୍ୟମନ୍ଦିରରେ ଦଣ୍ଡ (ଯମ) ଓ ପିଙ୍ଗଳ (ଅଗ୍ନି) ହାତରେ ଖଣ୍ଡା ଧରି ଦ୍ୱାରପାଳରୂପେ ରହନ୍ତି । (୨୬ଶ ଚିତ୍ର)

୨ । ଅଗ୍ନି—ମେଷବାହନ (ନୀଳଗିରି ରାଜ୍ୟରୁ ଆବିଷ୍କୃତ ଅଗ୍ନିମୂର୍ତ୍ତିରେ ଏହି ମେଷ ବାମ ଦିଗରେ ମୁଣ୍ଡ ନୁଆଇଁ ଛିଡ଼ା ହୋଇଛି) ମୁଣ୍ଡରେ ଜଟା ଓ ଡାହାଣ ହାତରେ ପତାକା । ଆଖିଗୁଡ଼ିକ ଲାଲ୍ ଏବଂ ସର୍ବାଙ୍ଗ ଧୂସର ବର୍ଣ୍ଣ । ଦୁଇ ପାର୍ଶ୍ୱରେ ଦୁଇ ଜଣ ଖଣ୍ଡାଧାରୀ ଭୃତ୍ୟ ଦେଖାଯାନ୍ତି ।

୩ । ଯମ—ବୃଷଭବାହନ— ଡାହାଣ ହାତରେ ପାଶ ଓ ବାମରେ ଗଦା । ଦୁଇ ପାର୍ଶ୍ୱରେ ଯଥାକ୍ରମେ ଧର୍ମ ଓ ଅଧର୍ମରୂପୀ ମାର ଓ ଧାର ଦଣ୍ଡାୟମାନ ।

୪ । ସ୍କନ୍ଦ (କାର୍ତ୍ତିକେୟ)—ମୟୂର ବାହନ । ଡାହାଣ ହାତରେ ଶକ୍ତି ବା ତ୍ରିଶୂଳ ଦେଖାଯାଏ ।

୫ । ଗଣେଶ—ମୂଷିକବାହନ । ଚତୁର୍ବାହୁ (କେତୋଟି ମୂର୍ତ୍ତିର ୮ ଓ ୧୦ ଭୁଜ) ହାତରେ ଶଙ୍ଖ, ଅଙ୍କୁଶ, ପାଶ ଓ ଲଡ଼ୁ ଦେଖାଯାଏ । ଦେହରେ ନାଗ ସାପର ପଇତା, ଏକଦନ୍ତ ଓ ଶୁଣ୍ଢାକୃତ ମୁଣ୍ଡ ।

୬ ବ୍ରହ୍ମା—ହଂସବାହନ । କେତେକ ମୂର୍ତ୍ତି ପଦ୍ମାସନ, ଚତୁର୍ମୁଖ ଏବଂ ଚତୁର୍ବାହୁ । ବାମ ଦୁଇ ହାତରେ କମଣ୍ଡଳୁ ଓ ବେଦ ଏବଂ ଦୁଇ ଡାହାଣ ହାତରେ ଚୁଚା ଓ ଜପମାଳା । ଡାହାଣ ପାର୍ଶ୍ୱରେ ସରସ୍ୱତୀ ଓ ବାମ ପାର୍ଶ୍ୱରେ ସାବିତ୍ରୀ ଦେଖା-ଯାନ୍ତି ।

୭ । ହରଗୌରୀ—ଶିବଙ୍କର ବର୍ଣ୍ଣ ନୀଳ ( ସେଥିପାଇଁ ତାହାଙ୍କୁ 'ନୀଳକଣ୍ଠ' କୁହାଯାଏ ) ତ୍ରିନେତ୍ର, ଚନ୍ଦ୍ରଚୂଡ଼, ହସ ହସ ମୁହଁ, ଚତୁର୍ବାହୁ—ହାତରେ ଯଥାକ୍ରମେ ତ୍ରିଶୂଳ, କପାଳ, ଅଭୟଦାନ ଓ ବାମଜାନୁ ସ୍ଥିତ ପାର୍ବତୀଙ୍କୁ ଧରିଥିବାର ଦେଖା-ଯାଏ । ବୃଷଭବାହନ । ଗୌରୀଙ୍କ ହାତରେ ନୀଳପଦ୍ମ ଥାଏ ଏବଂ ସେ ସର୍ବାଙ୍ଗ ସ୍ୱର୍ଣ୍ଣାଳଙ୍କାରଭୂଷିତା ।

୮ । ଶିବଙ୍କର ଅନ୍ୟ ରୂପ—(କ) ଚତୁର୍ବାହୁ ଶିବ—ଡାହାଣ ଉପର ହାତରେ ଡମ୍ବରୁ, ତଳ ହାତରେ ଗଦା; ବାମ ଉପର ହାତରେ ଅକ୍ଷମାଳା ( ରୁଦ୍ରାକ୍ଷ ) ଏବଂ ତଳ ହାତରେ ତ୍ରିଶୂଳ । ଦୁଇ ପାର୍ଶ୍ୱରେ ଦୁଇଟି ପାର୍ଶ୍ୱଚର । ପାଦ ପାଖରେ ଶକୁନ ( ଗୃଧ୍ର ) ଓ ବୃଷଭ । ( ୨୬ଶ ଚିତ୍ର )

(ଖ) ନଟରାଜ—ଶିବଙ୍କ ତାଣ୍ଡବନୃତ୍ୟର ପ୍ରତିମୂର୍ତ୍ତିକୁ 'ନଟେଶ୍ୱର ଶିବ' କୁହା-ଯାଏ । ଏ ଶ୍ରେଣୀୟ ମୂର୍ତ୍ତିର ଉପରିଭାଗରେ ଥିବା ତ୍ରିପ୍ରଭା ବା ପଞ୍ଚପ୍ରଭାରୁ ସ୍ପଷ୍ଟ ଜଣାଯାଏ ଯେ, ଏଗୁଡ଼ିକ ଆଧୁନିକ ଯୁଗର । ପ୍ରତ୍ୟେକ ମୂର୍ତ୍ତି ଓଲଟା ପଦ୍ମର ସିଂହାସନ ଉପରେ ଛିଡ଼ା ହୋଇ ନୃତ୍ୟ କରନ୍ତି । ଷଡ଼ଭୁଜ । ଉପର ଦୁଇ ହାତରେ ଦୁଇଟି ନାଗସାପ ଏବଂ ଅନ୍ୟ ହାତଗୁଡ଼ିକରେ ଯଥାକ୍ରମେ ଜପମାଳା, ଡମ୍ବରୁ, ତ୍ରିଶୂଳ ପ୍ରଭୃତି ଥାଏ । ତାଣ୍ଡବ ନୃତ୍ୟ ସତ୍ତ୍ୱେ ଏ ଶ୍ରେଣୀୟ ମୂର୍ତ୍ତିର ଆଖିର ଦୃଷ୍ଟି ନାସିକାଗ୍ରରେ ଥିବାର ଦେଖା-ଯାଏ । ତାହାର ଏହି ମୂର୍ତ୍ତି ଧ୍ୟାନମଗ୍ନ ଭାବରେ ନୃତ୍ୟ କରୁଥିବାର କୁହାଯାଏ । ଦୁଇ ପାର୍ଶ୍ୱରେ ଅସଂଖ୍ୟ ପାର୍ଶ୍ୱଚର ବୀର କାହାଳି, ମୃଦଙ୍ଗ ଓ ପଖଜ ପ୍ରଭୃତି ବଜାଇ ନୃତ୍ୟ କରୁଥିବାର ଦେଖାଯାନ୍ତି । ଉତ୍କଳରେ ମିଳିଥିବା ନଟେଶ୍ୱର ମୂର୍ତ୍ତି ଦକ୍ଷିଣ ଭାରତୀୟ ମୂର୍ତ୍ତିଠାରୁ ଅତି କମନୀୟ ଓ ସୁନ୍ଦର ଦେଖାଯାଏ । (୨୮ଶ ଚିତ୍ର)

(ଗ) ଲିଙ୍ଗରୂପ—ଉତ୍କଳର ପ୍ରତ୍ୟେକ ସ୍ଥରପଲ୍ଲୀରେ ଛୋଟ ବଡ଼ ଶିବଲିଙ୍ଗ ଦେଖାଯାଏ । ଏଗୁଡ଼ିକରେ କୌଣସି ଶିଳ୍ପକାର୍ଯ୍ୟ ପ୍ରାୟ ଦେଖାଯାଏ ନାହିଁ ।

(ଘ) ଅଜୈକପାଦ ଶିବ ବା ଏକପାଦ ଭୈରବ—ଶିବଙ୍କର ଚତୁର୍ବାହୁ, ମୂର୍ତ୍ତି ଗୋଟିଏ ମାତ୍ର ଗୋଡ଼ରେ ଛିଡ଼ା ହୋଇଥିବାର ଦେଖାଯାଏ । ଏ ଶ୍ରେଣୀର ମୂର୍ତ୍ତି ଗୋଟିଏ ବୈଶାଖିଗଡ଼ରୁ ଆବିଷ୍କୃତ ହୋଇଥିଲା ଏବଂ ଓଡ଼ିଶାର ଆଉ ଗୋଟିଏ ମୂର୍ତ୍ତି ବର୍ତ୍ତମାନ କଲିକତାର ଯାଦୁଘରେ ରଖାଯାଇଛି ।

୯ । କ୍ଷେତ୍ରପାଳ—ପ୍ରତ୍ୟେକ ଶିବମନ୍ଦିରର ଦ୍ୱାରପାଳରୂପେ ଏକ ବିଶିଷ୍ଟ ଭୈରବ ମୂର୍ତ୍ତି ଥାଏ । ଏହାଙ୍କୁ 'କ୍ଷେତ୍ରପାଳ' କହନ୍ତି । ଏହି ମୂର୍ତ୍ତିର ମୁଣ୍ଡରେ ଅନେକ-ଗୁଡ଼ିଏ ସାପ ଏକତ୍ର ମିଶିଥାଏ । ଆଖିଗୁଡ଼ିକ ଅତି ବଡ଼ ଗୋଲାକୃତି; ଭୁରୁର ଦାନ୍ତ-ଗୁଡ଼ିକ ବାହାରକୁ ବାହାରିଥାଏ । ଏଣୁ ମୂର୍ତ୍ତିର ରୂପ ଅତି ଭୟଙ୍କର ଦେଖାଯାଏ । ଦେହରେ ଗୋଟିଏ ସାପର ପଇତା ଏବଂ ବେକରେ ଅତି ଲମ୍ବା ମୁଣ୍ଡମାଳ । ଚତୁର୍ବାହୁ, ଡାହାଣ ଉପର ହାତରେ ରୁଦ୍ରାକ୍ଷମାଳା, ତଳ ହାତରେ ଅଭୟ ଦାନ, ବାମ ଉପର ହାତରେ ଭିକ୍ଷାପାତ୍ର, ବାମ ତଳ ହାତରେ ଗଦା ଥାଏ ।

୧୦ । ନାଗମାତା—(କ) ଏକଶ୍ରେଣୀ ମୂର୍ତ୍ତି ଆଧୁନିକ ନାଗକନ୍ୟା ପରି ଦେଖାଯାଏ । ତଳଭାଗ ସାପ ପରି ଏବଂ ଉପରେ ମନୁଷ୍ୟାକୃତି ।

(ଖ) ବୈଶାଖି ଗଡ଼ରୁ ଆବିଷ୍କୃତ ମୂର୍ତ୍ତିର ମୁଣ୍ଡ ଉପରେ 'ଶାକଦ୍ୱୀପ କିରୀଟ' ପରି କିରୀଟ ଏବଂ ତହିଁ ଉପରେ ସପ୍ତଫେଣା ନାଗର ସାତୋଟି ମୁଣ୍ଡ ଦେଖାଯାଏ । ମୂର୍ତ୍ତିର ଗୋଡ଼ ହସ୍ତ ମଧ୍ୟରେ ଏକପାତ୍ର ଏବଂ ଆଖିଗୁଡ଼ିକ ମୁଦ୍ରିତ ଥାଏ । ଦେହର ନିମ୍ନ ଭାଗ ଆଦୌ ଦେଖାଯାଏ ନାହିଁ ।

ଜୈନ୍ୟ ପାର୍ଶ୍ୱନାଥ—ମୟୂରଭଞ୍ଜ ଓ ନୀଳଗିରି ରାଜ୍ୟରୁ ଆବିଷ୍କୃତ ପାର୍ଶ୍ୱ-ନାଥ ମୂର୍ତ୍ତିଗୁଡ଼ିକ ଉତ୍କଳର ଅତି ପ୍ରାଚୀନ ଜୈନମୂର୍ତ୍ତି ଅଟେ । ପ୍ରଥମୋକ୍ତ ରାଜ୍ୟର କୋସାଳୀ ଗ୍ରାମରୁ ଆବିଷ୍କୃତ ମୂର୍ତ୍ତିର ମୁଣ୍ଡରେ ଯେଉଁ କିରୀଟ ଅଛି, ତାହା ଶକଦ୍ୱୀପ-ବାସୀଙ୍କ କିରୀଟ ପରି ଦେଖାଯାଏ । ଏଣୁ ଏହା ଉତ୍କଳର ପ୍ରାଚୀନତମ ଜୈନମୂର୍ତ୍ତି ଅଟେ । ପରବର୍ତ୍ତୀ ଯୁଗରେ ଅନେକ ଧାତୁନିର୍ମିତ ଜୈନମୂର୍ତ୍ତି ଭୂଗର୍ଭରୁ ଆବିଷ୍କୃତ ହୋଇଛି; କିନ୍ତୁ ଖଣ୍ଡଗିରିର ଗୋଟିଏ ଗୁମ୍ଫା ଦେହରେ ଥିବା ତୀର୍ଥଙ୍କର ମୂର୍ତ୍ତିଗୁଡ଼ିକୁ ବାଦ୍ ଦେଲେ, ଉତ୍କଳର ଅନ୍ୟ କୌଣସିଠାରେ ପ୍ରଥମ ପ୍ରସ୍ତର ଜୈନମୂର୍ତ୍ତି ହୁଏତ ଦେଖାଯାଏ । ଉତ୍କଳର ଜୈନମାନେ ଯେଉଁସବୁ ମୂର୍ତ୍ତି ଘରେ ରଖି ପୂଜା କରନ୍ତି,

ଯେପରୁ ଉକ୍ତ ବାହାରୁ ଯଣାଯାଇଥାଏ । ତାହାଙ୍କର ମୂର୍ତ୍ତିଗୁଡ଼ିକୁ ଚହ୍ନିବା ପାଇଁ ଯେଉଁ ଯେଉଁ ଲକ୍ଷଣ ଜାଣିବା ଦରକାର, ସେଗୁଡ଼ିକ ପୂର୍ବେ ବର୍ଣ୍ଣିତ ହୋଇ ଅଛି ।
(୭ମ ଶତାବ୍ଦୀ)

୧୨ । ବୁଦ୍ଧମୂର୍ତ୍ତି---ଉତ୍କଳରେ ବୁଦ୍ଧଦେବଙ୍କର ଅନେକ ପ୍ରକାର ପ୍ରସ୍ତରମୂର୍ତ୍ତି ଆବିଷ୍କୃତ ହୋଇଛି । ତନ୍ମଧ୍ୟରୁ ନିମ୍ନଲିଖିତ ଅତି ପ୍ରାଚୀନ ମୂର୍ତ୍ତିଗୁଡ଼ିକ ମୟୂରଭଞ୍ଜ ଓ ନୀଳଗିରି ପ୍ରଭୃତିରୁ ମିଳିଥିଲା---

(କ) ଗୌତମୀ ଓ ଶାକ୍ୟସିଂହ---ବୁଦ୍ଧଙ୍କର ବାଲ୍ୟମୂର୍ତ୍ତି । ମହାପ୍ରଜାବତୀ ଗୌତମୀଙ୍କ କୋଳରେ ବାଳକ ଶାକ୍ୟସିଂହ ବସିଥିବାର ଦେଖାଯାଏ । ଏ ଦୁଇ ମୂର୍ତ୍ତିର ମୁଣ୍ଡ ଉପରେ 'କମଳବୃକ୍ଷ' ନାମକ ବୃକ୍ଷର ଡାଳଗୁଡ଼ିକ ଦେଖାଯାଏ । ମାଣିକ୍ପୁର ଓ ଅଯୋଧ୍ୟାରୁ ଆବିଷ୍କୃତ ମୂର୍ତ୍ତି ମଧ୍ୟରୁ ପ୍ରଥମ ମୂର୍ତ୍ତିଟି ଅତି ପ୍ରାଚୀନ ଓ ଦ୍ୱିତୀୟଟି କାରୁକାର୍ଯ୍ୟରେ ଅତି ସୁନ୍ଦର ଦେଖାଯାଏ । ପ୍ରତ୍ୟେକ ମୂର୍ତ୍ତିର ତଳେ ଗୋଟିଏ ସିଂହ ଓ ଗୋଟିଏ ସାପ ଦେଖାଯାଏ ।

(ଖ) ଯୋଗୀ ବୁଦ୍ଧ---ବୋଧିଦ୍ରୁମ ବୁଦ୍ଧମୂର୍ତ୍ତି ପଦ୍ମାସନରେ ବସି ମାତ୍ର ଦୁଇ ହାତ ଯୋଡ଼ି ଧ୍ୟାନ କରୁଥିବାର ଦେଖାଯାଏ । ଦୁଇ ପାଖରେ ଚାରି ଜଣ ଅନୁଚର ମଧ୍ୟ ଧ୍ୟାନମଗ୍ନ । ଏହି ଚାରି ଜଣ ବୁଦ୍ଧଙ୍କର ପ୍ରଥମ ଶିଷ୍ୟ ଅଟନ୍ତି । ମୁଣ୍ଡର ବାଳ ଉପରେ ଜଟା ପରି ବନ୍ଧାଯାଇଛି । ଏହି ମୂର୍ତ୍ତିର କୌଣସି ପ୍ରଭା ନାହିଁ କିନ୍ତୁ ଗୋଟିଏ ବୃକ୍ଷାକାର ଆବରଣ ମୁଣ୍ଡକୁ ଘେରିଛି ।

(ଗ) ଧ୍ୟାନୀ ବୁଦ୍ଧ---ଗୋଟିଏ ପରିଷ୍କୃତ ଆସନରେ ତଳ ମାତ୍ର ବସି ବୁଦ୍ଧଦେବ ଆଖି ବୁଜି ଧ୍ୟାନ କରୁଛନ୍ତି, ମୁଣ୍ଡରେ ଜଟା । (୭ମ ଶତାବ୍ଦୀ)

(ଘ) ବଜ୍ରପାଣି ବୁଦ୍ଧ---ଉଲଟ ପଦ୍ମାସନରେ ଛିଡ଼ା ହୋଇ ବାମ ହାତରେ ବଜ୍ରାୟୁଧ ଓ ଡାହାଣ ହାତ ମୁକୁଳା ରଖାଯାଇଛି । ମୁଣ୍ଡର ସୁନ୍ଦର କିରୀଟ, ବେକରେ ମାଳା ଓ ପଇତା, ଦୁଇ ପାଖରେ ଦୁଇଟି ସହଚର ।

(ଙ) ପଦ୍ମପାଣି ବୁଦ୍ଧ---ଉଲଟ ପଦ୍ମାସନ ଉପରେ ଛିଡ଼ା । ବାମ ହାତରେ ପଦ୍ମ, ଡାହାଣ ହାତ ମୁକୁଳା, ଦୁଇ ପାଖର ତଳଭାଗରେ ଦୁଇଟି ସହଚର ଓ ଉପରେ ପୁଷ୍ପମାଳା ଧରି ଦୁଇଟି ପକ୍ଷୀ ।

(ଚ) ଭୂସ୍ପର୍ଶ ବୁଦ୍ଧ—ଓଲଟ ପଦ୍ମାସନ ଉପରେ ଚଢ଼ା ମାନ୍ତ ବାମହାତ ବୁଇ ପାଦ ଉପରେ ଏବଂ ଡାହାଣ ପାଦରେ ଭୂମି ସ୍ପର୍ଶ କରୁଥିବା ମୂର୍ତ୍ତି, ମୁଣ୍ଡରେ ଜଟା, ଆଖିର ଦୃଷ୍ଟି ନାକ ଅଗରେ ରଖି ଧ୍ୟାନ । ଦୁଇ ପାର୍ଶ୍ୱରେ ଦୁଇ ଜଣ ସହଚର ବା ଶିଷ୍ୟ ଏବଂ ଉପରେ ଦୁଇଟି ପକ୍ଷୀ ।

(ଛ) ବୋଧିସତ୍ତ୍ୱ ଅବଲୋକିତେଶ୍ୱର—ସିଂହ ଉପରେ ପଦ୍ମାସନରେ ବାମ ଗୋଡ଼ ମୋଡ଼ି ଡାହାଣ ଗୋଡ଼ ଲମ୍ବା ରଖି ଧ୍ୟାନରେ ବସିଥିବା ମୂର୍ତ୍ତି । ମୁଣ୍ଡରେ ଜଟା, ଦେହରେ ପଇତା ଓ ମାଳା ପ୍ରଭୃତି ଥାଏ ।

(ଜ) ଶିକ୍ଷକ ବୁଦ୍ଧ—ଅନେକ ଶିଷ୍ୟଙ୍କୁ ଧରି ବୁଦ୍ଧଦେବ ଶିକ୍ଷକ ସ୍ଥାନରେ ବସି ଶିକ୍ଷା ଦିଅନ୍ତି ।

(ଝ) ପରିବ୍ରାଜକ ବୁଦ୍ଧ—କେତେକ ସ୍ଥାନରେ ବୁଦ୍ଧଦେବ ଏକାକୀ ପରିବ୍ରାଜକରୂପେ ଦଣ୍ଡାୟମାନ ଥିବାର ପ୍ରତିମୂର୍ତ୍ତି ଦେଖାଯାଏ ।

**ବୌଦ୍ଧଧର୍ମର ଅନ୍ୟାନ୍ୟ ପ୍ରତିମୂର୍ତ୍ତି**—ବୌଦ୍ଧ ଜାତକରୁ ଜଣାଯାଏ ଯେ, ବୁଦ୍ଧଙ୍କ ଜୀବିତାବସ୍ଥାରେ ସେହି ଧର୍ମର କୌଣସି ପ୍ରତିମୂର୍ତ୍ତି ତିଆରି ହୋଇ ନ ଥିଲା । ତତ୍‌ପୂର୍ବରୁ ଆର୍ଯ୍ୟଭାରତୀୟମାନେ ଯେଉଁ ପ୍ରତିମା ପୂଜା କରୁଥିଲେ, ବୁଦ୍ଧଦେବ ସେହି ପ୍ରତିମା ପୂଜା ବନ୍ଦକରିବା ନିଜର ଶିଷ୍ୟ ଓ ଦେଶବାସୀମାନଙ୍କ ମଧ୍ୟରେ ପ୍ରଚାର କରୁଥିଲେ । କିନ୍ତୁ ବୁଦ୍ଧଙ୍କ ନିର୍ବାଣର ବହୁକାଳ ପରେ ବୌଦ୍ଧମାନେ ଦୁଇ ଶ୍ରେଣୀରେ ବିଭକ୍ତ ହୋଇଥିଲେ ।

୧ମ । ଯେଉଁମାନେ ବୁଦ୍ଧଦେବଙ୍କ ପ୍ରଚାରିତ ନିରାକାର ଧର୍ମ (ଅର୍ଥାତ୍ ପ୍ରତିମା-ପୂଜା ବର୍ଜନଧର୍ମ) ଗ୍ରହଣ କରିଥିଲେ, ସେମାନଙ୍କୁ ହୀନଯାନ ବୌଦ୍ଧ (Hinayana or Little Vehicle) କୁହାଯାଏ ଏବଂ

୨ୟ । ଯେଉଁମାନେ ବୁଦ୍ଧଦେବଙ୍କର ଅନ୍ୟାନ୍ୟ ନୀତିଗୁଡ଼ିକୁ ଗ୍ରହଣ କରି ସୁଦ୍ଧା ସାକାର ପ୍ରତିମା ପୂଜା କରିବା ପାଇଁ ସ୍ଥିର କରିଥିଲେ, ସେମାନଙ୍କୁ 'ମହାଯାନ' ବା ମହାଯାନ ବୌଦ୍ଧ (Mahayana or Great Vehicle) କୁହାଯାଉଥିଲା ।

ଭାରତରେ ଖ୍ରୀଷ୍ଟୀୟ ପ୍ରଥମ ଅବ୍ଦରେ କନିଷ୍କଙ୍କ ରାଜତ୍ୱରେ ବୌଦ୍ଧମାନଙ୍କ ମଧ୍ୟରେ ଏହିପରି ଦୁଇଟି ଶାଖା ହୋଇଥିଲା । ତସ୍ମରେ ଏ ଦେଶରେ ବୁଦ୍ଧଦେବଙ୍କର ଅନେକ

ପ୍ରସ୍ତରମୂର୍ତ୍ତି ନିର୍ମିତ ହୋଇଥିଲା । ସଙ୍ଗେ ସଙ୍ଗେ ଏହି ମହାଯାନ ବୌଦ୍ଧମାନେ ନୂଆ କେତୋଟି ଦେବଦେବୀଙ୍କ ପ୍ରସ୍ତରମୂର୍ତ୍ତି ମଧ୍ୟ ନିର୍ମାଣ କରି ପୂଜା କରୁଥିଲେ । ଏ ଶ୍ରେଣୀର ପ୍ରସ୍ତରମୂର୍ତ୍ତି-ଗୁଡ଼ିକ ମୟୂରଭଞ୍ଜର ଜଙ୍ଗଲ ପ୍ରଦେଶରେ ଏବଂ ନୀଳଗିରି ରାଜ୍ୟ ଓ ବାଲେଶ୍ୱର ଜିଲ୍ଲାର କେତେକ ସ୍ଥାନରେ ଆବିଷ୍କୃତ ହୋଇଛନ୍ତି ।

୧ । ଅବଲୋକିତେଶ୍ୱର ବା ପଦ୍ମପାଣି ବୁଦ୍ଧ—ଏହାଙ୍କର ବର୍ଣ୍ଣନା ଉପରେ ଦିଆଯାଇଛି ।

୨ । ପ୍ରଜ୍ଞାପାରମିତ ବୁଦ୍ଧ (?)

୩ । ଚତୁର୍ଭୁଜ ଲୋକେଶ୍ୱର—ନୀଳଗିରି ରାଜ୍ୟର ଅଯୋଧ୍ୟା ଗ୍ରାମରୁ ଆବିଷ୍କୃତ ଏହି ମୂର୍ତ୍ତିର ଚତୁର୍ବାହୁ ମଧ୍ୟରୁ ଡାହାଣ ତଳ ହାତରେ ଅଭୟ ଦିଆଯାଉଛି—ଅନ୍ୟ-ଗୁଡ଼ିକ ଭାଙ୍ଗିଯାଇଛି । ମୁଣ୍ଡରେ ଜଟା ଓ ତହିଁ ମଧ୍ୟରେ ଅମିତାଭ (?)ର ଛବି ରହିଛି । ଦୁଇ ପାର୍ଶ୍ୱରେ ଦୁଇଟି ବୌଦ୍ଧ ଚୈତ୍ୟ, ଡାହାଣ ଦିଗରେ ତାରାମୂର୍ତ୍ତି ଏବଂ ବାମ ଦିଗରେ ଚତୁର୍ଭୁଜା ଭୃକୁଟି ମୂର୍ତ୍ତି । ପଦ୍ମାସନର ତଳେ ଅନେକ ତପସ୍ୱୀ ମୂର୍ତ୍ତି ଧ୍ୟାନ କରୁଥିବାର ଦେଖାଯାଏ । ଲୋକେଶ୍ୱରର ତିନୋଟି ଆଖି, ଦେହରେ ଗୋଟିଏ ସାପର ପଇତା ଓ ଚୂଡ଼ରେ ଚନ୍ଦ୍ରଚକ୍ର ଥାଏ ।

୪ । ତାରାମୂର୍ତ୍ତି—ବୌଦ୍ଧଧର୍ମର ଅସଂଖ୍ୟ ବୌଦ୍ଧମୂର୍ତ୍ତି ସଙ୍ଗେ 'ତାରା' ନାମକ ସ୍ତ୍ରୀମୂର୍ତ୍ତି ମଧ୍ୟ କେତେକ ସ୍ଥାନରେ ଦେଖାଯାଏ । ଏହି ତାରାକୁ ମହାଯାନ ବୌଦ୍ଧମାନେ ଦେବୀମୂର୍ତ୍ତିରୂପେ ପୂଜା କରନ୍ତି । ତାରାଙ୍କର ନିମ୍ନ କେତୋଟି ପୃଥକ୍ ନାମ ଅଛି ।

(କ) ଆର୍ଯ୍ୟତାରା—ଆର୍ଯ୍ୟତାରାଙ୍କ ଅନ୍ୟ ଏକ ନାମ ମହାତାରା । ଏହାଙ୍କର କୃଷ୍ଣ ବର୍ଣ୍ଣ, ଦୁଇଟି ହାତ, ଡାହାଣ ହାତରେ ଅଭୟଦାନ ଓ ବାମ ହାତରେ ପଦ୍ମ ଥାଏ । ପଦ୍ମାସନ ତଳେ ଅନେକ ତପସ୍ୱୀ ପ୍ରତିମା ଥାଏ । ସୁଣୀବନ୍ଧରୁ ଆବିଷ୍କୃତ ପ୍ରତିମାଟି ଗୋଟିଏ ଚୌକି ଆକାରରେ ବସିଥିବାର ଦେଖାଯାଏ ।

(ଖ) ବଜ୍ରତାରା—ଏହାଙ୍କ ପଦ୍ମାସନ ଉପରେ ଚକା ମାଡ଼ି ବସିଥିବା ବଜ୍ରତାରା ମୂର୍ତ୍ତିର ଚାରି ଗୋଟି ମୁଣ୍ଡ ଏବଂ ଆଠ ଗୋଟି ହାତ ଦେଖାଯାଏ । ପ୍ରତ୍ୟେକ ମୁଣ୍ଡ ଉପରେ ଜଟା ଓ ପ୍ରତ୍ୟେକ ମୁଖରେ ତିନୋଟି ଆଖି ଥାଏ । ମୁଣ୍ଡରେ ଜଟାରେ ଅମିତାଭଙ୍କ ପ୍ରତିମା ଦେଖାଯାଏ । ଆଠ ହାତ ମଧ୍ୟରୁ ଡାହାଣ ଚାରି ହାତରେ ଯଥାକ୍ରମେ ବଜ୍ର, ଶର, ଶଙ୍ଖ ଓ ବରଦାନ ଏବଂ ବାମ ହାତଗୁଡ଼ିକରେ ପଦ୍ମ, ଧନୁ, ହ୍ରୀଶ୍ୱାଡିତ ଭାଲି,

ପାଶ ଏବଂ ଗୋଟିଏ ହାତର ତର୍ଜନୀ ଅଙ୍ଗୁଠି ଉପରକୁ ଦେଖାଉଥିବାର ଦେଖାଯାଏ । ଏହି ମୂର୍ତ୍ତିର ଚତୁର୍ଦ୍ଦିଗରେ ମାତୃକାଗଣ ଦେଖାଯାନ୍ତି ।

(ଘ) ଜଙ୍ଗଲି ତାରା—ଦ୍ୱିଭୁଜା ବା ଚତୁର୍ଭୁଜା ମୂର୍ତ୍ତି, ସତ୍ତ୍ୱ-ସିଂହାସନ ଉପରେ ବସିଥିବାର ଦେଖାଯାଏ । ଦେହରେ ଶ୍ୱେତ ବସ୍ତ୍ର ଓ ଶ୍ୱେତ ଅଳଙ୍କାର ଥାଏ । ଗୋଟିଏ ବୀଣା ଦୁଇ ହାତରେ ଧରି ବଜାଉଥାଏ । ଚତୁର୍ଭୁଜା ମୂର୍ତ୍ତିର ଅନ୍ୟ ଦୁଇଟି ହାତ ମଧ୍ୟରୁ ଡାହାଣ ହାତରେ ଅଭୟଦାନ ଓ ବାମ ହାତରେ ସର୍ପ ଥାଏ । ମହାଯାନ ସଂଘର ବୌଦ୍ଧ ଶ୍ରମଣମାନେ ନିର୍ଜନ ସ୍ଥାନରେ ରହି ଏ ଧରଣର ତାରାମୂର୍ତ୍ତିଙ୍କ ପୂଜା କରୁଥିଲେ।

୫ । ମଞ୍ଜୁଶ୍ରୀ—ପଦ୍ମାସନରେ ଛିଡ଼ା ହୋଇଥିବା ଦ୍ୱିଭୁଜା ମୂର୍ତ୍ତି । ଦୁଇପାର୍ଶ୍ୱରେ ବୌଦ୍ଧ ବିଦ୍ୟାଧର ମୂର୍ତ୍ତି ଓ ସେମାନଙ୍କର ତଳଭାଗରେ କିନ୍ନର ମୂର୍ତ୍ତି ଦେଖାଯାଏ । * ମଞ୍ଜୁଶ୍ରୀର ଦୁଇ ହାତରେ ପଦ୍ମ ଥାଏ ।

୬ । ଧର୍ମ—ବୌଦ୍ଧ ଧର୍ମର ଅନ୍ୟ ଏକ ସ୍ତ୍ରୀ ଦେବୀ ମୂର୍ତ୍ତି । ଚତୁର୍ଭୁଜା ମୂର୍ତ୍ତି, ଡାହାଣ ହାତରେ ଜପମାଳା ଓ ଅଭୟଦାନ । ବାମ ହାତରେ ପଦ୍ମ ଦେଖାଯାଏ ।

୭ । ଶୀତଳ—ଅନ୍ୟ ଏକ ଦେବୀ ମୂର୍ତ୍ତି । ଦୁଇ ହାତ ମଧ୍ୟରୁ ଡାହାଣ ହାତରେ ପଦ୍ମ ଓ ବାମରେ ଜଳପାତ୍ର । ଗର୍ଦ୍ଦଭବାହନ, ଦେବୋଟି ମୂର୍ତ୍ତିର ମୁଣ୍ଡରେ ତିନ ଗୋଟି ଆଖି ଥାଏ । ଏହି ମୂର୍ତ୍ତି ସ୍ୱେଗବ୍ୟାଧିର ଶାନ୍ତିଦାତା ବୋଲି ବୌଦ୍ଧମାନେ ବିଶ୍ୱାସ କରନ୍ତି ।

୮ । ଚନ୍ଦ୍ରସେଣା—ବୌଦ୍ଧ ଚୈତ୍ୟର ଦୁଇ ପାର୍ଶ୍ୱରେ ଧର୍ମ ଓ ଶୀତଳ ସ୍ତମ୍ଭ-ମୂର୍ତ୍ତି ରଖି କେତେକ ବୌଦ୍ଧ ଭକ୍ତ ଚୈତ୍ୟକୁ ପୂଜା କରନ୍ତି । ଏହାର ନାମ 'ଚନ୍ଦ୍ରସେଣା ।' ଏପରି ଏକ ଚନ୍ଦ୍ରସେଣା ମୟୂରଭଞ୍ଜର ବଡ଼ସାହି ଗ୍ରାମରୁ ଆବିଷ୍କୃତ ହୋଇଛି । (୩୧ଶ ଚିତ୍ର)

* ବୌଦ୍ଧ ଜାତକରେ ନିମ୍ନ ଆଠ ପ୍ରକାରର ଅପୁରୁଷ ଜୈନ ଜାତକରେ ମଧ୍ୟ ସେହିପରି ଆଠ (Demigods) ବା ପ୍ରେତଙ୍କର ବର୍ଣ୍ଣନା ଅଛି । ଗୋଟି ଅପୁରୁଷ ଥିବାର ଲେଖା ଅଛି । ଯଥା—

| | | | |
|---|---|---|---|
| ୧ ଦେବ | ୫ ଅସୁର | ୧ ପିଶାଚ | ୫ କିନ୍ନର |
| ୨ ନାଗ | ୬ ଗରୁଡ | ୨ ଭୂତ | ୬ କିମ୍ପୁରୁଷ |
| ୩ ରାକ୍ଷସ | ୭ କିନ୍ନର | ୩ ଯକ୍ଷ | ୭ ମହୋରଗ |
| ୪ ଗନ୍ଧର୍ବ | ୮ ମହୋରଗ | ୪ ରାକ୍ଷସ | ୮ ଗନ୍ଧର୍ବ |

୧୩ । ବିଷ୍ଣୁ ମୂର୍ତ୍ତି—ବିଷ୍ଣୁଙ୍କର ଦଶ ଅବତାର ଥିବାର ବର୍ଣ୍ଣିତ ଅଛି । ଯଥା—ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ରାମ, ପରଶୁରାମ, ବୌଦ୍ଧ, କଳ୍କି ଓ ଜଗନ୍ନାଥ । ଏସମସ୍ତ ଅବତାରର ମୂର୍ତ୍ତିଗୁଡ଼ିକ ପୌରାଣିକ ମତରୁ ତିଆରି ହୋଇଥିବାର ଜଣାଯାଏ । କେବଳ ସେହି ସେହି ଅବତାରର ପ୍ରଧାନ ସାଙ୍କେତିକ ଚିହ୍ନ ବ୍ୟତୀତ କେତେକ ଜଗନ୍ନାଥ ମୂର୍ତ୍ତିକି ବାଦ୍ ଦେଲେ ଅନ୍ୟ ସବୁ ମୂର୍ତ୍ତି ଚତୁର୍ଭୁଜ ଦେଖାଯାନ୍ତି । ଏହି ଚତୁର୍ଭୁଜ ମୂର୍ତ୍ତିର ବର୍ଣ୍ଣନା ନିମ୍ନରେ ଦିଆଗଲା ।

ପ୍ରତ୍ୟେକ ମୂର୍ତ୍ତି ଓଲଟ ପଦ୍ମାସନରେ କିମ୍ବା ସିଂହାସନ ଉପରେ ଥିବାର ଦେଖାଯାଏ । ତାର ହାତରୁ ଡାହାଣ ଉପର ହାତରେ ଚକ୍ର, ତଳ ହାତରେ ପଦ୍ମ, ବାମ ଉପର ହାତରେ ଶଙ୍ଖ ଓ ତଳ ହାତରେ ଗଦା । ବାମପାର୍ଶ୍ୱରେ ଲକ୍ଷ୍ମୀ, ଡାହାଣରେ ବସୁମତୀଙ୍କ ମୂର୍ତ୍ତି । ମୁଣ୍ଡରେ ରତ୍ନ ମୁକୁଟ, ବାହୁରେ ବାହୁବନ୍ଧ (ତାଡ଼), ବେକରେ ରତ୍ନହାର ( କୌସ୍ତୁଭ ମଣି ) କର୍ଣ୍ଣରେ ମକରକୁଣ୍ଡଳ, ହୃଦୟରେ ଶ୍ରୀବତ୍ସ ଚିହ୍ନ ଦେଖାଯାଏ ।

ଅବତାରଗୁଡ଼ିକର ପାର୍ଥକ୍ୟ—ମତ୍ସ୍ୟ ଅବତାରରେ ଉପର୍ଯ୍ୟୁକ୍ତ ମୂର୍ତ୍ତିର ନିମ୍ନ ଅଂଶ ସାଗର ମାଛର ଆକୃତି ଥାଏ ।

କଚ୍ଛପ ଅବତାରରେ—ନିମ୍ନଭାଗ କଇଁଛ ଆକୃତି ଥାଏ ।

ବରାହ ଅବତାରରେ—ମୂର୍ତ୍ତିର ମୁହଁ ବରାହ ପରି ଦେଖାଯାଏ ।

ନୃସିଂହ ଅବତାରରେ—ମୂର୍ତ୍ତିର ତଳ ଭାଗ ସିଂହ ପରି ଏବଂ ଉପର ଭାଗ ମନୁଷ୍ୟ ପରି ଦେଖାଯାଏ । ଅତି ବିକଟାଳ ମୁହଁ, ଜାନୁ ଉପରେ ଅନ୍ୟ ଏକ ମୂର୍ତ୍ତିକି ରଖି ତାହାର ପେଟକୁ ଦୁଇ ହାତରେ ଚିରି ତହିଁ ମଧ୍ୟରୁ ଅନ୍ତ୍ରପ୍ରତ୍ୟଙ୍ଗ ବାହିରିବା ଭଳି ନିର୍ମିତ ଥାଏ ।

ବାମନ ଅବତାରରେ—ବାମନ ବେଶରେ ବଳିରାଜାଙ୍କଠାରୁ ଦାନ ଗ୍ରହଣ କରୁଥିବାର ଦେଖାଯାଏ । ଏହି ମୂର୍ତ୍ତିରେ ବାମନ, ବଳି ଓ ବଳିଙ୍କ ଗୁରୁ ଶୁକ୍ରାଚାର୍ଯ୍ୟ ଥିବାର ଦେଖାଯାନ୍ତି ।

ରାମ ଅବତାର—ଏଠାରେ ରାମଙ୍କର ବନବାସର ଦୃଶ୍ୟ ଦେଖାଯାଏ ।

ପରଶୁରାମ—ଯୁଦ୍ଧ ବେଶରେ ପରଶୁରାମଙ୍କ ଚିତ୍ର ଦେଖାଯାଏ ।

ବୌଦ୍ଧାବତାରରେ—ବିଷ୍ଣୁଙ୍କ ମୌନ ଥିବାର ଦେଖାଯାଏ ।

ଚଳ୍କି ଅବତାରରେ—ବିଷ୍ଣୁ ଗୋଟିଏ ଘୋଡ଼ା ଉପରେ ଚଢ଼ିଥିବାର ଦେଖାଯାଏ ।

ଜଗନ୍ନାଥ ଅବତାରରେ ମଧ୍ୟ ଜଗନ୍ନାଥଙ୍କର ଚତୁର୍ବାହୁ ଥିବାର ଦେଖାଯାଏ ।

ଏ ସମସ୍ତ ଅବତାରର କୌଣସି ପ୍ରସ୍ତରମୂର୍ତ୍ତି ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ । କେବଳ ଚିତ୍ରପଟରେ ଏସବୁ ମୂର୍ତ୍ତି ଦେଖାଯାଏ ଏବଂ ଜଗନ୍ନାଥଙ୍କର ରଥ-ଯାତ୍ରା ସମୟରେ ଗୁଣ୍ଡିଚା ଘରେ ଏ ସମସ୍ତ ଅବତାରର ବେଶ ଦେଖିବାକୁ ପାଉଁ । ବିଷ୍ଣୁଙ୍କର ଅନ୍ୟ ଏକ ଅବତାର ଶ୍ରୀକୃଷ୍ଣ । ସ୍ୱର୍ଦ୍ଦ ଜଲର ସତ୍ୟବାଦୀରେ ଥିବା ଶ୍ରୀକୃଷ୍ଣ ବା 'ସାକ୍ଷିଗୋପାଳ' ମୂର୍ତ୍ତି କାଞ୍ଚିଯୁଦ୍ଧ ପରେ ଉତ୍କଳକୁ ଅଣାଯାଇଥିବାର କିମ୍ବଦନ୍ତୀ ଅଛି ।

୧୪ । **ଲକ୍ଷ୍ମୀ**—ବିଷ୍ଣୁ ପତ୍ନୀ ଲକ୍ଷ୍ମୀଙ୍କର ଅନେକ ପ୍ରସ୍ତର ଓ ଧାତୁନିର୍ମିତ ମୂର୍ତ୍ତି ଦେଖାଯାଏ । ପ୍ରତ୍ୟେକ ମନ୍ଦିରର ବିମାନ ଦ୍ୱାରରେ ଲକ୍ଷ୍ମୀଙ୍କର ପ୍ରସ୍ତର ମୂର୍ତ୍ତି ଦେଖା-ଯାଏ । ଏହି ମୂର୍ତ୍ତି ମଧ୍ୟ ଆଧୁନିକ ଯୁଗର । ଓଲଟ ପଦ୍ମାସନ ଉପରେ ବସା ମାଣ୍ଡ ଲକ୍ଷ୍ମୀଙ୍କର ମୂର୍ତ୍ତି ଦେଖାଯାଏ । ଦୁଇ ହାତରେ ଦୁଇଟି ପ୍ରସ୍ଫୁଟିତ ପଦ୍ମ, ମୁଣ୍ଡରେ କିରୀଟ, ଦୁଇ ପାର୍ଶ୍ୱରେ ଦୁଇଟି ହାତୀ ଶୁଣ୍ଢ ଟେକି ଛିଡ଼ା ହୋଇଥିବାର ଦେଖାଯାଏ । କେତେକ ପ୍ରତିମୂର୍ତ୍ତିରେ ହାତୀ ଶୁଣ୍ଢରେ ପଦ୍ମ ଧରି ଲକ୍ଷ୍ମୀଙ୍କୁ ଚାମର ଢାଳନ୍ତି ।

୧୫ । **ଗରୁଡ଼**—ପକ୍ଷିରାଜ, ବିଷ୍ଣୁଙ୍କ ବାହନ । ଗରୁଡ଼ର ମୂର୍ତ୍ତି ପ୍ରାୟ ପ୍ରତ୍ୟେକ ବିଷ୍ଣୁମନ୍ଦିରରେ ଦେଖାଯାଏ । ଏହା ମଧ୍ୟ ଆଧୁନିକ ଯୁଗର ଅଟେ । ଡାହାଣ ଆଣ୍ଠୁ ମାଡ଼ି, ବାମ ଆଣ୍ଠୁକୁ ଭାଙ୍ଗି ଯୋଡ଼ହସ୍ତରେ 'ଗରୁଡ଼ସ୍ତମ୍ଭ' ଉପରେ ଗରୁଡ଼ମୂର୍ତ୍ତି ଦେଖାଯାଏ । ଦୁଇ ପାର୍ଶ୍ୱରେ ଦୁଇଟି ଡେଣା, ମୁଣ୍ଡରେ କିରୀଟ, କର୍ଣ୍ଣରେ କୁଣ୍ଡଳ ଓ ବେକରେ ମାଳା ପ୍ରଭୃତି ଦେଖାଯାଏ । ମୁହଁର ନାକଟି ଅତି ସୂକ୍ଷ୍ମ ବା ମୁନିଆ ଏବଂ ଆଖିଗୁଡ଼ିକ ଅତି ବଡ଼ । ଗରୁଡ଼ ମୂର୍ତ୍ତି ବୌଦ୍ଧ ଓ ଜୈନଧର୍ମାବଲମ୍ବୀମାନଙ୍କର ମଧ୍ୟ ପୂଜ୍ୟ ଥିବାର ବର୍ଣ୍ଣିତ ଅଛି ।

୧୬ । **ଶାକ୍ତମୂର୍ତ୍ତି**—ଉତ୍କଳର ଶକ୍ତିପୂଜା ଖ୍ରୀଷ୍ଟପୂର୍ବ ଯୁଗରୁ ଥିବାର ଜଣା-ଯାଏ । ପଲ୍ଲୀବାସୀ ଯାହାକୁ ଗ୍ରାମଦେବୀ, ଠାକୁରାଣୀ ଓ ବୁଢ଼ୀମା ପ୍ରଭୃତି କହି ନିମ୍ବ, ବର ଓ କୋଶଳା ଗଛମୂଳେ ପୂଜା କରନ୍ତି, ତାହାକୁ ହିଁ 'ଶକ୍ତିପୂଜା' କୁହାଯାଏ । ଏହି ଶକ୍ତିପୂଜା ମଧ୍ୟ ପ୍ରୋକ୍ତ ସୌର-ବ୍ରାହ୍ମଣ (The magas)ମାନେ ପ୍ରଥମେ ଭାରତର ଭିନ୍ନ ଭିନ୍ନ ସ୍ଥାନରେ ପ୍ରତିଷ୍ଠା କରିଥିଲେ । ପରେ ଦେଶରେ ବୌଦ୍ଧ ମହାଯାନ ପନ୍ଥା ପ୍ରଚାରିତ

ଚଢ଼ିବା ସଙ୍ଗେ ସଙ୍ଗେ ଏହି ଧର୍ମର ମୂର୍ତ୍ତିମାନ ନିର୍ମିତ ହୋଇଥିଲା । ଆଜିଯାଏ ଉତ୍କଳର ବହୁତ ସ୍ଥାନରେ ନିମ୍ନ ଶକ୍ତିମୂର୍ତ୍ତି ଦେଖାଯାଏ ।

(୧) ସପ୍ତମାତୃକା—

(କ) ବ୍ରାହ୍ମଣୀ
(ଖ) ମାହେଶ୍ୱରୀ
(ଗ) କୌମାରୀ
(ଘ) ବୈଷ୍ଣବୀ
(ଙ) ବାରାହୀ
(ଚ) ଇନ୍ଦ୍ରାଣୀ
(ଛ) ଚାମୁଣ୍ଡା

ଏହି ସପ୍ତମାତୃକାଙ୍କୁ ଆଜିଯାଏ ଆମ ଦେଶରେ ସେବକମାନେ 'ସାତଭଉଣୀ' ବୋଲି ସାଧାରଣ ଯାତ୍ରୀମାନଙ୍କୁ କହନ୍ତି । ସପ୍ତମାତୃକାର ଉତ୍ପତ୍ତି ସମ୍ବନ୍ଧରେ ଅତି ସୁନ୍ଦର ଗଳ୍ପ ମାର୍କଣ୍ଡେୟ ପୁରାଣର 'ଦେବୀମାହାତ୍ମ୍ୟ' ଅଧ୍ୟାୟରେ ବର୍ଣ୍ଣିତ ଅଛି । ସେହି ପୁରାଣ ଅନୁସାରେ ପ୍ରତ୍ୟେକ ମାତୃକାର ନିମ୍ନ ସଂକ୍ଷିପ୍ତ ବର୍ଣ୍ଣନା ଜାଣିଲେ ସେହି ସେହି ମାତୃକା ମୂର୍ତ୍ତିକୁ ସ୍ପଷ୍ଟରୂପେ ଚିହ୍ନି ହେବ ।

(କ) ବ୍ରାହ୍ମଣୀ—ଏହି ମୂର୍ତ୍ତିର ତିନୋଟି ମୁଣ୍ଡ ଏକତ୍ର ମିଶି ଯଥାକ୍ରମେ ପୂର୍ବ, ଉତ୍ତର ଓ ଦକ୍ଷିଣକୁ ଚାହିଁଥାଏ । ମୁଣ୍ଡରେ ଜଟା ଓ ମୁକୁଟ । ଦୁଇଟି ମାତ୍ର ହାତ । ଡାହାଣ ହାତରେ ଅଭୟ ଦାନ ଓ ବାମ ହାତରେ ଶିଶୁଟିକୁ କୋଳରେ ଧରିଥାଏ । ଆସନ ଉପରେ ବାମଜାନୁ ମାଡ଼ି ଡାହାଣ ଜାନୁ ଲମ୍ବାଇଥାଏ । ଆସନ ତଳେ ଗୋଟିଏ ହଂସ (? ବାହନ) । ପ୍ରତ୍ୟେକ ମୂର୍ତ୍ତି ହସ ହସ ଦେଖାଯାଏ । ବ୍ରାହ୍ମଣୀଙ୍କ 'ମୋହ' ମୂର୍ତ୍ତି କୁହାଯାଏ ।

(ଖ) ମାହେଶ୍ୱରୀ—ଚତୁର୍ବାହୁ ମୂର୍ତ୍ତି । ବାମ ଜାନୁରେ ଗୋଟିଏ ପୃଥୁଳ-ଦାନ୍ତ ଶିଶୁଟିକୁ ବାମ ତଳ ହାତରେ ଧରିଥାଏ । ଡାହାଣ ତଳ ହାତରେ ଅଭୟଦାନ, ଉପର ଦୁଇ ହାତରେ ଡମ୍ବରୁ ଓ ଖଣ୍ଡା ଥାଏ । ଏହି ମୂର୍ତ୍ତିର ମୁହଁ ଅତି ବିକଟାଳ ଦେଖାଯାଏ । ଏଣୁ ମାହେଶ୍ୱରୀଙ୍କ 'କ୍ରୋଧ' ମୂର୍ତ୍ତି କୁହାଯାଏ ।

(ଗ) କୌମାରୀ—ମୟୂରବାହିନୀ ଚତୁର୍ବାହୁ ମୂର୍ତ୍ତି ମାହେଶ୍ୱରୀ ସଦୃଶ ଦେଖାଯାଏ । କିନ୍ତୁ ମୁହଁରେ ହସ ଥାଏ । ଏହି ମୂର୍ତ୍ତିଙ୍କ 'ମଦ' ମୂର୍ତ୍ତି କୁହାଯାଏ ।

(ଘ) ବୈଷ୍ଣବୀ—ପୂର୍ବୋକ୍ତ ମୂର୍ତ୍ତି ପରି ଦେଖାଯାଏ । ଏହି ମୂର୍ତ୍ତିଙ୍କ 'ଲୋଭ' ମୂର୍ତ୍ତି କୁହାଯାଏ ।




ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫାସମୂହ



୧୪—ଖଣ୍ଡଗିରି ଉପର ଜୈନ ମନ୍ଦିର

(ଙ) ବାରାହୀ—ବୃଷଭବାହନୀ, ଚତୁର୍ଭୁଜମୂର୍ତ୍ତି । ବାମ କୋଡ଼ରେ ଶିଶୁଟିଏ । ଅନ୍ୟ ହାତଗୁଡ଼ିକରେ ଯଥାକ୍ରମେ ଅଭୟ, ଡମ୍ବରୁ ଓ ଖଡ୍ଗ । ଏହାର ମୁହଁ ବରାହ ସଦୃଶ ହୋଇଥିବାରୁ ଏହି ମୂର୍ତ୍ତିକୁ 'ବାରାହୀ' ଓ ଅନୁସୂୟା' କୁହାଯାଏ । ପ୍ରାଚୀ ନଦୀତୀରବର୍ତ୍ତୀ 'ବାରାହୀ ମନ୍ଦିର'ର ବାରାହୀ ମୂର୍ତ୍ତିଟି ଉତ୍କଳର ଅତି ବଡ଼ ମୂର୍ତ୍ତି ଅଟେ ।

(ଚ) ଇନ୍ଦ୍ରାଣୀ—ଗଜବାହନୀ, ଚତୁର୍ଭୁଜମୂର୍ତ୍ତି । ବାମ କୋଡ଼ରେ ଶିଶୁ ଓ ଅନ୍ୟ ମୂର୍ତ୍ତି ପରି ଦେଖାଯାଏ । ଏହି ମୂର୍ତ୍ତିକୁ 'ମାହେନ୍ଦ୍ରୀ' କୁହାଯାଏ ।

(ଛ) **ଚାମୁଣ୍ଡା** । ସପ୍ତମାତୃକାର ସବୁ ମୂର୍ତ୍ତିଠାରୁ ଏହି ମୂର୍ତ୍ତିଟି ଅତି ଭୟଙ୍କର ଓ ବିକୃତ ଦେଖାଯାଏ । ଓଲଟା ପଦ୍ମାସନରେ ମୃତ ମନୁଷ୍ୟ ଉପରେ ଡାହାଣ ଗୋଡ଼କୁ ମାଡ଼ି ଏବଂ ବାମ ଗୋଡ଼କୁ ଲମ୍ବାଇ ବସିଥିବାର ଦେଖାଯାଏ । ଚତୁର୍ବାହୁ ମଧ୍ୟରୁ ଡାହାଣ ଉପର ହାତରେ ଖଣ୍ଡା, ତଳ ହାତରେ ପାତ୍ର; ବାମ ଉପର ହାତରେ ତ୍ରିଶୂଳ ଏବଂ ତଳ ହାତରେ ମନୁଷ୍ୟର ଛିନ୍ନ ମୁଣ୍ଡ ଥାଏ । ସର୍ବାଙ୍ଗ ଅସ୍ଥିକଙ୍କାଳ, ମୁହଁର ଆଖି-ଗୁଡ଼ିକ କୋଟର ଭିତରେ, ଦାନ୍ତଗୁଡ଼ିକ ଅତି ବିକୃତ, ଲହ ଲହ ଜିହ୍ୱା । ଏବଂ ବେକରେ ମୁଣ୍ଡମାଳ ଦେଖାଯାଏ ।

ଉତ୍କଳର ନିମ୍ନ ଭେଦଭେଦ ସ୍ଥାନରେ ସପ୍ତମାତୃକା ମୂର୍ତ୍ତିଗୁଡ଼ିକ ଏକତ୍ର ଥିବାର ଦେଖାଯାଏ :—

ପ୍ରଥମ—ବାଲେଶ୍ୱର ଜିଲ୍ଲାର "ସୋରୋ" ଗ୍ରାମରେ । ଏହି ଗ୍ରାମରେ ମିଳିଥିବା ସପ୍ତମାତୃକା ମୂର୍ତ୍ତି ଖଣ୍ଡିଏ ପ୍ରସ୍ତରରେ ଖୋଦାଯାଇଛି । ଏହା ଉତ୍କଳର ଅତି ପ୍ରାଚୀନ ପ୍ରସ୍ତର ମୂର୍ତ୍ତି ଥିବାର ଦେଖାଯାଏ ।

ଦ୍ୱିତୀୟ—ମୟୂରଭଞ୍ଜର ଖିଚିଂ ନିକଟବର୍ତ୍ତୀ ବେଣୁସାଗର କୂଳରେ ।

ତୃତୀୟ—କଟକ ଜିଲ୍ଲାର ଯାଜପୁରରେ ।

ଚତୁର୍ଥ—ପୁରୀ ଜିଲ୍ଲାର ପୁରୀ ସହରର ମାର୍କଣ୍ଡ ପୁଷ୍କରିଣୀ ଉପରେ ଏବଂ ଭୁବନେଶ୍ୱରର ବୈତାଳ ମନ୍ଦିରରେ ।

କଟକ ଓ ପୁରୀ ଜିଲ୍ଲାର ମୂର୍ତ୍ତିଗୁଡ଼ିକ ୮ମ ଓ ୯ମ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିବାର ଜଣାଯାଏ ।

ଉପର୍ଯ୍ୟୁକ୍ତ ସପ୍ତମାତୃକା ବ୍ୟତୀତ ଉତ୍କଳର ଭିନ୍ନ ଭିନ୍ନ ସ୍ଥାନରେ ଆହୁରି ଅସଂଖ୍ୟ ନାମରେ ଦେବୀ ମୂର୍ତ୍ତି ଦେଖାଯାଏ । ତନ୍ମଧ୍ୟରୁ ନିମ୍ନଗୁଡ଼ିକ ପ୍ରଧାନ ଅଟେ ।

୧ । ଭୀମା—ଏହାଙ୍କୁ କାଳୀ ମଧ୍ୟ କହନ୍ତି । ଏହି ମୂର୍ତ୍ତିର ଗଠନ ସପ୍ତମାତୃକାର ଚାମୁଣ୍ଡା ମୂର୍ତ୍ତି ପରି ଦେଖାଯାଏ; କିନ୍ତୁ ଏହାର ବେକରେ ମୁଣ୍ଡମାଳ ଦେଖାଯାଏ ନାହିଁ ।

୨ । ନାରସିଂହୀ—ଏହି ମୂର୍ତ୍ତିର ମୁହଁ ସିଂହପରି ଦେଖାଯାଏ ।

୩ । ରଉଦ୍ରଚଣ୍ଡୀ ବା ମହିଷାସୁରମର୍ଦ୍ଦିନୀ—ଅଷ୍ଟଭୁଜା, ପ୍ରତ୍ୟେକ ହାତରେ ଅସ୍ତ୍ର ଓ ପାଶ ପ୍ରଭୃତି ଦେଖାଯାଏ । ଡାହାଣ ଗୋଡ଼ରେ ମହିଷାସୁରକୁ ଦଳିଥିବାର ଦେଖାଯାଏ ।

୪ । ମହାଲକ୍ଷ୍ମୀ—ସିଂହବାହିନୀ, ଅଷ୍ଟଭୁଜମୂର୍ତ୍ତି; ତାହାର ଗୋଡ଼ରେ ଗୋଟିଏ ବୃଷଭକୁ ମାଡିଥିବାର ଦେଖାଯାଏ ।

୫ । ରୁଦ୍ରଭୈରବୀ—ମହିଷାସୁରମର୍ଦ୍ଦିନୀ ସଦୃଶ । ଗୋଡ଼ତଳେ ଶିବ ମୂର୍ତ୍ତିକି ମାଡିଥିବାର ଦେଖାଯାଏ ।

୬ । ମଙ୍ଗଳେଇ—ସଶସ୍ତ୍ର ଅଷ୍ଟଭୁଜମୂର୍ତ୍ତି ।

୭ । ବେତାଳୀ—ବାଘୁଣୀ ମୂର୍ତ୍ତି ପରି ଦେଖାଯାଏ ।

୮ । ଭୈରବୀ—କଟକ ଜିଲ୍ଲାର ରତ୍ନଗିରିଠାରୁ ଯେଉଁ ଦେବୀମୂର୍ତ୍ତି ଆବିଷ୍କୃତ ହୋଇଛି, ତାହାର ନାମ ଭୈରବୀ । ଏହି ମୂର୍ତ୍ତିର ତିନ ଗୋଟି ମୁଣ୍ଡ ଏବଂ ବାର ଗୋଟି ସଶସ୍ତ୍ର ହାତ ଦେଖାଯାଏ । ବେକରେ ମୁଣ୍ଡମାଳ ଓ ମୁଣ୍ଡରେ କିରୀଟ ମଧ୍ୟ ଅଛି । ଗୋଟିଏ ଅତି ବଡ଼ ସାପକୁ ଦୁଇ ହାତରେ ମୁଣ୍ଡ ଉପରେ ଅର୍ଦ୍ଧବୃତ୍ତାକାରରେ ଧରିଛି ।

ଉତ୍କଳର ବହୁତ ପୁରପଲ୍ଲୀରେ ପଡିଥିବା ଶାକ୍ତ ମୂର୍ତ୍ତିଗୁଡିକୁ ଉପର ଶ୍ରେଣି ହେବ, ଯେ ବିଷୟ ଉପରେ କୁହାଗଲା । ଆଜକାଲି ଆମ ଦେଶର ପଲ୍ଲୀବାସୀ ଯେଉଁ 'ଗ୍ରାମଦେବୀ' ବା 'ଠାକୁରାଣୀ' ମୂର୍ତ୍ତି ସବୁ ପୂଜା କରନ୍ତି, ଏଥିରୁ ଅଧିକାଂଶ ମୂର୍ତ୍ତି ହିଁ ଏତ ବୁଦ୍ଧ, ଜୈନ ବା ଶକ୍ତି ମୂର୍ତ୍ତି ଥିବାର ନିଃସନ୍ଦେହ । ଏ ଦେଶରେ ବୌଦ୍ଧ ଓ ଜୈନ ଧର୍ମାବଲମ୍ବୀମାନେ ଥିବା ସମୟରେ ଅସଂଖ୍ୟ ପ୍ରସ୍ତର ଓ ଧାତୁନିର୍ମିତ ବୁଦ୍ଧ ଏବଂ ତୀର୍ଥଙ୍କର ମୂର୍ତ୍ତି ଥିଲା । କାଳକ୍ରମେ ସେହି ସେହି ଧର୍ମାବଲମ୍ବୀ ଏ ଦେଶରୁ ଅଦୃଶ୍ୟ ହେବାରୁ କିମ୍ବା ଅନ୍ୟ ହିନ୍ଦୁ ଜାତି ସଙ୍ଗେ ମିଶି ନିଜର ଜାତିଗତ ଧର୍ମବିଶ୍ୱାସ ହରାଇବାରୁ ସେମାନଙ୍କର ଏ ଶ୍ରେଣୀର ପୂଜିତ ପ୍ରତିମାଗୁଡିକ ହିନ୍ଦୁମାନଙ୍କଦ୍ୱାରା ଗ୍ରାମଦେବୀ-ରୂପେ ପୂଜିତ ହେଉଥିବାର ଦେଖାଯାଏ । ଅସଂଖ୍ୟ ବୁଦ୍ଧ ଓ ଜୈନ ମୂର୍ତ୍ତି ଉପରେ ଛେଳି, ମେଣ୍ଢା ଓ କୁକୁଡ଼ା ରକ୍ତ ଢଳାଯାଉଅଛି । ଯେଉଁମାନେ ଏହି ମୂର୍ତ୍ତିଗୁଡିକର ଗଠନ-ପ୍ରଣାଳୀ ଜାଣନ୍ତି, ସେମାନେ ତନ୍ନ ତନ୍ନ କରି ଦେଖିଲେ ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରୁ ଏ ଶ୍ରେଣୀ ମୂର୍ତ୍ତି ଖୋଜି ପାଇବେ ବୋଲି ଆଶା କରାଯାଏ ।

୯ । ଅଷ୍ଟଚଣ୍ଡୀ—ପ୍ରୋକ୍ତ ସବୁ ମୂର୍ତ୍ତି ବ୍ୟତୀତ ଉତ୍କଳର ନିମ୍ନ ସ୍ଥାନଗୁଡିକରେ ଥିବା ଦେବୀ ମୂର୍ତ୍ତିଗୁଡିକୁ 'ଅଷ୍ଟଚଣ୍ଡୀ' କୁହାଯାଏ ।

୧—ବାଣପୁରରେ ଭଗବତୀ
୨—ଭାବଠେପୁରରେ ମଙ୍ଗଳା
୩—ପୁରୀରେ ବିମଳା
୪—ଝଙ୍କଡ଼ରେ ଶାରଳା
୫—ଯାଜପୁରରେ ବିରଜା
୬—ବାଙ୍କୀରେ ଚର୍ଚ୍ଚିକା
୭—ଡାଳକେରପୁରରେ ହିଙ୍ଗୁଳା
୮—ସମ୍ବଲପୁରରେ ସମଲେଇ

ଏହି ଅଷ୍ଟଚଣ୍ଡୀଙ୍କୁ 'ପରମ ବୈଷ୍ଣବୀ' ମଧ୍ୟ କହନ୍ତି । ସମ୍ଭବତଃ ଉତ୍କଳରେ ବୈଷ୍ଣବ ଧର୍ମ ପ୍ରଚାରିତ ହେବା ପରେ ଅର୍ଥାତ୍ ୧୬ଶ ଖ୍ରୀଷ୍ଟାବ୍ଦରେ ଏହି ମୂର୍ତ୍ତିଗୁଡ଼ିକ ପ୍ରତିଷ୍ଠା ପାଇଥିଲେ । ସପ୍ତମାତୃକା ପରି ଏହି ଅଷ୍ଟଚଣ୍ଡୀଙ୍କର ଗଠନ-ପ୍ରଣାଳୀ ଏକାପରି ଦେଖାଯାଏ ନାହିଁ । କେତୋଟି ମୂର୍ତ୍ତି ଅତି ସୁନ୍ଦର ଓ ଚିକ୍କଣ ଦେଖାଯାଏ; କିନ୍ତୁ ଅନ୍ୟ-ଗୁଡ଼ିକ ହଳଦୀ ଓ କୁଙ୍କୁମଦ୍ୱାରା ଆବୃତ ଥିବାରୁ ସେତେ ସ୍ପଷ୍ଟ ଦେଖାଯାଏ ନାହିଁ ।

୧୦ । ଅନ୍ୟାନ୍ୟ ଦେବଦେବୀ—ଆଜିକାଲି ଉତ୍କଳର ପ୍ରତ୍ୟେକ ପୁର-ପଲ୍ଲୀରେ ଅସଂଖ୍ୟ ଦେବଦେବୀଙ୍କର ପ୍ରସ୍ତରମୂର୍ତ୍ତି ଦେଖିବାକୁ ପାଉ । ଏହି ଦେବ-ଦେବୀଙ୍କର ଭିନ୍ନ ଭିନ୍ନ ନାମ ମଧ୍ୟ ଥିବାର ଦେଖାଯାଏ । ଆଧୁନିକ ଯୁଗରେ ଭିନ୍ନ ଭିନ୍ନ ଧାତୁରେ ମୂର୍ତ୍ତିମାନ ତିଆରି ହେବା ସୁବିଧା ଥିବାରୁ ଏ ଶ୍ରେଣୀ ଦେବଦେବୀଙ୍କର ସଂଖ୍ୟା ଦିନକୁ ଦିନ ବୃଦ୍ଧିଲାଭ କରୁଅଛି; କିନ୍ତୁ ଏହି ମୂର୍ତ୍ତିଗୁଡ଼ିକ ଉତ୍କଳ ବାହାରେ ତିଆରି ହେଉ-ଥିବାରୁ ଏଥିରେ ଉତ୍କଳୀୟ ଶିଳ୍ପୀଙ୍କର କୌଣସି ବିଶେଷତ୍ୱ ଦେଖାଯାଏ ନାହିଁ ।

---

## ଉତ୍କଳୀୟ ଗୁମ୍ଫା, ମନ୍ଦିର ଓ ପ୍ରତିମା ପାଇଁ ବ୍ୟବହୃତ ଉପାଦାନ

"ଉତ୍କଳରେ ଶିଳ୍ପ ସ୍ଥାପତ୍ୟର କ୍ରମବିକାଶ" ଅଧ୍ୟାୟରେ ବର୍ଣ୍ଣିତ ହୋଇ ଅଛି ଯେ, ଏ ଦେଶର ପ୍ରାଚୀନ ଶିଳ୍ପୀମାନେ ନିଜର ଶିଳ୍ପକାର୍ଯ୍ୟମାନ କରିବା ପାଇଁ ମାଟିଠାରୁ ଆରମ୍ଭ କରି ଇଟା, ପ୍ରସ୍ତର, କାଠ ଓ ଲୁହା ପ୍ରଭୃତି ଉପାଦାନ ବ୍ୟବହାର କରିଥିଲେ । କେବଳ ମାଟି ଓ କାଠର ଶିଳ୍ପକାର୍ଯ୍ୟକୁ ବାଦ୍ ଦେଲେ ଅନ୍ୟ ସବୁ ଉପାଦାନରେ ନିର୍ମିତ ହୋଇଥିବା ପ୍ରାଚୀନ ଶିଳ୍ପସ୍ଥାପତ୍ୟର ନମୁନା ଆଜିକାଲି ଆମ୍ଭେମାନେ ଏ ଦେଶର ସ୍ଥାନେ ସ୍ଥାନେ ଦେଖିଥାଉଁ । ଏପରିକି ପୂର୍ବକଥିତ ଶିଶୁପାଳ ଗଡ଼ ଓ ଧଉଳି ଅଞ୍ଚଳରେ ପ୍ରାଚୀନ ମାଟିର ମୁଦ୍ରା ମଧ୍ୟ ଆବିଷ୍କୃତ ହୋଇଅଛି । ପ୍ରାଚୀନ ଇଟାର ମନ୍ଦିର, ବାନ୍ଧ, ଓ ଗଡ଼ର ଭଗ୍ନାବଶେଷ ପ୍ରାଚୀ ନଦୀର କୂଳ ପାଖରେ ଦେଖାଯାଏ । ଅଧିକାଂଶ ପ୍ରାଚୀନ

ମନ୍ଦିର, ପ୍ରତିମୂର୍ତ୍ତି ଓ ଗୁମ୍ଫାଗୁଡ଼ିକ ପ୍ରସ୍ତରରେ ନିର୍ମିତ ବା ପ୍ରସ୍ତର ଦେହରେ ଖୋଦିତ ହୋଇଅଛି । ଲୁହାର ଅଣ୍ଟ ବଡ଼ ବଡ଼ କଣ୍ଟି ମଧ୍ୟ ଭୁବନେଶ୍ୱର, ପୁରୀ ଓ କୋଣାର୍କ ମନ୍ଦିରରେ ଦେଖିବାକୁ ପାଉଁ । ଏ ସବୁ ଶ୍ରେଣୀର ପ୍ରାଚୀନ କୀର୍ତ୍ତିଗୁଡ଼ିକୁ ଦେଖିଲେ ସେକାଳର ଶିଳ୍ପୀମାନେ ମାଟି, ଇଟା, ପଥର, କାଠ ଓ ଲୁହାର ସମସ୍ତ ପ୍ରତିମୂର୍ତ୍ତି, ଦେବମନ୍ଦିର ପ୍ରଭୃତି ନିର୍ମାଣ କରୁଥିଲେ ବୋଲି ବୁଝାଯାଇ ପାରେ ।

ପ୍ରାଚୀନ ଦେବମନ୍ଦିର ଓ ଗୁମ୍ଫାରେ ଯେଉଁ ପ୍ରସ୍ତର ଦେଖାଯାଏ, ସେଗୁଡ଼ିକୁ ନିମ୍ନ କେତେକ ଭାଗରେ ବିଭକ୍ତ କରାଯାଇ ପାରେ ।

୧ ତାଳମ୍ବା ପଥର }—(କ) ଶୁକ୍ଳ ତାଳମ୍ବା
(ଖ) ରଙ୍ଗ ତାଳମ୍ବା

୨ ସ୍ଫଟିକଶ୍ରେଣୀୟ ପଥର } (କ) ରଙ୍ଗ
(ଖ) ହଳଦିଆ
(ଗ) ଚାଇଆ

୩ କନ୍ଦାପଥର—(କ) ଖଣ୍ଡିଆ କନ୍ଦା (୧) ଠାଣ ଖଣ୍ଡିଆ କନ୍ଦା (୨) ଜରଜା ଖଣ୍ଡିଆ କନ୍ଦା ।

(ଖ) ବଗଡ଼ା କନ୍ଦା (୧) ସରୁ, (୨) ମୋଟା ।

୪ ମାଙ୍କଡ଼ା ପଥର—(କ) ମେଣ୍ଢା ଆଖିଆ, (ଖ) ମୃଗଗର

୫ ବଉଳମାଳା ପଥର, ୬ କୁଣ୍ଡା ପଥର

୭ ମୁଗୁନି ପଥର ( ନୀଳଗିରିରେ ପ୍ରଚୁର ମିଳେ । )

ଭୁବନେଶ୍ୱର ଓ ପୁରୀ ଦେଉଳର କାନ୍ଥ ଓ ପ୍ରତିମୂର୍ତ୍ତିଗୁଡ଼ିକ କନ୍ଦା, ମାଙ୍କଡ଼ା ବଉଳମାଳା ଓ କୁଣ୍ଡା ପଥରରେ ନିର୍ମିତ । ଅଳ୍ପ କେତୋଟି ପ୍ରତିମୂର୍ତ୍ତି କଳା ମୁଗୁନି ପଥରରେ ନିର୍ମିତ ହୋଇଥିବାର ଦେଖାଯାଏ । କୋଣାର୍କ ମନ୍ଦିରରେ ପ୍ରଚୁର ମୁଗୁନି ପଥର ବ୍ୟବହାର କରିଥିଲେ ପ୍ରଥମଶ୍ରେଣୀ ପ୍ରସ୍ତରଗୁଡ଼ିକ ଖରା ଓ ବର୍ଷା ତାପରେ କ୍ରମଶଃ ଗୁଣ୍ଡ ହେଉଅଛି; କିନ୍ତୁ କଳା ମୁଗୁନି ସେପରି ଗୁଣ୍ଡ ହୁଏ ନାହିଁ । ଏହି କାରଣରୁ ଏତେ ଦୀର୍ଘକାଳ ପ୍ରଚଣ୍ଡ ଖରା ଓ ବର୍ଷା ତାପ ଖାଇ ସୁଦ୍ଧା କୋଣାର୍କ ମନ୍ଦିରର ପ୍ରତିମୂର୍ତ୍ତି-ଗୁଡ଼ିକ ଅକ୍ଷୁଣ୍ଣ ହୋଇ ରହିଅଛି ।

ଭୁବନେଶ୍ୱର ନିକଟବର୍ତ୍ତୀ ଖଣ୍ଡଗିରି ଓ ଉଦୟଗିରି ପର୍ବତର ଗୁମ୍ଫାଗୁଡ଼ିକ କନ୍ଦା ଓ କୁଣ୍ଡା ପଥରରେ ଖୋଳାଯାଇଛି । ଏହି କାରଣରୁ ଏହି ଗୁମ୍ଫାଗୁଡ଼ିକ ବର୍ଷା-

ପାଣି ଖାଇ କ୍ରମଶଃ ନଷ୍ଟ ହେଉଅଛି । ନିକଟରେ ଏହି ଗୁମ୍ଫାଗୁଡ଼ିକର ବିଶେଷ ତତ୍ତ୍ୱ ନେବା ପାଇଁ ସରକାର ଯତ୍ନ କରୁଛନ୍ତି । ଏଠାର ସବୁ ପ୍ରାଚୀନ କୀର୍ତ୍ତି ଅକ୍ଷୁଣ୍ଣ ଭାବରେ ରଖିବା ନିମନ୍ତେ ଏଗୁଡ଼ିକ ଉପରେ କୌଣସି ଭାଙ୍ଗ ବା ଯୋଡ଼ଣୀ କରିବାକୁ ହେବ । ତା ନ ହେଲେ ଉତ୍କଳର ଅତି ପ୍ରାଚୀନ କୀର୍ତ୍ତି ଖରା ଓ ବର୍ଷା ଯୋଗୁଁ ଏକାବେଳକେ ନଷ୍ଟ ହେବା ସମ୍ଭବ ।

ଲେପ—ପ୍ରାଚୀନ ମନ୍ଦିରର କାନ୍ଥଗୁଡ଼ିକ ନିର୍ମାଣ କରିବା ପାଇଁ ଶିଳ୍ପୀମାନେ କୌଣସି ଚୂନ ବା ସିମେଣ୍ଟ ପଳସ୍ତରା ବ୍ୟବହାର କରୁ ନ ଥିଲେ, କିନ୍ତୁ ଶିଳ୍ପଶାସ୍ତ୍ରରେ ବର୍ଣ୍ଣିତ ନିମ୍ନ କେତେକ ଅଠା ବା ଲେପ ପ୍ରାୟ ଅଧିକାଂଶ ମନ୍ଦିରର କାନ୍ଥରେ ଲଗାଇ-ଥିବାର ଜଣାଯାଏ । ଲେପ ଦୁଇ ପ୍ରକାର—

୧ମ । ବଜ୍ରଲେପ—ଶାଳ, କଇଥ, ଶିମୁଳି ଫୁଲ, ବଟ, ଅର୍ଜ୍ଜୁନ ବୃକ୍ଷର ଛେଲି ଓ ଅର୍କ, ସର୍ଜ୍ଜ, ଝୁଣା, କେନ୍ଦୁ ଓ ଦେବଦାରୁ ରସ ପ୍ରଭୃତି ଏକତ୍ର ମିଶାଇ ଏହି ଲେପ ତିଆରି ହୁଏ । ସାମାନ୍ୟ ଗରମ କରି ଏହି ଲେପ ମନ୍ଦିରର କାନ୍ଥ, ଶିବଲିଙ୍ଗ ଓ କୂଅ କାନ୍ଥରେ ଦିଆଯାଏ । ଥରେ ଦୁଇ ଥର ଏହାକୁ ଲଗାଇଲେ ଶତାଧିକ ବର୍ଷ ଯାଏ ଏହି ଲେପ ଛାଡ଼ିବା ସମ୍ଭବ ନୁହେଁ ।

୨ୟ । ସୁଧାଲେପ—ଲକ୍ଷା ଓ ବେଲ ଫଳର ଭିତର ଶଶ ମିଶି ଏହି ଲେପ ତିଆରି ହୁଏ ।

ଆଜିକାଲି ଭୁବନେଶ୍ୱରର ଶିଳ୍ପୀମାନେ ଅନ୍ୟ ଏକପ୍ରକାର ନୂତନ ଲେପ ତିଆରି କରନ୍ତି—ଏହାକୁ ବଜ୍ରଲ କହନ୍ତି । ନୂଆ ଗୁଡ଼ର ଗୁଣ୍ଡ, ସୋରିଷ ତେଲ ଓ ଝୁଣା ମିଶି ବଜ୍ରଲ ତିଆରି ହୁଏ । ଏହି ଲେପ କାନ୍ଥରେ ବା ପ୍ରତିମୂର୍ତ୍ତିଗୁଡ଼ିକରେ ଲଗାଇଲେ ପ୍ରାୟ ଶହେବର୍ଷ ଯାଏ ଅକ୍ଷୁଣ୍ଣ ଭାବରେ ରହେ ।

ଉତ୍କଳୀୟ ଶିଳ୍ପୀମାନେ ପ୍ରତିମା ପ୍ରଭୃତି ଖୋଦିତ ଚିତ୍ରକାର୍ଯ୍ୟ ଉପରେ କୌଣସି ରଙ୍ଗ ବ୍ୟବହାର କରି ନାହାନ୍ତି । ରଙ୍ଗ ଦେବା ପ୍ରଥା ପ୍ରାଚୀନ ଭାରତୀୟ ଶିଳ୍ପଶାସ୍ତ୍ରରେ ଅଛି । କିନ୍ତୁ ସେପରି ରଙ୍ଗ ବ୍ୟବହାର କଲେ ପ୍ରକୃତ ଭାସ୍କର କାର୍ଯ୍ୟର ମହତ୍ତ୍ୱ ଦେଖାଯାଏ ନାହିଁ । ଏହି ଉଦ୍ଦେଶ୍ୟରେ ସେକାଳର ଶିଳ୍ପୀମାନେ କୌଣସି ରଙ୍ଗ ବ୍ୟବହାର କରି ନ ଥିଲେ ।

ଉତ୍କଳର ପ୍ରତ୍ୟେକ ମନ୍ଦିରରେ ପୂଜା ପାଉଥିବା ଠାକୁରଙ୍କ ପ୍ରତିମୂର୍ତ୍ତି ବ୍ୟତୀତ ପ୍ରାୟ ସବୁ ମନ୍ଦିରରେ ସେହି ଠାକୁରଙ୍କର 'ଚଳନ୍ତି ପ୍ରତିମା' ଥାଏ । ଏହି ଚଳନ୍ତି

ପ୍ରତିମାଗୁଡ଼ିକ ପିତ୍ତଳ, ତମ୍ବା, ରୁପା କିମ୍ବା ସୁନା ପ୍ରଭୃତି ଧାତୁରେ ନିର୍ମିତ ହୋଇ-ଥାଏ; କିନ୍ତୁ ସେପରି କୌଣସି ଧାତୁନିର୍ମିତ ପ୍ରତିମା ପ୍ରାଚୀନ ଉତ୍କଳରେ ଥିଲା କି ନାହିଁ ସନ୍ଦେହ। ଆଜିକାଲି ଏ ଦେଶରେ ଥିବା ସବୁଶ୍ରେଣୀ ଧାତୁନିର୍ମିତ ପ୍ରତିମା ବଙ୍ଗ ଓ ମାନ୍ଦ୍ରାଜରେ ନିର୍ମିତ ହୁଏ । ଉତ୍କଳର କେତେକ ସ୍ଥାନରେ ଭୂଗର୍ଭରୁ ମିଳିଥିବା ବୌଦ୍ଧ ଓ ଜୈନ ମୂର୍ତ୍ତିଗୁଡ଼ିକ ମଧ୍ୟ ତମ୍ବା ବା ପିତ୍ତଳ ପ୍ରଭୃତି ଧାତୁରେ ନିର୍ମିତ ହୋଇଥିବାର ଦେଖାଯାଏ । ଏଗୁଡ଼ିକ କେଉଁଠାରେ ନିର୍ମିତ ହୋଇଥିଲା, ତାହା ସ୍ପଷ୍ଟ ଜାଣି ହେବା ପାଇଁ କୌଣସି ଲିପି ବା ବର୍ଣ୍ଣନା ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ ।

ଶିଳ୍ପଶାସ୍ତ୍ର ଅନୁସାରେ ଦେବମନ୍ଦିରର ଶମାନ ପ୍ରଭୃତି ଯେଉଁ ଉପାଦାନରେ ନିର୍ମିତ ହୁଏ, ସେହି ଉପାଦାନକୁ ନେଇ ଏ ଦେଶର ମନ୍ଦିରଗୁଡ଼ିକୁ ଯଥାକ୍ରମେ ଶୁଦ୍ଧ, ମିଶ୍ରିତ ବା ସଂକୀର୍ଣ୍ଣ ନାମ ଦିଆଯାଇଛି ।

ଶୁଦ୍ଧ ମନ୍ଦିର—ଏ ଶ୍ରେଣୀ ମନ୍ଦିର କେବଳ ଗୋଟିଏ ଶ୍ରେଣୀର ଉପାଦାନ । ଯଥା, କେବଳ ଇଟା କିମ୍ବା କେବଳ ପ୍ରସ୍ତରରେ ନିର୍ମିତ ହୁଏ । ଏ ଶ୍ରେଣୀ ମନ୍ଦିର ଅତି ଉତ୍କୃଷ୍ଟ ଅଟେ ।

ମିଶ୍ରିତ ମନ୍ଦିର—ଏଥିରେ ଦୁଇ ବା ତହିଁରୁ ଅଧିକ ଉପାଦାନ । ଯଥା, ଇଟା, ଚୂନ, ପ୍ରସ୍ତର ପ୍ରଭୃତି ଥାଏ ।

ସଂକୀର୍ଣ୍ଣ ବା ସଂକ୍ରାମକ ମନ୍ଦିର—ଏଥିରେ ଊଣା ଚାରି ଗୋଟି ବା ତହିଁରୁ ଅଧିକ ଉପାଦାନ । ଯଥା, ଇଟା, ପ୍ରସ୍ତର, ଚୂନ ଓ କାଠ ପ୍ରଭୃତି ଥାଏ ।

ଉତ୍କଳର ଅଧିକାଂଶ ପ୍ରାଚୀନ ମନ୍ଦିର ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ଉପାଦାନରେ ନିର୍ମିତ ହୋଇଥିବାର ଦେଖାଯାଏ । ଆଧୁନିକ ଯୁଗର ମନ୍ଦିରଗୁଡ଼ିକ ତୃତୀୟ ଶ୍ରେଣୀର ଅଟେ ।

ପ୍ରତିମା ଗଠନ ପାଇଁ 'ବୃହତ୍ ସଂହିତା' ଓ 'ଶୁକ୍ରନୀତିରେ ନିମ୍ନ କେତେକ ଉପାଦାନ ବିଷୟ ବର୍ଣ୍ଣିତ ହୋଇଅଛି !

କାଠ, ମାଟି, ବାଲି, ପଙ୍କ, ପ୍ରସ୍ତର, ରୁପା, କଂସା, ସୁନା, ତମ୍ବା ଓ ସୀସ ପ୍ରଭୃତି । ଏ ସମସ୍ତ ଉପାଦାନର ପ୍ରତିମୂର୍ତ୍ତିଦ୍ୱାରା ନିମ୍ନ ଫଳ ବା ଲାଭ ହେବାର ଜଣାଯାଏ ।

କାଠ ଓ ମାଟିର ପ୍ରତିମା ଗଢ଼ିଲେ ଦୀର୍ଘାୟୁ, ସମ୍ପତ୍ତିବୃଦ୍ଧି, ବଳ ଓ ବିଜୟ ଲାଭ ହୁଏ ।

ରୌପ୍ୟ ପ୍ରତିମା ଦ୍ୱାରା ଖ୍ୟାତି ବୃଦ୍ଧି ହୁଏ ।
ତମ୍ବା ପ୍ରତିମା ଦ୍ୱାରା ଲୋକସଂଖ୍ୟା ବୃଦ୍ଧି ହୁଏ ।
ସ୍ୱର୍ଣ୍ଣ ପ୍ରତିମା ସୁଖାଦ୍ୟ ଯୋଗାଏ ।
ହୀରା ପ୍ରତିମା ଲୋକମାନଙ୍କର ମଙ୍ଗଳ କରେ ।
ପ୍ରସ୍ତର ପ୍ରତିମା ଦ୍ୱାରା ଭୂସମ୍ପତ୍ତି ବୃଦ୍ଧି ହୁଏ—ଇତ୍ୟାଦି ।
ପ୍ରତିମାଗୁଡ଼ିକର ଉପାଦାନ ଯୁଗ ଅନୁସାରେ ପରିବର୍ତ୍ତିତ ହୁଏ ।

| | |
|---|---|
| ଯଥା —ସତ୍ୟଯୁଗରେ— | ସ୍ୱର୍ଣ୍ଣ ପ୍ରତିମା |
| ତ୍ରେତାଯୁଗରେ— | ରୌପ୍ୟ ପ୍ରତିମା |
| ଦ୍ୱାପର ଯୁଗରେ— | ତମ୍ବାପ୍ରତିମା |
| କଳିଯୁଗରେ— | କଂସା ବା ମିଶ୍ରିତ ଧାତୁର ପ୍ରତିମା ହୁଏ । |

(ଶୁକ୍ରନୀତି)

ଉପର୍ଯ୍ୟୁକ୍ତ ବିଭିନ୍ନ ଧାତୁରେ ପ୍ରତିମାଗଠନ କରିବା ପାଇଁ ଶାସ୍ତ୍ରରେ ନିୟମ ଥିଲେହେଁ ଉତ୍କଳୀୟ ଶିଳ୍ପୀମାନେ ନିଜର ମନ୍ଦିର ଓ ପ୍ରତିମୂର୍ତ୍ତିଗୁଡ଼ିକୁ ଚିରସ୍ଥାୟୀ କରିବାପାଇଁ କେବଳ ପ୍ରସ୍ତରରେ ନିର୍ମାଣ କରିଥିଲେ । ପ୍ରସ୍ତର ଅତି ଶସ୍ତା ଓ ଅତି ସୁବିଧାରେ ପାଉଥିବାରୁ ଏବଂ ଧାତୁମୂର୍ତ୍ତି ଅପେକ୍ଷା ପ୍ରସ୍ତର ଦେହରେ ଅତି ସୂକ୍ଷ୍ମ ଓ ସୁନ୍ଦର କାରୁକାର୍ଯ୍ୟ କରିବା ପାଇଁ ସୁବିଧା ଥିବାରୁ ଏ ଦେଶର ଶିଳ୍ପୀମାନେ ଏହି ଉପାଦାନକୁ ହିଁ ଅଧିକ ପ୍ରଶସ୍ତ ମନେ କରି ତହିଁର ବହୁଳ ପ୍ରସାର କରିଥିଲେ !

---

## ଉତ୍କଳୀୟ ମନ୍ଦିରନିର୍ମାଣ ଓ ପ୍ରତିମାଗଠନ ପାଇଁ କେତୋଟି ନିୟମ

ମନ୍ଦିର ନିର୍ମାଣ ଓ ପ୍ରତିମାଗଠନ ପାଇଁ ଶିଳ୍ପଶାସ୍ତ୍ରରେ ଅନେକଗୁଡ଼ିଏ ନିୟମ ଦିଆଯାଇଛି । ପ୍ରାଚୀନ ଯୁଗର ଶିଳ୍ପୀମାନେ ନିଜର ନିଜତ୍ୱ ଓ ଜାତୀୟ ଭାବ ରକ୍ଷା କରିବା ନିମନ୍ତେ କେବଳ ଏହି ନିୟମଗୁଡ଼ିକୁ ହିଁ ପାଳନ କରୁଥିଲେ । ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରେ ଥିବା ଦେବମନ୍ଦିର ଓ ପ୍ରତିମୂର୍ତ୍ତିଗୁଡ଼ିକୁ ଦେଖିଲେ ଏ ଦେଶର ଶିଳ୍ପୀମାନେ ଅନ୍ୟ କୌଣସି ବୈଦେଶିକ ନିୟମକୁ ଅନୁକରଣ ନ କରି ନିଜର ଶିଳ୍ପ-ଶାସ୍ତ୍ରକୁ ହିଁ ଅକ୍ଷରେ ଅକ୍ଷରେ ଆଦର୍ଶ ବୋଲି ମାନୁଥିବାର ଜଣାଯାଏ । ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇଥିବା ପ୍ରାଚୀନ ଶିଳ୍ପଶାସ୍ତ୍ରଗୁଡ଼ିକରେ ମନ୍ଦିରନିର୍ମାଣ ଓ ପ୍ରତିମା-ଗଠନ ପାଇଁ ଯେଉଁ କେତେକ ନିୟମ ଅଛି, ତାହା ସଂକ୍ଷେପରେ ଏଠାରେ ବର୍ଣ୍ଣିତ ହେବ ।

**ମନ୍ଦିର ନିର୍ମାଣ ପାଇଁ ନିୟମ**

୧—ଭୂମି ପରୀକ୍ଷା
୨—ସ୍ଥାନ ନିର୍ଣ୍ଣୟ
୩ ଦିଗ ନିର୍ଣ୍ଣୟ
୪—ଶଙ୍କୁ ସ୍ଥାପନ
୫—ମନ୍ଦିର ନିର୍ମାଣ କାଳ
୬—ଉପାଦାନ ସଂଗ୍ରହ
୭—ମନ୍ଦିର ନିର୍ମାଣ
୮—ପ୍ରତିଷ୍ଠା
୯—ପ୍ରତିମା ସ୍ଥାପନ
୧୦—ହୋମ ଓ ଯଜ୍ଞାଦି କ୍ରିୟା

**ପ୍ରତିମା ଗଠନ ପାଇଁ ନିୟମ**

୧—ପ୍ରତିମା ପାଇଁ ଉପାଦାନ ସଂଗ୍ରହ
୨—ପ୍ରତିମ ମୂର୍ତ୍ତିର ମାପ
୩—ପ୍ରତିମାର ଭିନ୍ନ ଭାଗ ଗଠନ
୪—ଆସନ
୫—ମୁଦ୍ରା
୬ ପ୍ରତିମା ପ୍ରତିଷ୍ଠା
୭—ପ୍ରତିମା ସ୍ଥାପନ
୮—ହୋମାଦି କ୍ରିୟା

ମନ୍ଦିର ନିର୍ମାଣର ନିୟମ—ବରାହ ମିହିରଙ୍କ 'ବୃହତ୍ ସଂହିତା'ରେ ମନ୍ଦିର ନିର୍ମାଣ ପାଇଁ ଏତେଟେକ ନିୟମ ଦିଆଯାଇଛି ।

୧ମ । ପ୍ରତ୍ୟେକ ମନ୍ଦିରର ସ୍ଥାନ ନିର୍ଣ୍ଣୟ ପରେ ତାହାର କ୍ଷେତ୍ରଫଳକୁ ସ୍ଥିର କରିବାକୁ ହେବ । ସେହି କ୍ଷେତ୍ରଫଳକୁ ଜାଣିବା ପରେ ମନ୍ଦିରର ଦ୍ୱାର ଓ ଅନ୍ୟାନ୍ୟ ଭାଗ ଯଥାସ୍ଥାନରେ ରଖିବ ।

୨ୟ । ମନ୍ଦିରର ଉଚ୍ଚତା ଚୌଡ଼ାର ଦୁଇ ଗୁଣ ରହିବ ଏବଂ ତାହାର ପାଦରୁ ଉପରକୁ ଏକତୃତୀୟାଂଶ ରହିବ ।

୩ୟ । ମନ୍ଦିରର ବିମାନ ( ଠାକୁର ରହିବା ସ୍ଥାନ ) ଲମ୍ବାର ଅଧେ ରହିବ ଏବଂ ତାହାର ବାହ୍ୟଗୃହର ସମ୍ପୂର୍ଣ୍ଣ ପୃଥକ୍ ହୋଇ ନିର୍ମିତ ହେବ ।

୪ର୍ଥ । ଦ୍ୱାରବନ୍ଧ (ଚୌକାଠ) ବାହ୍ୟର ମଧ୍ୟଭାଗରେ ରହିବ ।

୫ମ । ପ୍ରତ୍ୟେକ ଦ୍ୱାରବନ୍ଧରେ ୩।୫।୭ ବା ୯ଟି ଭିନ୍ନ ଭାଗ ରହିବ ଏବଂ ନିମ୍ନ ଭାଗର ଚତୁର୍ଥ ସ୍ଥାନରେ ଦ୍ୱାରପାଳମାନଙ୍କୁ ରଖିବ ।

୬ଷ୍ଠ । ମନ୍ଦିରର ବାହାର କାନ୍ଥରେ ଭିନ୍ନ ପଶୁପକ୍ଷୀଙ୍କ ପ୍ରତିମୂର୍ତ୍ତି ବା ଚିତ୍ର ରହିବ ।

୭ମ । ଠାକୁରଙ୍କ ପ୍ରତିମୂର୍ତ୍ତି ଓ ସିଂହାସନର ଉଚ୍ଚତା ଦ୍ୱାରର ଉଚ୍ଚତା ସଙ୍ଗେ ସମାନ ରହିବ କିମ୍ବା ତାହାଠାରୁ ଏକଅଷ୍ଟମାଂଶ କମ୍ ରହିବ—ଇତ୍ୟାଦି ।

ଉତ୍କଳର ଶିଳ୍ପଚାତୁର୍ଯ୍ୟ —

୨୫—ଉଦୟଗିରିର ରାଣୀହଂସପୁର



୨୬ – ଛିଡ଼ା ଓ ପଦ୍ମାସନ ସୂର୍ଯ୍ୟମୂର୍ତ୍ତି—ଖିଚିଙ୍ଗ

ଉତ୍କଳର ଶିଳ୍ପଚାତୁର୍ଯ୍ୟ—



୧୭—ମାନବାକୃତି ଶିବମୂର୍ତ୍ତି

—ଖିଚଙ୍ଗ

୧୮—ନଟରାଜ ଶିବ

ପ୍ରତିମା ଗଠନର ନିୟମ—ଦେବଦେବୀଙ୍କ ପ୍ରତିମା ଗଠନ ପାଇଁ ଶିଳ୍ପ ଶାସ୍ତ୍ରରେ ଅନେକଗୁଡ଼ିଏ ନିୟମ ଦିଆଯାଇଛି । ପ୍ରତ୍ୟେକ ଶିଳ୍ପୀଙ୍କୁ ଏହି ନିୟମଗୁଡ଼ିକୁ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ହେବ । ଦେବଦର୍ଶନ କରିବା ଅର୍ଥ ଦେବ-ପ୍ରତିମାଙ୍କୁ ଦେଖି ଯୋଗ ଓ ଧ୍ୟାନ ଲାଭ କରିବା ଓ ତଦ୍ଦ୍ୱାରେ ମୋକ୍ଷ ପାଇବା । ଅତଏବ ପ୍ରତ୍ୟେକ ପ୍ରତିମା ଏପରି ଭାବରେ ଗଢ଼ିବାକୁ ହେବ, ଯେପରି ତାହାକୁ ଦେଖିଲେ ଦର୍ଶକ ହୃଦୟରେ ଗଭୀର ଭକ୍ତି ଜାତ ହେବ ।

'ଯୋଗ ଶାସ୍ତ୍ର' ଅନୁସାରେ ପ୍ରତ୍ୟେକ ପ୍ରତିମୂର୍ତ୍ତିର ଗଠନରେ "ଆସନ" ଓ ମୁଦ୍ରାର ସଙ୍କେତ ଦେଖାଯାଏ । ଘେରେଣ୍ଡ ସଂହିତା ନାମକ ପ୍ରାଚୀନ ଶିଳ୍ପଗ୍ରନ୍ଥରେ ଶିବଙ୍କର ୮୪ ଲକ୍ଷ ଆସନ ଥିବାର ବର୍ଣ୍ଣିତ ଅଛି । ତନ୍ମଧ୍ୟରୁ ୩୨ ଗୋଟି ଆସନ ପ୍ରଧାନ ଅଟେ । ଏହି ୩୨ ଗୋଟି ମଧ୍ୟରୁ ନିମ୍ନ ୫ ପ୍ରକାର ଆସନ ଅଧିକାଂଶ ପ୍ରତି-ମୂର୍ତ୍ତିଙ୍କଠାରେ ଦେଖାଯାଏ—

୧ । ପଦ୍ମାସନ—ଉତ୍କଳର ଅଧିକାଂଶ ପ୍ରତିମୂର୍ତ୍ତି ପଦ୍ମାସନ ଉପରେ ବସିଥିବାର କିମ୍ବା ଛିଡ଼ା ହୋଇଥିବାର ଦେଖାଯାଏ ।

୨ । ଯୋଗାସନ—ନବଗ୍ରହ ମୂର୍ତ୍ତିଗୁଡ଼ିକ ଏହି ଆସନରେ ଥିବାର ଦେଖାଯାଏ । ବୁଦ୍ଧ ଓ ଜୈନ ମୂର୍ତ୍ତି ମଧ୍ୟରୁ କେତୋଟି ମୂର୍ତ୍ତି ଯୋଗାସନରେ ଥିବାର ଦେଖାଯାଏ ।

୩ । ବୀରାସନ—ପ୍ରାଚୀନ ଯୋଦ୍ଧା ବା ବୀର ପୁରୁଷମାନଙ୍କର ପ୍ରତିମୂର୍ତ୍ତି ଏହି ଆସନରେ ନିର୍ମିତ ହୋଇଥାଏ । ଏ ଶ୍ରେଣୀର କେତେକ ମୂର୍ତ୍ତି ଭୁବନେଶ୍ୱର ଓ କୋଣାର୍କ ମନ୍ଦିର ଦେହରେ ଏବଂ ଉଦୟଗିରି ଗୁମ୍ଫାଗୁଡ଼ିକରେ ଦେଖାଯାଏ ।

୪ । ସ୍ୱସ୍ତିକାସନ—ଭକ୍ତମାନେ ପ୍ରଭୁଙ୍କଠାରେ ନିଜର ଆତ୍ମସମର୍ପଣ କଲାବେଳେ ଏପରି ଆସନରେ ବସିଥିବାର ଦେଖାଯାନ୍ତି । ପ୍ରତ୍ୟେକ ପ୍ରାଚୀନ ମନ୍ଦିରରେ ଏ ଶ୍ରେଣୀର ମୂର୍ତ୍ତି ଦେଖାଯାଏ ।

୫ । ବଜ୍ରାସନ—ଛିଡ଼ା ହୋଇଥିବା ଲମ୍ବ ପ୍ରତିମୂର୍ତ୍ତିଗୁଡ଼ିକର ଏପରି ଆସନ ଦେଖାଯାଏ ।

ମୁଦ୍ରା—ଯୋଗଶାସ୍ତ୍ରରେ ୨୫ ପ୍ରକାର ମୁଦ୍ରାର ବର୍ଣ୍ଣନା ଅଛି । କିନ୍ତୁ ସାଧା-ରଣ ଶିଳ୍ପଶାସ୍ତ୍ରରେ କେବଳ ନିମ୍ନ ଦୁଇଟି ମୁଦ୍ରାର ପରିଚୟ ଦିଆଯାଇଛି ।

୧ । ଅଭୟ ମୁଦ୍ରା—ପ୍ରତିମୂର୍ତ୍ତିର ଡାହାଣ ହାତ ଭକ୍ତକୁ ଅଭୟ ଦେବା ଭଳି ଯାମାନ୍ୟ ଟେକା ହୋଇଥାଏ । ଅଧିକାଂଶ ଶକ୍ତିମୂର୍ତ୍ତିରେ ଏହି ମୁଦ୍ରା ଦେଖାଯାଏ ।

୨ । ବରଦିଆ ମୁଦ୍ରା—ଭକ୍ତ ପ୍ରତି ସନ୍ତୁଷ୍ଟ ହୋଇ ତାହାଙ୍କୁ ବର ଦେବା ପାଇଁ ପ୍ରତିମାର ଡାହାଣ ହାତ ଉପରକୁ ଟେକା ରହେ ।

ଦେବଦେବୀଙ୍କ ଅଲଙ୍କାର ଓ ଅଙ୍ଗବର୍ଣ୍ଣନା—ପ୍ରାଚୀନ ତନ୍ତ୍ର, ଧର୍ମସୂତ୍ର ଓ ଶିଳ୍ପଶାସ୍ତ୍ରରେ ପ୍ରତ୍ୟେକ ଦେବଦେବୀଙ୍କର ଅଙ୍ଗବର୍ଣ୍ଣନା ଓ ତେଉଁ ଅଙ୍ଗରେ କେଉଁ ଅଳଙ୍କାର ରହିବା କଥା, ସେ ସବୁ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ଉତ୍କଳରେ ଯେଉଁ ସବୁ ପ୍ରାଚୀନ ପ୍ରତିମୂର୍ତ୍ତି ଦେଖାଯାଏ, ସେଗୁଡ଼ିକରେ ଥିବା ଖୋଦିତ ଅଳଙ୍କାର-ଗୁଡ଼ିକୁ ଦେଖିଲେ ଏ ଦେଶର ଶିଳ୍ପୀମାନେ ଉକ୍ତ ଗ୍ରନ୍ଥଗୁଡ଼ିକୁ ଉତ୍ତମରୂପେ ଶିକ୍ଷା କରି ସେହି ଅନୁସାରେ ପ୍ରତ୍ୟେକ ପ୍ରତିମୂର୍ତ୍ତିର ଅଙ୍ଗପ୍ରତ୍ୟଙ୍ଗ ଓ ତହିଁରେ ଥିବା ଅଳଙ୍କାର-ଗୁଡ଼ିକୁ ଖୋଦିତ କରିଥିବାର ନିଃସନ୍ଦେହରେ କୁହାଯାଇ ପାରେ । ନିମ୍ନରେ ପ୍ରତିମା-ଗୁଡ଼ିକର ଅଙ୍ଗବର୍ଣ୍ଣନା ଓ ଅଳଙ୍କାର ପରିଚୟ ଦିଆଯିବ ।

ଅଙ୍ଗବର୍ଣ୍ଣନା—୧ । ପ୍ରତିମାଗୁଡ଼ିକର ମୁଖ ଚନ୍ଦ୍ରମଣ୍ଡଳ ପରି ଦେଖାଯିବ ।
୨ । ଓଠଗୁଡ଼ିକ ପ୍ରବାଳ ବା ପଦ୍ମିଳା ବର୍ଣ୍ଣ ହେବ ( ସ୍ତ୍ରୀମାନଙ୍କର ବିମ୍ବାଧର )
୩ । ନାକ—ତିଳଫୁଲ ପରି ଦେଖାଯିବ ।
୪ । ଆଖି—ପଦ୍ମ ସଦୃଶ (ପଦ୍ମନେତ୍ର)
୫ । ଦେହରେ ଅନେକଗୁଡ଼ିଏ ରେଖାଙ୍କ ଥିବ ।
୬ । ହାତ ଓ ବାହୁର ବର୍ଣ୍ଣ ମେଘବର୍ଣ୍ଣ ଥିବ ।
୭ । ଅଙ୍ଗଗୁଡ଼ିକ କେତକୀ ପୁଷ୍ପ ପରି ଗଢ଼ାଯିବ ଇତ୍ୟାଦି ।

ଅଳଙ୍କାର—ଦେବଦେବୀଙ୍କ ପ୍ରତିମୂର୍ତ୍ତି ଦେହରେ ଥିବା ଅଳଙ୍କାରଗୁଡ଼ିକ ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ।

---

## ଉତ୍କଳୀୟ ଶିଳ୍ପ ଶାସ୍ତ୍ର

ଉତ୍କଳର ବିଭିନ୍ନ ପୁରପଲ୍ଲୀରେ ଅସଂଖ୍ୟ କାରୁକାର୍ଯ୍ୟପୂର୍ଣ୍ଣ ପ୍ରାଚୀନ ମନ୍ଦିର ଓ ଦେବଦେବୀଙ୍କ ପ୍ରତିମୂର୍ତ୍ତି ଦେଖାଯାଏ । କୋଣାର୍କର ସୂର୍ଯ୍ୟମନ୍ଦିର ବାର ଶହ ବଢ଼େଇଙ୍କ ହାତ୍‌ ନିର୍ମିତ ହୋଇଥିବାର କିମ୍ବଦନ୍ତୀ ଅଛି । କିନ୍ତୁ ଏ ପର୍ଯ୍ୟନ୍ତ ସେହି ସୁନ୍ଦର

କୌଣସି ବିଶ୍ୱାସଯୋଗ୍ୟ ଓ ସଂପୂର୍ଣ୍ଣ "ଶିଳ୍ପଶାସ୍ତ୍ର" ଖଣ୍ଡିଏ ଆମ୍ଭେମାନେ ପାଇ ନାହୁଁ । ବାର ଶତ ବର୍ଷରୁ ଯେଉଁ ଅସ୍ତ୍ର ଧରି କୋଣାର୍କ ମନ୍ଦିରର ସୂକ୍ଷ୍ମ କାର୍ଯ୍ୟଗୁଡ଼ିକ କରୁ-ଥିଲେ, ସେହି ଅସ୍ତ୍ରରୁ ଖଣ୍ଡିଏ ସୁଦ୍ଧା ନମୁନା ଏ ଦେଶରେ ରଖାଯାଇ ନାହିଁ । 'ଉତ୍କଳୀୟ ଶିଳ୍ପଶାସ୍ତ୍ର' ବୋଲି ଯାହା କିଛି ବଜାରରେ ମିଳେ ବା ପ୍ରାଚୀନ ଶିଳ୍ପୀଙ୍କ ବଂଶଧର-ମାନେ ସାଇତି ରଖିଛନ୍ତି, ସେଗୁଡ଼ିକ ଅସଂପୂର୍ଣ୍ଣ ବା ବିକୃତ ଦେଖାଯାଏ । ଅସଂଖ୍ୟ ଗ୍ରନ୍ଥ ପଡ଼ୋଶୀ "ଐତିହାସିକ ସଂଘ" ବା ଗ୍ରନ୍ଥକର୍ତ୍ତାଙ୍କ ହାତକୁ ଯାଇ ଇତସ୍ତତଃ ହୋଇ ପଡ଼ିଛି । ଉତ୍କଳ ବାହାରେ ଥିବା ସବୁ ପ୍ରାଚୀନ ପୋଥିଗୁଡ଼ିକୁ ସଂଗ୍ରହ କରି ତହିଁର ସାରାଂଶ କାଢ଼ିବାଯାଏ କୌଣସି ଗ୍ରନ୍ଥକୁ ପ୍ରକୃତ "ଶିଳ୍ପଶାସ୍ତ୍ର" କୁହାଯିବ କି ନାହିଁ ସନ୍ଦେହ । ଆଜିସୁଦ୍ଧା ଯେଉଁ କେତୋଟି ପୋଥି ଭିନ୍ନ ଭିନ୍ନ ସ୍ଥାନରେ ରହିଛି, ତହିଁର ସଂକ୍ଷିପ୍ତ ପରିଚୟ ନିମ୍ନରେ ଦିଆଗଲା ।

| ପୁସ୍ତକର ନାମ | ଅବସ୍ଥିତି | ବିଶେଷ ପରିଚୟ |
|---|---|---|
| ୧—'ଭୁବନ ପ୍ରବେଶ' | ବିଶ୍ୱକବି ରବୀନ୍ଦ୍ରନାଥଙ୍କ 'ବିଶ୍ୱଭାରତୀ' ପୁସ୍ତକାଗାରରେ | ପୁରୀର ବାବାଜି ମହାରଣାଙ୍କ ପୁତ୍ର ଗୋବିନ୍ଦ ମହାରଣା ଏହାର ପ୍ରଣେତା ଅଟନ୍ତି । ଏଥିରେ ଅନେକ ମନ୍ଦିରର ଗଠନ ଓ ବର୍ଣ୍ଣନା ଦିଆଯାଇଛି । |
| ୨—'ଭୁବନ ପ୍ରଦୀପ' | ଐ | ପୁରୀର ରାମ ମହାରଣାକୃତ । ୧୯୨ ପୃଷ୍ଠାର ପୋଥି । |
| ୩—'ଶିଳ୍ପ ପୋଥି' | ଐ | ପୁରୀର ନୀଳକଣ୍ଠ ମହାରଣା-କୃତ । |
| ୪—'ଭୁବନପ୍ରଦୀପ' | ଐ | କଟକ ଲକ୍ଷ୍ମଣଗିରିର ସୂର୍ଯ୍ୟ-ନାରାୟଣ ମହାରଣାକୃତ । |
| ୫— ଐ | ଐ | ପୁରୀର ଧର୍ମ ମହାରଣାକୃତ । |
| ୬— ଐ | ଐ | ଭୁବନେଶ୍ୱରର ଦାମୋଦର ମହାରଣାକୃତ । |
| ୭—'ଓଡ଼ିଆ ଶିଳ୍ପଶାସ୍ତ୍ର ଭୁବନ ପ୍ରବେଶ' | ପୁରୀରେ ଥିବା ଶ୍ରୀଯୁକ୍ତ ବୀରେନ୍ଦ୍ରନାରାୟଣ ସ୍ୱାଇଁଙ୍କ ପାଖରେ | ସଚିତ୍ର ପୋଥି । ଗ୍ରନ୍ଥକର୍ତ୍ତା ଜଣା ନାହିଁ । |

୮—'ଉତ୍କଳୀୟ ଶିଳ୍ପଶାସ୍ତ୍ର' ଢେଙ୍କାନାଳ ଉତ୍କଳସାହିତ୍ୟ ସମାଜରେ ଏହାର ପ୍ରତିଲିପି ଅଛି । ପ୍ରଣେତା—ଶ୍ରୀରାମ ମହାରଣା

୯—'ଉତ୍କଳୀୟ ଶିଳ୍ପଶାସ୍ତ୍ର' ଭୁବନେଶ୍ୱରନିବାସୀ ଶିଳ୍ପୀ ଶ୍ରୀ କୈଳାସ ମହାରଣାଙ୍କ ପାଖରେ ଅଛି } ଗ୍ରନ୍ଥକର୍ତ୍ତା ଜଣା ନାହିଁ ।

୧୦—ଗୃହନିର୍ମାଣ ପ୍ରଥା ବା ଶିଳ୍ପଶାସ୍ତ୍ର — ଶ୍ରୀଯୁକ୍ତ ଜଗବନ୍ଧୁ ସିଂହଙ୍କ ପ୍ରଣୀତ ପ୍ରାଚୀନଉତ୍କଳରେ ଏହାର ନକଲ ଅଛି । } "

୧୧—ଶିଳ୍ପଶାସ୍ତ୍ର (ଗୃହନିର୍ମାଣ ପଦ୍ଧତି) ଢେଙ୍କାନାଳ ଚନ୍ଦ୍ରୋଦୟ ପ୍ରେସରେ ଛାପା ହୋଇଛି । ପ୍ରଣେତା—ବାଉରି ମହାରଣା

ଉପର୍ଯ୍ୟୁକ୍ତ ଅଳ୍ପ କେତୋଟି ଗ୍ରନ୍ଥ ବ୍ୟତୀତ ଉତ୍କଳର ପ୍ରାଚୀନ ମନ୍ଦିର ଓ ଗୃହନିର୍ମାଣ ପ୍ରଣାଳୀ ବିଷୟରେ ବିସ୍ତୃତ ବର୍ଣ୍ଣନା ନିମ୍ନ କେତେକ ପୁରାଣରେ ଅଛି ।

୧ । ମତ୍ସ୍ୟ ପୁରାଣ—ଏହି ପୁରାଣର ୨୫୨-୨୫୬ ଅଧ୍ୟାୟରେ 'ବାସ୍ତୁ ଶିଳ୍ପ' ବା ଗୃହ ଓ ମନ୍ଦିରନିର୍ମାଣ କଥା ଏବଂ ୨୫୯ଶ ଅଧ୍ୟାୟରେ ପ୍ରତିମାଗଠନ, ପ୍ରତିମାର ମାପ ଓ କେତେକ ଦେବଦେବୀଙ୍କ ପରିଚୟ ଦିଆଯାଇଛି ।

୨ । ଅଗ୍ନିପୁରାଣ—ଏଥିରେ ୪୯ଶ ଅଧ୍ୟାୟରେ ପ୍ରତିମାଗଠନ ପ୍ରଣାଳୀ
୧୦୪ଶ ଅଧ୍ୟାୟରେ ପ୍ରାସାଦନିର୍ମାଣ
୧୦୫ଶ " ଗୃହନିର୍ମାଣ
୧୦୬ଶ " ନଗରନିର୍ମାଣ କଥା ବର୍ଣ୍ଣିତ ଅଛି ।

୩ । ଗରୁଡ଼ ପୁରାଣ—୪୬ଶ ଅଧ୍ୟାୟରେ ବାସ୍ତୁନିର୍ଣ୍ଣୟ ଏବଂ ୪୭ରେ ପ୍ରାସାଦଲକ୍ଷଣ କଥା ବର୍ଣ୍ଣିତ ଅଛି ।

୪ । ଭବିଷ୍ୟପୁରାଣ—ଏଥିରେ ଗୃହ ଓ ମନ୍ଦିରନିର୍ମାଣ ପ୍ରଣାଳୀ ବର୍ଣ୍ଣିତ ଅଛି ।

୫ । ବୃହତ୍ ସଂହିତା—ଏଥିର ୫୮ଶ ଅଧ୍ୟାୟରେ ପ୍ରତିମାଲକ୍ଷଣ ଓ ଦେବ-ଦେବୀଙ୍କ ବିଶେଷ ବର୍ଣ୍ଣନା ଦିଆଯାଇଛି ।

୬ । ଶୁକ୍ରନୀତି—ଏଥିର ୪ର୍ଥ ଅଧ୍ୟାୟରେ ପ୍ରତିମାଗଠନର ସମସ୍ତ ବିବରଣୀ ଦିଆଯାଇଛି ।



୨୯—ପାର୍ଶ୍ୱନାଥ



୩୦—ବୁଦ୍ଧଦେବ

୬ । ବାସ୍ତୁ ଧର୍ମୋଦ୍ଧାର ସୁପ୍ରଣ—ଏଥିର ତୃତୀୟ ଖଣ୍ଡରେ ଦେବଦେବ ଦେବ-ଦେବୀଙ୍କ ବର୍ଣ୍ଣନା ଦିଆଯାଇଛି ।

ଏ ଦେଶର ପ୍ରାଚୀନ ଶିଳ୍ପୀମାନେ ଏହି ବେଦେବ ଶିଳ୍ପଶାସ୍ତ୍ର ଓ ସୁପ୍ରଣ-ଗୁଡ଼ିକରେ ଦିଆଯାଇଥିବା ବର୍ଣ୍ଣନା ଅନୁସାରେ ନିଜର ପ୍ରସ୍ତରମୂର୍ତ୍ତି ଓ ମନ୍ଦିରମାନ ନିର୍ମାଣ କରିଥିଲେ ।

---

## ଉତ୍କଳୀୟ ଶିଳ୍ପସ୍ଥାପତ୍ୟର ଦୁରବସ୍ଥା

ଖ୍ରୀଷ୍ଟପୂର୍ବ ପ୍ରାୟ ଏକ ହଜାର ବର୍ଷଠାରୁ ଆରମ୍ଭ କରି ୧୩।୧୪ଶ ଖ୍ରୀଷ୍ଟାବ୍ଦ ମଧ୍ୟରେ ଉତ୍କଳର ବିଭିନ୍ନ ପୁରପଲ୍ଲୀରେ ଯେଉଁ ସବୁ ଦେବମନ୍ଦିର, ଦେବଦେବୀଙ୍କ ପ୍ରସ୍ତରମୂର୍ତ୍ତି ଓ ଅନ୍ୟାନ୍ୟ ଦେଶହିତକର ଶିଳ୍ପସ୍ଥାପତ୍ୟ ଉତ୍କଳୀୟ ଶିଳ୍ପୀମାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଓ ସେଗୁଡ଼ିକରେ ଥିବା ଶିଳ୍ପଚାତୁରୀ ବିଷୟ ସଂକ୍ଷେପରେ ପୂର୍ବ ଅଧ୍ୟାୟଗୁଡ଼ିକରେ ବର୍ଣ୍ଣିତ ହୋଇଅଛି । ବର୍ତ୍ତମାନ ସେସବୁ ପ୍ରାଚୀନ କୀର୍ତ୍ତିର ଅବସ୍ଥା କଣ ହୋଇଛି, ସେ ବିଷୟରେ କେତେକ ଆଲୋଚନା କରାଯିବ ।

୧୫୬୮ ଖ୍ରୀଷ୍ଟାବ୍ଦରେ ଉତ୍କଳର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ଯୁଦ୍ଧରେ ନିହତ ହେଲେ । ତାହାଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ ଉତ୍କଳର ଭାଗ୍ୟରବି ଚିରଦିନ ପାଇଁ ଲୁଚିଗଲା । ଉତ୍କଳର ସ୍ୱାଧୀନ ରାଜବଂଶ ଲୋପ ହେଲା ! ଗଙ୍ଗାନଦୀଠାରୁ ଗୋଦାବରୀଯାଏ ବ୍ୟାପିଥିବା ବିଶାଳ ଉତ୍କଳଖଣ୍ଡ ବିଧର୍ମୀ ମୁସଲମାନ, ମରହଟ୍ଟା ଓ ଶେଷରେ ଇଂରାଜଙ୍କ କରଗତ ହେଲା । କୌଣସି ରାଜ୍ୟ ଅଧିକାର କଲା ପରେ ସେହି ଦେଶର ସମସ୍ତ ସମ୍ପଦ ଅକ୍ଷୁର୍ଣ୍ଣ ଭାବରେ ରକ୍ଷା କରିବା ଭାର ବିଜୟୀ ବ୍ୟକ୍ତିଙ୍କଠାରେ ରହିବା କଥା; କିନ୍ତୁ ଯେଉଁମାନେ ଉତ୍କଳକୁ ଅଧିକାର କଲେ ସେମାନେ ଏହାର ରାଜବଂଶକୁ ଲୋପ କରିବା ସଙ୍ଗେ ସଙ୍ଗେ ଏଠାରେ ଥିବା ସମସ୍ତ ଶିଳ୍ପସମ୍ପଦକୁ ଏକାବେଳକେ ଚୂର୍ଣ୍ଣ କରି ଦେଇଥିଲେ ! ଏହି କାରଣରୁ ହଜାର ହଜାର ବର୍ଷର ପ୍ରାଚୀନ ଶିଳ୍ପସ୍ଥାପତ୍ୟସବୁ ଏହି ବିଧର୍ମୀ ଶାସକମାନଙ୍କ ହାତରେ ପଡ଼ି ଲୁଣ୍ଠିତ ଓ କଳଙ୍କିତ ହୋଇଥିଲା । ଏକାଧିକ ବିଧର୍ମୀ ଶାସକ ନିଜ ରୁଚି ଅନୁସାରେ ଏଠାରେ ଅମୂଲ୍ୟ ଶିଳ୍ପ-ସମ୍ପଦଗୁଡ଼ିକୁ ଭାଙ୍ଗି ବିକୃତ କରିଥିଲେ । ଦେଶଦ୍ରୋହୀ ଦୁର୍ଦାନ୍ତ କଳାପାହାଡ଼ ଯେଉଁ

ସବୁ ଅତ୍ୟାଚାର କରିଥିଲେ, ସେକଥା ଆଜି ପର୍ଯ୍ୟନ୍ତ ଲୋକମୁଖରୁ ଶୁଣାଯାଉଛି । ଆଜି ଉତ୍କଳର ଯେ କୌଣସି ପ୍ରାଚୀନ ମନ୍ଦିର ଦେଖନ୍ତୁ—ସେଠାରେ ଥିବା ଦେବଦେବୀଙ୍କ ପ୍ରତିମୂର୍ତ୍ତିଗୁଡିକ ଉପରେ ଖଣ୍ଡିଆ, ଭଙ୍ଗା ଓ ବିକୃତ ହୋଇଛି, ସେ ଦୃଶ୍ୟ ଦେଖିଲେ ପ୍ରାଚୀନ ଶିଳ୍ପୀମାନଙ୍କର ବହୁଦିନର ସାଧନା ଓ ପରିଶ୍ରମରେ କି ପ୍ରତିଫଳ ହୋଇଛି, ସ୍ପଷ୍ଟ ଜାଣି ହେବ ! ଦେଶରୁ ସ୍ୱାଧୀନତା ଲୋପ ହେବା ସଙ୍ଗେ ସଙ୍ଗେ ଏଠାରେ ଥିବା ସବୁ ଶିଳ୍ପସମ୍ପଦ ନଷ୍ଟ ହେବା ପାଇଁ କେଏ କି ଉଦ୍ଦେଶ୍ୟରେ ଉତ୍କଳ ପ୍ରତି ଅଭିଶାପ ଦେଇଥିଲେ, ତା ଜାଣିବା ସହଜ ନୁହେଁ ! ପୃଥିବୀର ଅଦ୍ୱିତୀୟ ଶିଳ୍ପଭଣ୍ଡାର କୋଣାର୍କ ମନ୍ଦିରର ଭଗ୍ନ ସ୍ତୂପଗୁଡିକୁ ଦେଖିଲେ ବାସ୍ତବରେ ଉତ୍କଳ ଆଜି ହତଶ୍ରୀ ହୋଇଛି ବୋଲି କୁହାଯାଇ ପାରେ !

ଉତ୍କଳର ଏ ସମସ୍ତ ଦୁର୍ଦ୍ଦଶା କାହା ଯୋଗୁଁ ଘଟିଛି ? ପ୍ରକୃତ କଥା, ଉତ୍କଳର ସ୍ୱାଧୀନତା ଲୋପ ହେବା ସଙ୍ଗେ ସଙ୍ଗେ ଏ ଦେଶବାସୀ ହତବୀର୍ଯ୍ୟ ହୋଇଛନ୍ତି । ସେମାନଙ୍କଠାରେ ସେହି ପୂର୍ବ ତେଜ ବା ପୂର୍ବ ସାହସ ଦେଖାଯାଉ ନାହିଁ । ଯେଉଁ ଶିଳ୍ପୀମାନେ ଏ ଦେଶରେ ଶତ ଶତ ସୁନ୍ଦର ମନ୍ଦିର ନିର୍ମାଣ କରିଥିଲେ, ସେମାନଙ୍କର ବଂଶଧର ଆଜି ନଷ୍ଟକର୍ମା ହୋଇ ବସିଛନ୍ତି । ସେମାନଙ୍କ ହାତରେ ଉପଯୁକ୍ତ ହାତୁଡି ନାହିଁ କି ଖଣ୍ଡିଏ ଭଲ ଆଦର୍ଶ 'ଶିଳ୍ପଶାସ୍ତ୍ର' ନାହିଁ । ଏ ଦେଶର ଶିଳ୍ପୀ ଦିନକୁ ଦିନ ଅଶିକ୍ଷିତ, ଅନୁନ୍ନତ ଓ ନିଜର ପୈତୃକ ବ୍ୟବସାୟ ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ଦେଖାଯାନ୍ତି । ଏମାନଙ୍କର ଏପରି ଦୁରବସ୍ଥା ଯୋଗୁଁ ଯେ ଏ ଦେଶର ଶିଳ୍ପସ୍ଥାପତ୍ୟର ପତନ ଘଟିଛି, ସନ୍ଦେହ ନାହିଁ ।

ପ୍ରାଚୀନ ଶିଳ୍ପସ୍ଥାପତ୍ୟଗୁଡିକ ବିଧର୍ମୀ ଶାସକମାନଙ୍କଦ୍ୱାରା ସମ୍ପୂର୍ଣ୍ଣରୂପେ ନଷ୍ଟ ହୋଇଥିବାର ଯଥେଷ୍ଟ ପ୍ରମାଣ ଅଛି ।

ମି, ହଣ୍ଟର ତାହାଙ୍କର 'ଓଡିଶା' ଇତିହାସରେ ଲେଖିଛନ୍ତି—୧୬।୧୭ଶ ଖ୍ରୀଷ୍ଟାବ୍ଦରେ ମୁସଲମାନମାନେ ହିନ୍ଦୁ ଦେବପ୍ରାସାଦଗୁଡିକୁ ଘୋଡ଼ାଶାଳ ( ଅସ୍ତାବଲ ) ରୂପେ ବ୍ୟବହାର କରୁଥିଲେ । ଅଧିକାଂଶ ଦେବମନ୍ଦିର ଭାଙ୍ଗି ସେଠାର ପ୍ରସ୍ତରଗୁଡିକୁ ନେଇ ନିଜର ଘର ଓ ପ୍ରାସାଦ ନିର୍ମାଣ କରିଥିଲେ ।

କେବଳ ମୁସଲମାନ ନୁହନ୍ତି, ଇଂରେଜମାନେ ମଧ୍ୟ ଏ ଦେଶର ଏକାଧିକ ଦୁର୍ଗ, ରାଜପ୍ରାସାଦ ଓ ମନ୍ଦିର ଭାଙ୍ଗି ଚୂର୍ଣ୍ଣ କରିଥିଲେ ! ଇତିହାସପ୍ରସିଦ୍ଧ ବାରବାଟି

ଦୁର୍ଗ ଇଂରେଜମାନଙ୍କର ତୋପରେ ଉଡ଼ିଯାଇଥିଲା । ଯାଜପୁରର ଅଧିକାଂଶ ପ୍ରାଚୀନ କୀର୍ତ୍ତି ଭାଙ୍ଗି ସେଠାର ପ୍ରସ୍ତରଗୁଡ଼ିକୁ ନେଇ ସଡ଼କ, ପୋଲ ନିର୍ମାଣ କରିଥିଲେ । ଏତ-ଦ୍ବ୍ୟତୀତ ଏକାଧିକ ବିଧର୍ମୀ ଶାସକଙ୍କ ଦ୍ୱାରା ଉତ୍କଳର ଅସଂଖ୍ୟ ପ୍ରାଚୀନ କୀର୍ତ୍ତି ନଷ୍ଟ ହୋଇ-ଥିଲା । କତୁବର୍ଷର ପ୍ରାଚୀନ କୀର୍ତ୍ତିଗୁଡ଼ିକୁ ନିଷ୍ଠୁର ଭାବରେ ନଷ୍ଟ କରିବା ସଙ୍ଗେ ସଙ୍ଗେ କୌଣସି ଶାସକ ଏଗୁଡ଼ିକର ରକ୍ଷଣାବେକ୍ଷଣ ଦିଗରେ ଦୃଷ୍ଟି ଦେଇ ନାହାନ୍ତି । ଏହି କାରଣରୁ ଅନେକଗୁଡ଼ିଏ ପ୍ରାଚୀନ ଦେବଦେବୀ ମୂର୍ତ୍ତି ଏବଂ ତାମ୍ର ଓ ଶିଳାଶାସନ-ଗୁଡ଼ିକୁ ସ୍ଥାନାନ୍ତରିତ କରାଯାଇଛି । ଅଜି ବଙ୍ଗଳାର 'ଏସିଆଟିକ ସୋସାଇଟୀ' କଲିକତା, ଅନ୍ଧ୍ର ଓ ମାନ୍ଦ୍ରାଜର 'ଐତିହାସିକ ସଂଘ' ଏବଂ ଇଂଲଣ୍ଡର ଯାଦୁଘରେ ଅସଂଖ୍ୟ ଉତ୍କଳୀୟ ପ୍ରତିମୂର୍ତ୍ତି ଓ ଶାସନ ରଖାଯାଇଛି । ବଙ୍ଗ, ବିହାର ଓ ମାନ୍ଦ୍ରାଜର ଏକାଧିକ ଐତିହାସିକ ଉତ୍କଳର ପ୍ରାଚୀନ ଶିଳ୍ପସ୍ଥାପତ୍ୟ ଦେଖି ନିଜର ଐତିହାସିକ ଓ ପ୍ରତ୍ନ-ତତ୍ତ୍ୱ ତୃଷ୍ଣା ମେଣ୍ଟାଇବା ସଙ୍ଗେ ସଙ୍ଗେ ଏ ଦେଶର ପ୍ରାଚୀନ କଳା ନେଇ ଏକାଧିକ ଗ୍ରନ୍ଥ ମଧ୍ୟ ଲେଖି ଯାଇଛନ୍ତି ।

ଭବିଷ୍ୟତ୍—ଏତେ ଦୁର୍ଦ୍ଦଶାସତ୍ତ୍ୱେ ଉତ୍କଳର ପ୍ରାଚୀନ ଶିଳ୍ପସମ୍ପଦ ଲୋପ ହୋଇ ନାହିଁ । ଉତ୍କଳର ପୁର ପଲ୍ଲୀରେ ଥିବା ଅସଂଖ୍ୟ ଦେବମନ୍ଦିର, ପ୍ରାଚୀନ ଦୁର୍ଗ ବା ଗଡ଼, ଗୁମ୍ଫା, ବାପୀ ଓ ପୁଷ୍କରିଣୀ ପ୍ରଭୃତିରେ ପ୍ରାଚୀନ ଯୁଗର ଶିଳ୍ପସ୍ଥପତ୍ୟ ପୋତି ହୋଇ ରହିଛି । ଏ ଗୁଡ଼ିକୁ ସଂଗ୍ରହ କରିବା ପାଇଁ ଏପର୍ଯ୍ୟନ୍ତ କୌଣସି ଯତ୍ନ କରା-ଯାଇ ନାହିଁ । ବ୍ୟକ୍ତିଗତ ଭାବରେ ପୁରୀର ଶ୍ରୀଯୁକ୍ତ ବୀରେନ୍ଦ୍ର ନାରାୟଣ ଗୁପ୍ତ ନିଜର ଯାଦୁଘରେ ଯାହା ସଂଗ୍ରହ କରିଛନ୍ତି ଏବଂ ବର୍ତ୍ତମାନ ରେଭେନ୍‌ସା କଲେଜରେ ପ୍ରତି-ଷ୍ଠିତ ଯାଦୁଘର ଏବଂ ମୟୂରଭଞ୍ଜ ମହାରାଜାଙ୍କର ଯାଦୁଘରେ ଯାହା କିଛି ପ୍ରାଚୀନ ପ୍ରତିମା, ଶିଳା ଓ ତାମ୍ରଶାସନ ପ୍ରଭୃତି ରଖାଯାଇଛି, ତାହା ପ୍ରାଚୀନ ଉତ୍କଳର ଶିଳ୍ପ-ସ୍ଥାପତ୍ୟର ଶତାଂଶରୁ ଏକ ଅଂଶ ହେବ କି ନାହିଁ ସନ୍ଦେହ । ଏ ପର୍ଯ୍ୟନ୍ତ ଉତ୍କଳରେ ଗୋଟିଏ ସ୍ୱତନ୍ତ୍ର ପ୍ରତ୍ନତତ୍ତ୍ୱ ସଙ୍ଘ ବା ଐତିହାସିକ ସଙ୍ଘ ସ୍ଥାପିତ ହୋଇ ନାହିଁ । କୌଣସି ଉଚ୍ଚଶିକ୍ଷିତ ଓଡ଼ିଆ ପ୍ରାଚୀନ ଇତିହାସ ସଂଗ୍ରହ ଦିଗରେ ଦୃଷ୍ଟି ଦେଇ ନାହାନ୍ତି । ଏକ୍ଷଣି ତ ଉତ୍କଳର ସ୍ୱତନ୍ତ୍ର ପ୍ରଦେଶ ହେଲା । ସରକାର ଗୋଟିଏ ପ୍ରତ୍ନତତ୍ତ୍ୱ ବିଭାଗ ଅଚିରେ ସ୍ଥାପନ କରି ପ୍ରାଚୀନ ଐତିହାସିକ ସ୍ଥାନଗୁଡ଼ିକର ଖନନ କାର୍ଯ୍ୟ ଏବଂ ପ୍ରତ୍ନତତ୍ତ୍ୱ ଆଲୋଚନାର ବ୍ୟବସ୍ଥା କରିବେ ବୋଲି ଆଶା କରାଯାଏ । କଟକ ଜିଲ୍ଲାର ଲଳିତଗିରିରେ ପ୍ରାଚୀନ ପୁଷ୍ପଗିରି ବା 'ଉତ୍କଳର ନାଳନ୍ଦା' ଥିବାର ସ୍ଥିର କରାଯାଇଛି । ଏଠାର ପ୍ରାଚୀନ କୀର୍ତ୍ତିଗୁଡ଼ିକୁ ଖନନ କରିବାକୁ ହେବ ।

ପ୍ରତ୍ୟେକ ପୁରପଲ୍ଲୀର ପ୍ରାଚୀନ ସ୍ଥାନ ଅନୁସନ୍ଧାନ କରିବାକୁ ହେବ । ଦେଶର ଗୋଟିଏ ପୂର୍ଣ୍ଣାଙ୍ଗ ଇତିହାସ ଲେଖିବା ପାଇଁ ଏହି କେତେକ କାର୍ଯ୍ୟ ଯଥାଶୀଘ୍ର କରିବା ଭାର ସରକାରଙ୍କ ହାତରେ ରହିଛି । ଉତ୍କଳର ପ୍ରାଚୀନ ଶିଳ୍ପୀ ବଂଶକୁ ଉଦ୍ଧାର କରିବାକୁ ହେବ । ପ୍ରାଚୀନ ଶିଳ୍ପଶାସ୍ତ୍ରଗୁଡ଼ିକୁ ସଂଗ୍ରହ କରି ତହିଁର ଗୋଟିଏ ବିଶୁଦ୍ଧ ସଂସ୍କରଣ ପ୍ରକାଶ କରିବାକୁ ହେବ । ଏପର୍ଯ୍ୟନ୍ତ ଉତ୍କଳର ଅଳ୍ପ କେତୋଟି ମାତ୍ର ଐତିହାସିକ ସ୍ଥାନ ସରକାରଙ୍କର ପ୍ରତ୍ନତତ୍ତ୍ୱ ଆଇନଦ୍ୱାରା ରକ୍ଷିତ ହୋଇଛି ! ଅନ୍ୟଗୁଡ଼ିକୁ ମଧ୍ୟ ସେପରି ଆଇନବଦ୍ଧ କରିବାକୁ ହେବ । ଉତ୍କଳ ପରି ଗୋଟିଏ ପ୍ରାଚୀନ ଐତିହାସିକ ପ୍ରଦେଶରେ ସ୍କୁଲ, କଲେଜ ଛାତ୍ରମାନଙ୍କୁ ପ୍ରତ୍ନତତ୍ତ୍ୱ ଓ ସ୍ଥାପତ୍ୟ ବିଷୟରେ ଶିକ୍ଷା ଦେବା ପାଇଁ ବ୍ୟବସ୍ଥା କରିବାକୁ ହେବ । ଏ ସମସ୍ତ କାର୍ଯ୍ୟ ଉତ୍କଳର ନୂତନ ସରକାର ଅଚିରେ କରିବାକୁ ହେବ । ତାହେଲେ ଏ ଦେଶର ପ୍ରାଚୀନ ଶିଳ୍ପଗୌରବ ପୁଣି ଚେଇବ ଏବଂ ପ୍ରାଚୀନ ଶିଳ୍ପୀମାନଙ୍କର ବଂଶଧର ନିଜର ଜାତୀୟ ବିଦ୍ୟାକୁ ସଜୀବ ରଖିବେ । ଉତ୍କଳର ଯେଉଁ ସବୁ ଅମୂଲ୍ୟ ପ୍ରାଚୀନ କୀର୍ତ୍ତି, ପ୍ରସ୍ତରମୂର୍ତ୍ତି, ତାମ୍ର ଓ ଶିଳା-ଶାସନ ପ୍ରଭୃତି ଆଜି କଲିକତା ଓ ପାଟନାର ଯାଦୁଘର ଉଜ୍ଜ୍ୱଳ କରୁଛି, ସେ ସବୁ ପୁଣି ଓଡ଼ିଶାକୁ ଆଣିବାକୁ ହେବ । ଏ ଦିଗରେ ମଧ୍ୟ ସରକାରଙ୍କର ଯଥେଷ୍ଟ କର୍ତ୍ତବ୍ୟ ରହିଛି । କେବଳ ନିଅଣ୍ଟିଆ ପ୍ରଦେଶ କହି ସରକାର ବା ଦେଶର ନେତାମାନେ ଏହି ପ୍ରତ୍ନତତ୍ତ୍ୱ ବିଭାଗ ପ୍ରତି ଉଦାସୀନ ହେଲେ ଚଳିବ ନାହିଁ । ଅନ୍ୟ ସବୁ ଦିଗରେ ଯେପରି ତୁରନ୍ତ ପ୍ରତିକାର କରିବାକୁ ହେବ, ଉତ୍କଳର ପ୍ରାଚୀନ ଶିଳ୍ପବିଭବ ରକ୍ଷା ପାଇଁ ମଧ୍ୟ ଏମାନେ ଅଚିରେ ତତ୍ପର ହେବେ ବୋଲି ଆଶା କରାଯାଏ ।



Printed by B. K. Kar, B, A. at the Saraswata Press Cuttack—1936.



୩୯—ବୌଦ୍ଧଚୈତ୍ୟ ଚନ୍ଦ୍ରସେଣା



୩୨—ବ୍ରାହ୍ମଣୀ

( ସପ୍ତମାତୃକା ଶ୍ରେଣୀ )

